# ଓଡ଼ିଆ ଲେଖକ ଲେଖିକା ପରିଷଦ

## କାର୍ଯ୍ୟକାରିଣୀ ସମିତି: ୨୦୧୬-୧୭

**ମୁଖ୍ୟ ସଂଯୋଜକ:**

ଶ୍ରୀ ଭୁବନାନନ୍ଦ ତ୍ରିପାଠୀ (ସ.କ୍ର.୧୪)

**ସଂଯୋଜକ :**

୧. ଶ୍ରୀ ବଂଶୀଧର ମିଶ୍ର (ସ.କ୍ର.୧୨)
୨. ଶ୍ରୀ ତ୍ରିଲୋଚନ ମଥାନ (ସ.କ.୫୧)
୩. ଶ୍ରୀ ଉଦୟନାଥ ମହାପାତ୍ର (ସ.କ୍ର.୨୮୧)

**କାର୍ଯ୍ୟକାରୀ ସଭ୍ୟ:**

୧. ଶ୍ରୀମତୀ ବିଷ୍ଣୁପ୍ରିୟା ମିଶ୍ର (ସ.କ୍ର.୪)
୨. ଶ୍ରୀ ଯୁଗଳକିଶୋର ଷଡ଼ଙ୍ଗୀ (ସ.କ୍ର.୧୮୬)
୩. ଶ୍ରୀମତୀ ମଞ୍ଜୁ ଦାସ (ସ.କ୍ର.୧୮)
୪. ଶ୍ରୀ ପ୍ରତାପ କୁମାର ଦ୍ୱିବେଦୀ (ସ.କ୍ର.୨୧୪)
୫. ଡ଼. ଚକ୍ରଧର ବିଶ୍ୱାଳ (ସ.କ୍ର.୪୨୧)
୬. ଶ୍ରୀ ରାଜକିଶୋର ମିଶ୍ର (ସ.କ୍ର.୧୨୪)
୭. ଶ୍ରୀ ପବିତ୍ର ମହାନ୍ତି (ସ.କ୍ର.୦୯)
୮. ଶ୍ରୀ ପ୍ରଭାକର ଦାସ (ସ.କ୍ର.୩୧୪)
୯. ସୁଶ୍ରୀ ପ୍ରୀତିଲତା ପଣ୍ଡା (ସ.କ୍ର.୩୧୬)
୧୦. ଶ୍ରୀ କ୍ଷିରୋଦଚନ୍ଦ୍ର ପତି (ସ.କ୍ର.୩୪୮)
୧୧. ଡ. ସୁରେନ୍ଦ୍ରନାଥ ତ୍ରିପାଠୀ (ସ.କ୍ର.୧୧)
୧୨. ଶ୍ରୀ କାମିନୀକାନ୍ତ ପାଣିଗ୍ରାହୀ (ସ.କ୍ର.୩୬୦)

**କୋଷାଧ୍ୟକ୍ଷ :** ଶ୍ରୀ ନିର୍ମଳ କୁମାର ବେହେରା (ସ.କ୍ର.୩୭୧)

**ମୁଖ୍ୟ କାର୍ଯ୍ୟାଳୟ :** ୧୨୭୨, ନୟାପଲ୍ଲୀ, ଭୁବନେଶ୍ୱର - ୭୫୧୦୧୨
ଫୋନ୍ : ୯୪୩୭୩୦୯୨୬୪

**ମୁଖ୍ୟ ସଂଯୋଜକ :** ୦୨, ଜ୍ୟୋତି ଏନ୍‌କ୍ଲୋଭ, ଲକ୍ଷ୍ମୀବିହାର, ସୈନିକ ସ୍କୁଲ
ଭୁବନେଶ୍ୱର -୭୫୧୦୦୫, ଫୋନ୍ - ୮୮୯୫୫୨୩୫୬୧

# ବନ୍ଧୁ ୨୦୧୭

## (ପ୍ରବନ୍ଧ ସଂକଳନ)

*ସଂପାଦନା*

**ଡ଼ଃ ବନମାଳୀ ବାରିକ**

**ଓଡ଼ିଆ ଲେଖକ ଲେଖିକା ପରିଷଦ**

୧୨୭୨, ନୟାପଲ୍ଲୀ, ଭୁବନେଶ୍ୱର-୭୫୧୦୧୨

ବନ୍ଧୁ ୨୦୧୭
(ପ୍ରବନ୍ଧ ସଂକଳନ)

*ସଂପାଦନା*
**ଡ଼ଃ ବନମାଳୀ ବାରିକ**

*ପ୍ରକାଶକ*
**ଓଡ଼ିଆ ଲେଖକ ଲେଖିକା ପରିଷଦ**
୧୨୭୨, ନୟାପଲ୍ଲୀ, ଭୁବନେଶ୍ୱର-୭୫୧୦୧୨

*ପ୍ରଥମ ପ୍ରକାଶ*
**ଜୁଲାଇ-୨୦୧୭**

*ଅକ୍ଷର ବିନ୍ୟାସ ଓ ମୁଦ୍ରଣ*
**ଶ୍ରୀନନ୍ଦନ ପ୍ରିଣ୍ଟର୍ସ**
ୟୁନିଟ-୪, ଭୁବନେଶ୍ୱର
ଫୋନ୍-୯୪୩୭୧୭୮୪୨୪



*ମୂଲ୍ୟ*
**ଟ.୧୦୦.୦୦**
(ଏକଶତ ଟଙ୍କା ମାତ୍ର)

**Bandhu 2017**
(Prabandha Sankalana)

Edited by
**Dr. Banamali Barik**

Publisher
**Odia Lekhaka Lekhika Parisad**
1272, Nayapally, Bhubaneswar

1st. Edition
**July - 2017**

DTP & Printing
**Srinandan Printers**
Unit-4, Bhubaneswar
Mob. : 9437178424



Price
**Rs.100/-**
(Rupees One Hundred only)

# ସୂଚୀପତ୍ର

ଏହି ପ୍ରବନ୍ଧ ସଂକଳନରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ଲେଖକ/ଲେଖିକା ମାନଙ୍କର ନିଜସ୍ୱ ।

## ମୁଖ୍ୟ ସଂଯୋଜକଙ୍କ ବାର୍ତ୍ତା

# ବନ୍ଧୁ ପ୍ରବନ୍ଧ ପାଇଁ ବାର୍ତ୍ତା

୨୦୦୩ ମସିହାରୁ ୨୦୧୭ ମସିହା ପର୍ଯ୍ୟନ୍ତ ଚଉଦଟି ବର୍ଷ ପାର କରି ଆମ ଅନୁଷ୍ଠାନ ଆଜି ଚପଳ କିଶୋର ବୟସରେ ପଦାର୍ପଣ କରିଛି । ପରିଷଦର ମୁଖପତ୍ର 'ବନ୍ଧୁ'ର ପ୍ରଥମ ସଂଖ୍ୟା ୨୦୦୭ରେ ପ୍ରଥମେ କବିତା ସଂକଳନ ଭାବେ ପ୍ରକାଶ ପାଇଥିଲା । ପରେ ୨୦୧୧ରେ କବିତା ସଂକଳନ ସହିତ ପ୍ରବନ୍ଧ ଏବଂ ଗଳ୍ପ ସଂକଳନର ପ୍ରକାଶ ଆରମ୍ଭ କରାଗଲା । ୨୦୧୧ରୁ ଆଜିସୁଦ୍ଧା ଗୋଟିଏ ଲେଖାଁ ମୋଟ ଛଅଟି ପ୍ରବନ୍ଧ ସଂକଳନ ପ୍ରକାଶ ପାଇପାରିଛି ଏବଂ ଏବର୍ଷର ବନ୍ଧୁ-ପ୍ରବନ୍ଧ ପୁସ୍ତକଟି ହେଉଛି ସପ୍ତମ ପ୍ରବନ୍ଧ ସଂକଳନ । ଏହାକୁ ମିଶାଇ ପରିଷଦର ମୋଟ୍ ସଂକଳନ ସଂଖ୍ୟା ୨୩ ହେଲା ।

ଚଳିତ ବର୍ଷ ପ୍ରାରମ୍ଭରେ ବନ୍ଧୁ କବିତା ସଂକଳନ ପ୍ରକାଶିତ ହୋଇସାରିଛି । ବର୍ତ୍ତମାନ ବନ୍ଧୁ-ପ୍ରବନ୍ଧ ସଂକଳନ ଆପଣଙ୍କ ହାତରେ ଏବଂ ଗଳ୍ପ ସଂକଳନଟି ଅକ୍ଟୋବର ମାସରେ ପ୍ରକାଶ ପାଇବ । ଚଳିତବର୍ଷର କିଶୋର ବନ୍ଧୁ ପୁସ୍ତକଟି ମଧ୍ୟ ଅଳ୍ପଦିନ ଭିତରେ ପ୍ରକାଶ ପାଇଯିବ । ଏହିପରି ବର୍ଷକୁ ୪ଟି ସଂକଳନ ପ୍ରକାଶ କରିବାର ଯୋଜନା ପରିଷଦ ତରଫରୁ ନିୟମିତ ଭାବେ କାର୍ଯ୍ୟକାରୀ ହେଉଛି । ଏହା ସହିତ ପ୍ରତି ଦୁଇବର୍ଷରେ ପରିଷଦର ସଦସ୍ୟ-ତାଲିକା ପ୍ରକାଶପାଉଛି ଏବଂ ପରବର୍ତ୍ତୀ ସଦସ୍ୟ ତାଲିକା ପ୍ରକାଶ ପାଇବ ୨୦୧୮ ମସିହା ଜୁଲାଇ ମାସରେ ।

ପରିଷଦର ଚଉଦବର୍ଷ ପୂରଣ ଅବସରରେ (ଜୁଲାଇ-୨୦୧୭) ଅନୁଷ୍ଠାନର ସଦସ୍ୟ ସଂଖ୍ୟା ୬୦୯ରେ ପହଞ୍ଚିଛି । ଏମାନଙ୍କ ମଧ୍ୟରେ ସ୍ଥାୟୀ/ଆଜୀବନ ସଭ୍ୟ ହେଉଛନ୍ତି ମୋଟ୍ ୬୮ ଜଣ । ଚଳିତବର୍ଷ ୬୬ଜଣ ନୂତନ ସଦସ୍ୟ ପରିଷଦରେ ଯୋଗ ଦେଇଛନ୍ତି ।

ବିଦ୍ୟାଳୟସ୍ତରର ଛାତ୍ରଛାତ୍ରୀଙ୍କ ପ୍ରବନ୍ଧ ଗୁଡିକ ପୁନଃ ମୂଲ୍ୟାୟନ କରି ଗତବର୍ଷ ଦୁଇଜଣ କିଶୋର ପ୍ରାବନ୍ଧିକଙ୍କୁ ରାଜ୍ୟସ୍ତରୀୟ ପୁରସ୍କାର ପାଇଁ ଚୟନ କରାଯାଇଛି । ସେମାନେ ହେଲେ ଯାଜପୁର ରୋଡର କୁମାରୀ ଅନନ୍ୟା ସାହୁ ଏବଂ କୋରାପୁଟର କୁମାରୀ ନିରୁପମା ମହାରଣା । ଏହି ଦୁଇ କିଶୋର ଲେଖିକା ଚଳିତବର୍ଷରୁ ଆମ ଅନୁଷ୍ଠାନର ନିଃଶୁଳ୍କ ସ୍ଥାୟୀ ସଦସ୍ୟା ହେଲେ । ପରିଷଦ ପ୍ରଦତ୍ତ କିଶୋର ପ୍ରତିଭା ପୁରସ୍କାର ପାଇଁ ପୃଷ୍ଠପୋଷକତା କରିଛନ୍ତି ଅନୁଷ୍ଠାନରେ କୋଷାଧ୍ୟକ୍ଷ ଶ୍ରୀ ନିର୍ମଳ କୁମାର ବେହେରା ।

ଏ ବର୍ଷର ବନ୍ଧୁ ପ୍ରବନ୍ଧ ସଂକଳନର ସମ୍ପାଦକ ଦାୟିତ୍ୱ ନେଇଛନ୍ତି ଡ. ବନମାଳୀ ବାରିକ । ଶାନ୍ତିନିକେତନରେ ଶିକ୍ଷାପ୍ରାପ୍ତ ଡ. ବାରିକ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ

ଭାବେ ସରକାରୀ କଲେଜରୁ ଅବସର ଗ୍ରହଣ କରିଛନ୍ତି ଏବଂ ସେ ପରିଷଦର ଜଣେ ସ୍ଥାୟୀ/ଆଜୀବନ ସଦସ୍ୟ । ଚଳିତ ସଂଖ୍ୟା ବନ୍ଧୁ ପ୍ରବନ୍ଧ ସଂକଳନର ପୃଷ୍ଟପୋଷକ ହୋଇଛନ୍ତି ଓଡ଼ିଶା ପ୍ରଦେଶରେ କାର୍ଯ୍ୟରତ ଏବଂ ସୁପରିଚିତ ଶିଳ୍ପାନୁଷ୍ଠାନ 'ନାଲ୍‌କୋ' । ଭାରତ ସରକାରଙ୍କ ପରିଚାଳନାଧିନ ଏହି ଆଲୁମିନିୟମ କମ୍ପାନୀର ବହୁମୁଖୀ ବିକାଶ ପାଇଁ ଆମ୍ଭେମାନେ ଶୁଭ କାମନା ଜଣାଉଛୁ ।

ପନ୍ଦରତମ ବର୍ଷରେ ପଦାର୍ପଣ କରିବା ଅବସରରେ ପରିଷଦର ପ୍ରାରମ୍ଭ ଦିନରୁ ଗୃହୀତ ଲକ୍ଷ୍ୟ ଉଦ୍ଦେଶ୍ୟ ଗୁଡ଼ିକ ପୁଣିଥରେ ଉଲ୍ଲେଖ କରୁଅଛି । ଆମ ଓଡ଼ିଆ ଭାଷା ସାହିତ୍ୟର ବିକାଶ ଓ ବିସ୍ତାର ପାଇଁ ଆମେ ଶିକ୍ଷିତ ଓଡ଼ିଆମାନେ ନିଜେ ଲେଖିବା, ପଢ଼ିବା, ଭାବିବା କ୍ରିୟାକୁ ଚାଲୁରଖିବା । କାରଣ ଜଣେ ଲେଖିଲେ ତା'ର ପଢ଼ିବାର ଆଗ୍ରହ ରହିବ, ପଢ଼ିଲେ ଭାବିବ ଏବଂ ଭାବିଲେ ଆଗକୁ ବଢ଼ିବାର ବାଟ ପାଇପାରିବ । ମୂଳ କାର୍ଯ୍ୟ ହେଉଛି ଲେଖିବାର ଅଭ୍ୟାସ । ସଂଗୃହିତ ଲେଖାଗୁଡ଼ିକୁ ଏକାଠି କରି ପତ୍ରିକା ପ୍ରକାଶ କରିବା । ନୂତନ ଲେଖକର ଲେଖାଟିକୁ ସଂଶୋଧନ କରିଦେଲେ ତା ଲେଖାର ମାନ ବୃଦ୍ଧି ପାଇବ ଏବଂ କଳାଧଳା ଅକ୍ଷରରେ ପ୍ରକାଶିତ ନିଜ ଲେଖାଟିକୁ ଦେଖିଲେ ସେ ଅଧିକ ଲେଖିବାକୁ ଉତ୍ସାହିତ ହେବ ।

ଆମେ ଲେଖକମାନେ ଜଣେ ଜଣକର ଲେଖକ ବନ୍ଧୁ ଏବଂ ପରସ୍ପର ମଧ୍ୟରେ ସାରସ୍ୱତ ସଂପର୍କ ବୃଦ୍ଧି କରିବା । ଏଥିପାଇଁ ଚିଠି ଓ ଫୋନର ଉପଯୋଗ କରିପାରିବା । ଲେଖାଟିଏ ପଢ଼ିବା ପରେ ତାହା ଭଲ ଲାଗିଲେ ପଦେ ପ୍ରଶଂସା କରିବା ଏବଂ ଭୁଲ୍ ଦେଖିଲେ ତା' ପାଇଁ ପଦେ ସମାଲୋଚନା କରିବା । ଏହା ଫଳରେ ଆମ ଭିତରେ ନିରନ୍ତର ଭାଷା ଶିକ୍ଷାର ମାର୍ଗ ପ୍ରଶସ୍ତ ହେବ । ଏହି ପ୍ରକାର ସାରସ୍ୱତ ସାଧନାରେ ବ୍ରତୀ ହୋଇ ଆମେ ଏକାଧାରରେ ମା, ମାତୃଭୂମି ଏବଂ ମାତୃଭାଷାର ଆରାଧନା କରିପାରିବା ।

ପରିଷଦର ଏହି ସାଧନା ମାର୍ଗରେ ଯୋଗଦେଇଥିବା ଲେଖକବନ୍ଧୁମାନଙ୍କୁ ଆନ୍ତରିକ ସାଧୁବାଦ ଜଣାଉଛି ଏବଂ ଏହି ଅଭିଯାନ ଦିନକୁ ଦିନ ବୃଦ୍ଧିପାଇବ ବୋଲି କାମନାକରି ଆଜିର ବାର୍ତ୍ତା ସମାପ୍ତ କରୁଛି ।

ଭୁବନେଶ୍ୱର
ତା ୩୦.୭.୨୦୧୭ରିଖ

**ଭୁବନାନନ୍ଦ ତ୍ରିପାଠୀ**
ମୁଖ୍ୟ ସଂଯୋଜକ

# ପ୍ରବନ୍ଧ ସାହିତ୍ୟର ମହତ୍ତ୍ୱ

'ଗଦ୍ୟଂ କବିନାଂ ନିକଷଂ ବଦନ୍ତି' । ଗଦ୍ୟ ହିଁ କବିର ନିକଷ ଅର୍ଥାତ୍ ଲେଖକ ଜ୍ଞାନର ପରିଚୟ ଗଦ୍ୟରୁ ମିଳିଥାଏ । କବିତାରେ ବକ୍ତବ୍ୟ କଳ୍ପନାଶ୍ରିତ ହୋଇପାରେ, ସ୍ୱପ୍ନ ମଣ୍ଡିତ ହୋଇପାରେ, କବି ଅବାସ୍ତବତାର ରାଜ୍ୟରେ ବିଚରଣ କରିପାରେ । କିନ୍ତୁ ଗଦ୍ୟ ରଚୟିତା ବା ପ୍ରବନ୍ଧକାରର ଭୂମି ସର୍ବଦା ସତ୍ୟାଶ୍ରିତ । ଆଇନର କଠୋର ଜାଲରେ ସେ ବନ୍ଧା । ଉତ୍‌ଫୁଲ୍ଲିତ ହୋଇ ସେ କିଛି କରିପାରିବ ନାହିଁ । ମିଥ୍ୟାର ସିଡ଼ି ସେ ଚଢ଼ିପାରିବ ନାହିଁ । ବିନା ଯୁକ୍ତି, ବିନା ଶବ୍ଦ ଶକ୍ତିରେ ସେ ସଂଗ୍ରାମ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ପାରିବ ନାହିଁ । Walter Pater କହିଛନ୍ତି:- "Order, precision, directness are the radial merits of prose form the criterion of prose style". ତେଣୁ ଆମେ ଯାହା କହିବା/ଲେଖିବା ତା'ର ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରହିବା ଆବଶ୍ୟକ । ସେଥିପାଇଁ ଆମକୁ କିଛି ଶ୍ରମ କରିବାକୁ ପଡ଼ିବ । ମୋଟ୍ ଉପରେ ନିଜ ଯୁକ୍ତି ତଥ୍ୟାଶ୍ରୟୀ ହେବ ଏବଂ ସମଗ୍ର ମାନବ ଜାତିର କଲ୍ୟାଣ ପାଇଁ ଅଭିପ୍ରେତ ହେବ । ଭାବାବେଗରେ ଭାସିଯାଇ ଆମର ସବୁ ଅଛି, ଆମେ ମହାନ୍, ଆମ ସାହିତ୍ୟ ବିଶ୍ୱର ଶ୍ରେଷ୍ଠ ସାହିତ୍ୟ ବୋଲି ଦାବୀ କରିବା ଏକ ହାସ୍ୟାସ୍ପଦ ବ୍ୟାପାର ପାଲଟିଯିବ ।

ଗୋଟିଏ ଦୁଇଟି ଉଦାହରଣ ଦେଇ ମୋର ବକ୍ତବ୍ୟ ସାଙ୍ଗ କରିବି । (୧) ବୁଦ୍ଧ ଏଇଠି (କପିଳେଶ୍ୱର) ଜନ୍ମ ହୋଇଥିଲେ ବୋଲି କେତେଜଣ ଗବେଷକ/ ପ୍ରାବନ୍ଧିକ ଦାବୀ କରନ୍ତି । ଗୋଟିଏ ଶିଳାଲେଖକୁ ଆଧାର କରି ଏପରି ଚର୍ଚ୍ଚା ହୁଏ । କିନ୍ତୁ ଭାରତର ଐତିହାସିକମାନେ ଏକଥାକୁ ସ୍ୱୀକାର କରୁଛନ୍ତି କି ? ଆମର ଶିଳାଲେଖଟି ମଧ୍ୟ ନକଲି ହୋଇଥାଇପାରେ । ସେ ଦୃଷ୍ଟିରୁ କଥାଟିକୁ ବିଚାର କରିବାକୁ ହେବ । ଅନେକ କହନ୍ତି-କାଳିଦାସଙ୍କର ଜନ୍ମସ୍ଥାନ ଏଇଠି । ତାଙ୍କ କାବ୍ୟର କେତେକ ବର୍ଣ୍ଣନା ଆମର ନଦନଦୀ, ପାହାଡ଼ ପର୍ବତର ଭୌଗୋଳିକ ସ୍ଥିତି ସହ ମିଶିଯାଉଛି । ମାତ୍ର ସର୍ବ ଭାରତୀୟ ଦୃଷ୍ଟିକୋଣରୁ ଏହା ବିଚାର କରିବାକୁ ହେବ । ଭାରତର/ବିଶ୍ୱର ବିଦ୍ୱାନମଣ୍ଡଳୀ ଏହାର ସମର୍ଥନ କରୁଛନ୍ତି କି ନାହିଁ ତାହା ମଧ୍ୟ ଦେଖିବାକୁ ହେବ । ଯାହା ଆମର

ନୁହେଁ ତାହାକୁ ଆମର ବୋଲି ପ୍ରମାଣିତ କରିବା ପାଇଁ କେତେଜଣ ଗବେଷକ ଗଳଦ୍‌ଘର୍ମ ପରିଶ୍ରମ କରୁଛନ୍ତି । କବି ଜୟଦେବ ମଧ୍ୟ ଏବେବି ବିବାଦୀୟ । (୨) ଆଧୁନିକ କାଳରେ ରାଧାନାଥ ଆମର ଯୁଗସ୍ରଷ୍ଟା କବି । ଏହା ବହୁ ମହାନ୍ ସାହିତ୍ୟିକଙ୍କ ସମର୍ଥନ ଲାଭ କରିଛି । କିନ୍ତୁ କେହି କହିଲେ ଫକୀର ମୋହନ ଯୁଗର ସର୍ବଶ୍ରେଷ୍ଠ ଗୌଣକବି ରାଧାନାଥ । ଅଜବ କଥା । ଚମକାଇବା ଭଳି କଥା । କିନ୍ତୁ ସେମାନେ କାହିଁ କୁଆଡ଼େ ମିଳାଇଗଲେ । ଆଉଜଣେ କହିଲେ ମଧୁସୂଦନ ହେଉଛନ୍ତି ଯୁଗସ୍ରଷ୍ଟା । ତାଙ୍କର କାବ୍ୟ କବିତା ଓଡ଼ିଆ ଜାତିକୁ ବିଦ୍ୟାଦାନ କରି ମହନୀୟ ହୋଇଛି । କେଇଦିନ ପରେ ସେଇ ଦାବୀ ମଧ୍ୟ କୁଆଡ଼େ ଉଭେଇଗଲା । (୩) ଫକୀରମୋହନଙ୍କୁ ମଧ୍ୟ କେତେଜଣ ବହେ ଗାଳିଦେଲେ । ସବୁ ମିଛ କଥାଗୁଡ଼ିକୁ ଖଞ୍ଜି ସେ ନିଜର ଆତ୍ମଜୀବନୀ ଲେଖିଛନ୍ତି । କେଉଁଝରର ମେଳିକୁ ଭାଙ୍ଗିଦେଇ ଇତିହାସର ଗତିକୁ ରୁଗ୍‌ଣ କରିଛନ୍ତି । ଧରଣୀଧରଙ୍କୁ ତା'ର ନାର୍ଯ୍ୟଦାବୀରୁ ବଞ୍ଚିତ କରିଛନ୍ତି । ମାତ୍ର ଫକୀରମୋହନ ଓ ଧରଣୀଧର ଦୁହେଁ ଐତିହାସିକ ଚରିତ୍ର । ଭାବପ୍ରବଣ ହୋଇ କାହାକୁ ପ୍ରଶଂସା କରିବା ବା ନିନ୍ଦା କରିବା ଆମର ଲକ୍ଷ୍ୟ ହେବା ଉଚିତ ନୁହେଁ । ରେକର୍ଡ ରୁମ୍‌ରେ ବ୍ରିଟିଶ ଅମଳର ସମସ୍ତ ଚିଠିପତ୍ର ସାଇତା ହୋଇରହିଛି । ତାକୁ ଖୋଜିବାର କଥା, ପଢ଼ିବାର କଥା । ତାପରେ ନିଜର ମତ ଉପସ୍ଥାପିତ କରିବା ଏକାନ୍ତ କାମ୍ୟ ।

କହିବସିଲେ ଅନେକ କଥା କୁହାଯାଇପାରିବ । 'ବନ୍ଧୁ'ର ଉଦ୍ୟମ, ଆମର ଉଦ୍ୟମ ଏକ ସଫଳ ଲକ୍ଷ୍ୟରେ ଚାଲିଥାଉ । 'ବନ୍ଧୁ' ପ୍ରବନ୍ଧ ବିଶେଷାଙ୍କ (୨୦୧୭)ର ସମସ୍ତ ପ୍ରାବନ୍ଧିକଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଜଣାଉଛି । ଏ ସକଳ ଉଦ୍ୟମର ନାୟକ ଆମକୁ ମମତା ଡୋରରେ ବାନ୍ଧି ରଖିଥିବା ଶ୍ରୀ ଭୁବନାନନ୍ଦ ତ୍ରିପାଠୀଙ୍କୁ ମୋର ଅଶେଷ ସାଧୁବାଦ ।

ବନମାଳୀ ବାରିକ
ସଂପାଦକ

# ଓଡ଼ିଶାର ପ୍ରାଚୀନ ମନ୍ଦିର ଭାସ୍କର୍ଯ୍ୟରେ ଶିକ୍ଷାଦାନ ଦୃଶ୍ୟାବଳୀ

**ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ (୪୦)**

ଗୁରୁଶିଷ୍ୟ ସମ୍ପର୍କର ପରମ୍ପରା ଭାରତରେ ବୈଦିକ ଯୁଗରୁ ପ୍ରଚଳିତ । ଗୁରୁକୁଳାଶ୍ରମ ଗୁଡ଼ିକ ଜନଗହଳି ପରିପୂର୍ଣ୍ଣ ନଗର-ସହର ଠାରୁ ଦୂରରେ ନଦୀ ସମୀପବର୍ତ୍ତୀ ପ୍ରାକୃତିକ ପରିବେଶ ମଧ୍ୟରେ ଗଢ଼ି ଉଠିଥିଲା । ଗୁରୁକୁଳ ଆଶ୍ରମରେ ରହି ରାଜା, ମହାରାଜା, ଧନିକ, ବଣିକ ତଥା ସାଧାରଣ ପ୍ରଜାଙ୍କ ସନ୍ତାନମାନେ, ନିଶୁଳ୍କ ଶିକ୍ଷା ଲାଭ କରୁଥିଲେ । ଶିଷ୍ୟମାନଙ୍କ ଗହଣରେ ଆଚାର୍ଯ୍ୟଙ୍କ ପତ୍ନୀ ଓ ପରିବାର ମଧ୍ୟ ରହୁଥିଲେ । ବେଦବର୍ଣ୍ଣିତ ଋଷିଗଣ ଥିଲେ- ଆଦର୍ଶ ଗୃହସ୍ଥ । ସେମାନେ ଗୃହକୁ ଗୃହସ୍ଥାଶ୍ରମରେ ପରିଣତ କରିଦେଇଥିଲେ । ଶିକ୍ଷାର୍ଥୀଗଣ ଆଶ୍ରମରେ ବେଦ ଅଧ୍ୟୟନ ଓ ଅଗ୍ନିହୋତ୍ର (ହୋମକର୍ମ) ସହିତ ଗୁରୁଙ୍କର କ୍ଷେତବାଡି ଜଗୁଥିଲେ, ଗୋପାଳନ ଓ ଫଳମୂଳ ହୋମକାଠ ସଂଗ୍ରହାଦି କାର୍ଯ୍ୟରେ ସହାୟତା କରୁଥିଲେ । ଗୁରୁ ଉଚ୍ଚାସନରେ ବସି ଶିକ୍ଷାଦାନ କରୁଥିଲେ । ବ୍ରହ୍ମଚାରୀ ଶିଷ୍ୟ ତାଙ୍କୁ ଚତୁଃପାର୍ଶ୍ୱରୁ ଘେରି ତାଙ୍କ ଠାରୁ ଉପଦେଶ ଓ ବିଦ୍ୟାଗ୍ରହଣ କରୁଥିଲେ । ଏ ବିଦ୍ୟା ଥିଲା- 'ସା ବିଦ୍ୟା ଯା ବିମୁକ୍ତୟେ ।' ଗୁରୁ ଓ ଶିଷ୍ୟ ମଧ୍ୟରେ ଏହି ଆନ୍ତରିକ ଓ ଘନିଷ୍ଠ ସମ୍ପର୍କରୁ ଉପନିଷଦ ଗୁଡ଼ିକ ସୃଷ୍ଟିହେଲା । ନିମ୍ନରେ 'କଠୋପନିଷଦ୍'ର ଶାନ୍ତିପାଠରେ ପ୍ରଦତ୍ତ ସୂକ୍ତଟି ଉଦ୍ଧାର କରାଗଲା:-

ଓଁ ସନାଭବତୁ । ସ ନୌ ଭୁନକ୍ତୁ । ସ ବୀର୍ଯ୍ୟକରବା ବହେ । ତେଜସ୍ୱୀ... ନାବଧିତମସ୍ତୁ । ମା' ବିଦ୍ୱେଷା ବହୈ... । ଓଁ ଶାନ୍ତି ଶାନ୍ତି ଶାନ୍ତି ।" ଅର୍ଥାତ୍ ଓଁ ପରମାତ୍ମା (ଗୁରୁଶିଷ୍ୟ) ଆମ୍ଭ ଦୁହିଁଙ୍କୁ ରକ୍ଷା କରନ୍ତୁ । ଆମ ଦୁହିଁଙ୍କୁ ଏକତ୍ର ପାଳନ କରନ୍ତୁ । ଆମେ ଦୁହେଁ ଏକାସଙ୍ଗେ ବିଦ୍ୟା ସମ୍ବନ୍ଧିତ ସାମର୍ଥ୍ୟ ପ୍ରାପ୍ତ କରୁ । ଆମେ (ଦୁହେଁ) କାହାପ୍ରତି ବିଦ୍ୱେଷ ନକରୁ । ତ୍ରିବିଧ ଶାନ୍ତି ହେଉ ।" ଗୁରୁକୁଳ ଆଶ୍ରମରେ ଶିକ୍ଷାଲାଭ ପରେ ପରବର୍ତ୍ତୀ ଜୀବନକାଳରେ ଶିକ୍ଷାର୍ଥୀ ଉଭୟ ଆର୍ଥିକ ଓ ପରମାର୍ଥିକ ପ୍ରଗତି ହାସଲ କରୁଥିଲା । ପ୍ରାଚୀନ ଗୁରୁକୁଳ ଶିକ୍ଷାକେନ୍ଦ୍ରର ପ୍ରସିଦ୍ଧ କୁଳପତି ଭାବରେ ବାଲ୍ମିକୀ, ବଶିଷ୍ଠ, ଅଙ୍ଗିରା, ଭରଦ୍ୱାଜ, ବ୍ୟାସ, ସନ୍ଦୀପନି ଆଦି ମହର୍ଷିଗଣ ଏବଂ ପରବର୍ତ୍ତୀ କାଳରେ ତକ୍ଷଶିଳା, ରାଜଗୃହ, ନାଳନ୍ଦା ଆଦି ବିଶ୍ୱବିଦ୍ୟାଳୟର ନାମ ଉଲ୍ଲେଖଯୋଗ୍ୟ । ଏଠାରେ ୧୪ ବିଦ୍ୟା ଓ ୬୪ କଳା ଶିକ୍ଷା ଦିଆଯାଉଥିଲା । ୧୪ ବିଦ୍ୟା ହେଲା : ବେଦ-୪, ବେଦାଙ୍ଗ-୬, ପୁରାଣ-୧, ନ୍ୟାୟ-୧, ତର୍କ-୧, ମୀମାଂସା-୧, ମୋଟ-୧୪ ।

ମହାଭାରତ ଅନୁସାରେ ଆଚାର୍ଯ୍ୟ ଭରଦ୍ୱାଜଙ୍କ ଆଶ୍ରମ, ଗଙ୍ଗାଦ୍ୱାର (ହରିଦ୍ୱାର) ଠାରେ ଥିଲା । ଏହି ଆଶ୍ରମରେ ବେଦ-ବେଦାଙ୍ଗ ସହିତ ଅସ୍ତ୍ରଶସ୍ତ୍ର ଶିକ୍ଷା ଦିଆଯାଉଥିଲା ।

ଦ୍ରୋଣାଚାର୍ଯ୍ୟ ଏବଂ ଅଗ୍ନିବେଶ ଭଳି ସମର୍ଥ ଶିଷ୍ୟ ଏଠାରେ ଆଗ୍ନେୟାସ୍ତ୍ର ଶିକ୍ଷା ଲାଭ କରିଥିଲେ (ଆଦିପର୍ବ- ୧୨୬/୩୪) । ରାଜା ଦ୍ରୁପଦ ମଧ୍ୟ, ଦ୍ରୋଣଙ୍କ ସହ ଶିକ୍ଷା ପାଉଥିଲେ । ହିମାଳୟର ରମଣୀୟ ବଦ୍ରିକ୍ଷେତ୍ରରେ ବ୍ୟାସଦେବଙ୍କ ଆଶ୍ରମ ଥିଲା । ଏଠାରେ ସୁମନ୍ତ, ବୈଶମ୍ପାୟନ, ଜୈମିନି ଓ ପୈଲ ଶିଷ୍ୟ ଭାବରେ ଶିକ୍ଷା ଲାଭ କରୁଥିଲେ । ଆଚାର୍ଯ୍ୟ କଣ୍ୱଙ୍କ ଆଶ୍ରମରେ ଶିକ୍ଷାର୍ଥୀମାନେ ନ୍ୟାୟ, ତତ୍ତ୍ୱ, ତର୍କ, ବ୍ୟାକରଣ, ଛନ୍ଦ, ନିରୁକ୍ତ ଶିକ୍ଷା କରୁଥିଲେ । ଏହି କଣ୍ୱାଶ୍ରମ ମାଳିନୀ ନଦୀତଟର ସୁରମ୍ୟ-ସୁଶୀତଳ ପରିବେଶରେ ଥିଲା । ରାମାୟଣ ଅନୁସାରେ କିନ୍ତୁ ପ୍ରୟାଗ ନିକଟରେ ଭରଦ୍ୱାଜ ଆଶ୍ରମ ଥିବା କୁହାଯାଇଛି । ଅତ୍ୟନ୍ତ ପ୍ରାକୃତିକ ପରିବେଶରେ ଏହି ଆଶ୍ରମରେ ମୃଗଯୁଥ ନିର୍ବିକାରରେ ବିଚରଣ କରୁଥିଲେ । ମହର୍ଷି ଅଗସ୍ତ୍ୟଙ୍କ ଆଶ୍ରମ ଗୁଳ୍ମଲତାପୂର୍ଣ୍ଣ ଦଣ୍ଡକାରଣ୍ୟରେ ଥିଲା । ଆଶ୍ରମରେ ଅନୁଷ୍ଠିତ ହୋମରୁ ଉଦ୍‌ଗତ ଧୂମ ସମଗ୍ର ଅଞ୍ଚଳକୁ ପବିତ୍ର କରୁଥିଲା । ମହାଭାରତ ଯୁଗରେ ଉତ୍ତର ଭାରତରେ ଅବସ୍ଥିତ ତକ୍ଷଶିଳା ମହାବିଦ୍ୟାଳୟରେ ଆଚାର୍ଯ୍ୟ ଧୌମ୍ୟଙ୍କ ଶିଷ୍ୟ- ଉପମନ୍ୟୁ, ଆରୁଣି ବେଦଶିକ୍ଷା କରୁଥିଲେ । ଜାତକ କଥାରୁ ଜଣାଯାଏ, ତକ୍ଷଶିଳାରେ ପଢ଼ିବାକୁ କାଶୀ, ରାଜଗୃହ, ପାଞ୍ଚାଳ, ମିଥିଳାରୁ ଶିକ୍ଷାର୍ଥୀ ଆସୁଥିଲେ । ଏହି ବିଦ୍ୟାକେନ୍ଦ୍ର ଗୁଡ଼ିକରେ ଆଚାର୍ଯ୍ୟ ଓ ଶିକ୍ଷାର୍ଥୀଙ୍କ ମଧ୍ୟରେ ଉତ୍ତମ ସମନ୍ୱୟ, ସମ୍ପର୍କ ଓ ଘନିଷ୍ଠତା ଥିଲା ।

**ଓଡ଼ିଶାର ପ୍ରାଚନୀ ମନ୍ଦିର ଗାତ୍ରରେ ଶିକ୍ଷାଦାନ ଦୃଶ୍ୟାବଳୀ:-**

ପ୍ରାଚୀନ ଓଡ଼ିଶାରେ ଶୈବ-ଶାକ୍ତ ବୈଷ୍ଣବ-ମନ୍ଦିର ଗାତ୍ରରେ ଅନ୍ୟାନ୍ୟ ଦେବଦେବୀ ମୂର୍ତ୍ତି, ନାଗ-ନାଗୀ, ଗଙ୍ଗା-ଯମୁନା, ପୌରାଣିକ ଦୃଶ୍ୟ ବ୍ୟତୀତ- ଶିଷ୍ୟ-ଶିଷ୍ୟା ପରିବୃତ୍ତ ଗୁରୁଙ୍କ ଶିକ୍ଷାଦାନ ଦୃଶ୍ୟ ଖୋଦିତ ହୋଇଅଛି । କେବଳ ଗୁରୁ ନୁହନ୍ତି, ଗୁରୁମାତାମାନେ ମଧ୍ୟ ଉପଦେଶ ଦେବା ଭଙ୍ଗୀରେ ମୂର୍ତ୍ତି ରୂପେ ଖୋଦିତ ହୋଇଅଛନ୍ତି ।

ପ୍ରାଚୀନ ଉତ୍କଳ-କଳିଙ୍ଗରେ ଏକଦା, ଶୈଳୋଦ୍ଭବ, ଭୌମକର, ଗଙ୍ଗ ତଥା ସୂର୍ଯ୍ୟବଂଶୀ ଗଜପତିଗଣ ଶାସନ କରିଥିଲେ । ଶୈଳୋଦ୍ଭବ ରାଜତ୍ୱ କାଳ ଥିଲା- ଖ୍ରୀ.୫୭୫-୭୫୦, ଭୌମଙ୍କର ରାଜତ୍ୱ-୭୫୦-୯୫୦, ସୋମବଂଶୀ ରାଜତ୍ୱ-ଖ୍ରୀ ୮୮୨-୧୧୧୨, ଗଙ୍ଗବଂଶୀ ରାଜତ୍ୱ- ଖ୍ରୀ ୧୧୧୨-୧୪୩୫, ସୂର୍ଯ୍ୟବଂଶୀ ରାଜତ୍ୱ- ଖ୍ରୀ ୧୪୩୫-୧୫୪୦ ଯାଏ । ଏହି ରାଜବଂଶର ନୃପତିଗଣ ସେତେବେଳେ ବିଖଣ୍ଡିତ ପ୍ରାଚୀନ ଓଡ଼ିଶାର, ଉତ୍କଳ, କଳିଙ୍ଗ, କୋଶଳ, କଙ୍ଗୋଦ, ଉଡ୍ର, ତୋଷଳ ଅଞ୍ଚଳରେ ରାଜତ୍ୱ କରୁଥିଲେ । ସେମାନେ ଶୈବ, ଶାକ୍ତ, ତନ୍ତ, ବୈଷ୍ଣବ, ଧର୍ମଧାରାର ଧର୍ମଗୁରୁଙ୍କ ଦ୍ୱାରା ଦୀକ୍ଷିତ ହୋଇ ନିଜ ଶାସିତ ଅଞ୍ଚଳରେ ଅନେକ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର, ତୋରଣ, ସ୍ତୂପ ଆଦି ନିର୍ମାଣ କରାଇଥିଲେ । ଏହାକୁ ସେମାନେ ନିଜର 'ଯଶ-କୀର୍ତ୍ତି' ଭାବରେ ରଖିଯାଇଛନ୍ତି । ରାଜା-ପ୍ରଜା ବା କାରୁଶିଳ୍ପୀ ହେଉ, କେହି ତତ୍‌କାଳୀନ ସମାଜର ରୀତିନୀତି ପରମ୍ପରାର ପ୍ରଭାବକୁ ଏଡାଇ ପାରିବେ ନହିଁ । ଏଣୁ ମନ୍ଦିର ଗାତ୍ରରେ ପୌରାଣିକ ଚିତ୍ରାବଳୀ ସହିତ, ପ୍ରଚଳିତ ଘଟଣାବଳୀ, ନୃତ୍ୟ ଆସର ଏପରିକି ନୌବାଣିଜ୍ୟ ଚିତ୍ରାବଳୀ ଖୋଦିତ

ହୋଇଅଛି । ଏଥି ସହ ନାରୀ-ପୁରୁଷର ମିଳନ ଦୃଶ୍ୟ, ପ୍ରେମିକା ପାଖରେ ପ୍ରେମିକର ପ୍ରେମ ନିବେଦନ, ଅଶ୍ୱ-ଗଜ-ପଦାତିକ ସୈନ୍ୟ ସାମନ୍ତ, ଆଚାର୍ଯ୍ୟ, ରକ୍ଷୀ ଓ ରକ୍ଷିତାର ସେ କାଳର ବେଶ ଭୂଷା-ଆବରଣ-ଆଭୂଷଣ ଓ ଶରୀର ଭାବଭଙ୍ଗୀ ଖୋଦିତ ହୋଇଅଛି ।

ବିଶେଷ କରି ସୋମବଂଶୀ ଓ ଗଙ୍ଗବଂଶୀ ରାଜତ୍ୱରେ ନିର୍ମିତ ମନ୍ଦିର ଗାତ୍ର ଗୁଡିକରେ ଗୁରୁଶିଷ୍ୟ ଶିକ୍ଷାଦାନ ଦୃଶ୍ୟ ଅତ୍ୟନ୍ତ ରୋଚକ ଢ଼ଙ୍ଗରେ ଖୋଦିତ ହୋଇଅଛି । ଓଡ଼ିଶାର ପ୍ରାଚୀନ ଇତିସହାସରୁ ଜଣାଯାଏ ଯେ ଭୌମକର ରାଜତ୍ୱର-ଶୈଳୋଦ୍ଭବ ଏବଂ ସୋମବଂଶ ପ୍ରାରମ୍ଭ ଯାଏ, ତନ୍ତ୍ରର ପ୍ରଭାବ (ଲାକୁଳୀଶ ମତ୍ତମୟୂର ଗୋଷ୍ଠୀ) ପ୍ରଚ୍ଛନ୍ନ ଭାବରେ ଥିଲା । ଏଣୁ ଶିକ୍ଷାଦାନର ଗୁରୁଜଣକ ତନ୍ତ୍ରଗୁରୁ ଏବଂ ଶିକ୍ଷାର୍ଥୀଗଣ ତନ୍ତ୍ରମନ୍ତ୍ର ଶିକ୍ଷାର୍ଥୀ ହେବାର ସମ୍ଭାବନାକୁ ଏଡ଼ାଇ ଦେଇହେବ ନାହିଁ । ଏଠାରେ ଚାରୋଟି ମାତ୍ର ପ୍ରାଚୀନ ମନ୍ଦିର ଯଥା ୧. ବ୍ରହ୍ମେଶ୍ୱର ମନ୍ଦିର, ୨. ଲିଙ୍ଗରାଜ ମନ୍ଦିର, ୩. କୋଣାର୍କ ମନ୍ଦିର, ୪. ଅନନ୍ତ ବାସୁଦେବ ମନ୍ଦିରରେ ଖୋଦିତ ଶିକ୍ଷାଦାନ ଦୃଶ୍ୟାବଳୀ ସମ୍ବନ୍ଧରେ ସଂକ୍ଷିପ୍ତ ସୂଚନା ଦିଆଗଲା ।

**ବ୍ରହ୍ମେଶ୍ୱର ମନ୍ଦିର:-** ଭୁବନେଶ୍ୱର ଏକାମ୍ର କ୍ଷେତ୍ର ଅନ୍ତର୍ଗତ ବ୍ରହ୍ମେଶ୍ୱର ମନ୍ଦିରଟି ବ୍ରହ୍ମେଶ୍ୱର ପାଟଣାରେ ଅବସ୍ଥିତ । ଏହା ସୋମବଂଶୀ ଉଦ୍ୟୋତ କେଶରୀଙ୍କ ରାଜତ୍ୱର (ଖ୍ରୀ. ୧୦୪୦)ର ଅଷ୍ଟାଦଶ ବର୍ଷରେ ନିର୍ମିତ । ଏହାର କାରୁକାର୍ଯ୍ୟ ଅତି ଚିତ୍ତାକର୍ଷକ । ଏହାର ନିର୍ମାଣ ତାଙ୍କ ମାତା କୋଳାବତୀ ଦେବୀ କରାଇଥିଲେ । ମନ୍ଦିରଟି ପଞ୍ଚାଙ୍ଗ ବାଡ଼ଯୁକ୍ତ ପଞ୍ଚରଥ ଶୈଳୀରେ ନିର୍ମିତ ରେଖ ଦେଉଳ । ଜଗମୋହନଟି ପୀଢ଼ ଶୈଳୀର । ଉଭୟ ବିମାନ ଓ ଜଗମୋହନ, ମଣ୍ଡଳକୃତିଯୁକ୍ତ । ଏହା ମଧ୍ୟଯୁଗୀୟ ମୂର୍ତ୍ତିକଳାର ଏକ ଉତ୍କୃଷ୍ଟ ନମୂନା । ପ୍ରତି ରାହପାଗର ମୂର୍ତ୍ତି ନିର୍ମିତ କାନ୍ଥକୁରାର ଲିଣ୍ଟେଲ୍ ଉପରେ ଶିକ୍ଷାଦାନ ଦୃଶ୍ୟାବଳୀ ଖୋଦିତ । ଉତ୍ତର ପାର୍ଶ୍ୱରେ ଜଣେ ଲମ୍ବ ଦାଢ଼ିଯୁକ୍ତ ଗୁରୁ ସଳଖ ଭାବରେ ବସିଥିବାର ମୂର୍ତ୍ତି ଖୋଦିତ । ସେ ରାଜା ଉଦ୍ୟୋତ କେଶରୀଙ୍କ ଦୀକ୍ଷାଗୁରୁ ଓ ପରାମର୍ଶଦାତା-ଭବଦେବ ଥିଲେ ବୋଲି କେତେକ ଐତିହାସିକ ମତପୋଷଣ କରନ୍ତି ।  ଭବଦେବ ତନ୍ତ୍ରାର୍ଣ୍ଣବ ଗ୍ରନ୍ଥର ସ୍ରଷ୍ଟା-ଜଣେ ତନ୍ତ୍ରଗୁରୁ । ସେହିପରି ଦକ୍ଷିଣ ଭାଗରେ ଉତକୀର୍ଣ୍ଣ ଦୃଶ୍ୟବଳୀରେ ଜଣେ ଗୁରୁମାତା ଉପବେଶନ କରିଥିବା ଦୃଶ୍ୟ ରହିଛି । ତାଙ୍କ ସମ୍ମୁଖରେ ଉପଦେଶ ଗ୍ରହଣ କରୁଥିବା କ୍ଷୁଦ୍ରବାଳକଟିଏ ଠିଆ ହେବା ଦୃଶ୍ୟ ରହିଛି ।

**୨. ଲିଙ୍ଗରାଜ ମନ୍ଦିର:-** କଳିଙ୍ଗ ମନ୍ଦିର-ମୂର୍ତ୍ତିକଳାର ଅନ୍ୟତମ ଶ୍ରେଷ୍ଠ କୃତି ହେଲା- ଲିଙ୍ଗରାଜ ମନ୍ଦିର । ଏହାର ବିମାନ-ଜଗମୋହନ-ଭୋଗ ମଣ୍ଡପ-ନାଟମଣ୍ଡପରେ କାରୁକାର୍ଯ୍ୟପୂର୍ଣ୍ଣ କୃତି ଖୋଦିତ ହୋଇଛି । ଏଥିରେ ଗୁରୁଜୀ ଓ ଗୁରୁମାତା ଆସୀନ ଥିବା ଏବଂ ଶିଷ୍ୟ-ଶିଷ୍ୟାମାନେ ଦଣ୍ଡାୟମାନ ଅବସ୍ଥାରେ ଖୋଦିତ ହୋଇଛନ୍ତି । ଲଣ୍ଡିତ ମସ୍ତିଷ୍କ ଓ ପୃଷ୍ଠ ଭାଗରେ ଶିଖାଯୁକ୍ତ ଡେଙ୍ଗା ଚେହେରାର ଗୁରୁ, ଖୁରାଥିବା ଉଚ୍ଚପିଢ଼ା ତାଙ୍କ ସମ୍ମୁଖ ଭାଗରେ ତିନିଜଣ ସ୍ମଶ୍ରୁଯୁକ୍ତ ଋଷିକୁମାରଙ୍କ ସହିତ ନିମ୍ନ ଭାଗରେ ଦୁଇଜଣ ଋଷିକୁମାର

କଥୋପକଥନ ହେବାର ଦୃଶ୍ୟ ଖୋଦିତ ହୋଇଅଛି । ଅନ୍ୟ ଏକ ଦୃଶ୍ୟପଟରେ ଜଣେ ଗୁରୁମାତା ଆସନ ମୁଦ୍ରାରେ, ତାଙ୍କର ଦକ୍ଷିଣହସ୍ତ ଆଗକୁ ପ୍ରସାରିତ କରି ନ'ଜଣ ଶିଷ୍ୟଙ୍କୁ ଉପଦେଶ ପ୍ରଦାନ କରିବାର ମୂର୍ତ୍ତି ଦେଖାଯାଏ । ସେମାନଙ୍କ ଉପରି ଭାଗରେ ତିନିଜଣ ପୁଷ୍ପମାଳା, ପରିହିତ ସୁନ୍ଦରୀ ନାରୀ ପିତୁଳା ରହିଅଛି । ଏମାନେ ସମସ୍ତେ ଅନ୍ତଃପୁରବାସିନୀ ମନେହୁଏ । ସବା ତଳେ ମଧ୍ୟ ତିନୋଟି ଠିଆ ହୋଇଥିବା ନାରୀମୂର୍ତ୍ତି ଖୋଦିତ ହୋଇଛି ।

ଲିଙ୍ଗରାଜ ମନ୍ଦିର ଓ ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣକାଳ ପ୍ରାୟ ପାଖାପାଖି । ଗୋଟିକର ନିର୍ମାଣ ଉଦ୍ୟୋତକେଶରୀଙ୍କ ପିତା ଓ ଅନ୍ୟଟିର ତାଙ୍କ ମାତା, ନିର୍ମାଣ କରାଇଥିଲେ । ଏହି ଦୁଇ ଦେଉଳର ଖୋଦିତ ମୂର୍ତ୍ତି ଓ ମଣ୍ଡନକୃତି ସହିତ ସାମଞ୍ଜସ୍ୟ ରହିଅଛି ।

**୩. କୋଣାର୍କ ମନ୍ଦିରଃ-** ଲାଙ୍ଗୁଳା ନରସିଂହ ଦେବ (୧ମ) ଖ୍ରୀ-୧୨୩୮-୬୪) ଏହି ବିଶ୍ୱପ୍ରସିଦ୍ଧ ଦେଉଳର ସ୍ରଷ୍ଟା । ଖ୍ରୀ.୧୨୪୫ରେ ବଙ୍ଗର ମୁସଲମାନଙ୍କ ଶାସକଙ୍କୁ ପରାସ୍ତ କଲାପରେ ବିଜୟର ସ୍ମାରକୀ ସ୍ୱରୂପ ଏହାକୁ ନିର୍ମାଣ କରାଇଥିଲେ । ନିର୍ମାଣ କାର୍ଯ୍ୟ ଖ୍ରୀ.୧୨୭୮ରେ ସରିଥିଲା । ଏହି ମନ୍ଦିର ଗାତ୍ରରେ ମଧ୍ୟ ଶିକ୍ଷାଦାନ ଦୃଶ୍ୟାବଳୀ ରହିଅଛି । ଗୋଟିଏ ସ୍ଥାନରେ ଗୁରୁଙ୍କ ସହିତ ଶିଷ୍ୟଗଣ ଉପବେଶନ କରି ଉପଦେଶ ଗ୍ରହଣ କରିବାର ଦୃଶ୍ୟ ଖୋଦିତ ହୋଇଅଛି । ନିକଟରେ ପାଞ୍ଚଜଣ ଦଣ୍ଡ-କମଣ୍ଡଳୁହସ୍ତ, ଋଷିକୁମାରଙ୍କ ଦଣ୍ଡାୟମାନ ମୂର୍ତ୍ତି ଦେଖିବାକୁ ମିଳେ ।

**୪. ଅନନ୍ତ ବାସୁଦେବ ମନ୍ଦିର-** ଏହି ମନ୍ଦିରଟି ଏକାମ୍ର କ୍ଷେତ୍ରର ବିନ୍ଦୁସରୋବର ତଟରେ ନିର୍ମିତ ପ୍ରଥମ ବୈଷ୍ଣବ ମନ୍ଦିର । ଏହା ଅନଙ୍ଗଭୀମଦେବ (୩ୟ)ଙ୍କ କନ୍ୟା, ପରମ ବୈଷ୍ଣବୀ ଚନ୍ଦ୍ରାଦେବୀଙ୍କ ଦ୍ୱାରା ଖ୍ରୀ.୧୨୭୮ରେ ନିର୍ମିତ । ଚନ୍ଦ୍ରାଦେବୀଙ୍କ ପତି ଥିଲେ ହୈହୟ ବଂଶଜ ତଥା ଗଙ୍ଗସେନାଙ୍କ ପ୍ରବଳ ପ୍ରତାପୀ ସେନାପତି ପରମର୍ଦ୍ଦଦେବ । ବଙ୍ଗଳାର ମୁସଲମାନଙ୍କ ସେନା ସହ ଲଢ଼ି ବୀରଗତି ପ୍ରାପ୍ତ ହେବାରୁ ତାଙ୍କ ସ୍ମୃତିକୁ ଜାଗ୍ରତ ରଖିବା ପାଇଁ ଚନ୍ଦ୍ରାଦେବୀ ଏହାକୁ ତୋଳାଇଥିଲେ । ଏଠାରେ ଶିଳାବ୍ରହ୍ମରୂପୀ ବଳ-ଭଦ୍ରା-କୃଷ୍ଣ ପୂଜିତ ହୁଅନ୍ତି । ଏହା ଜଗମୋହନ, ଭୋଗମଣ୍ଡପ ଓ ନାଟ ମଣ୍ଡପଯୁକ୍ତ ଅଟେ । ମନ୍ଦିର ଗାତ୍ରରେ ଜଣେ ଗୁରୁମାତା କେତେକ ଲଳନା (ସମ୍ଭବତଃ ଦେବଦାସୀଙ୍କୁ) ଙ୍କୁ ଉପଦେଶ ପ୍ରଦାନ ଦୃଶ୍ୟ ଖୋଦିତ ହୋଇଅଛି । ଚନ୍ଦ୍ରାଦେବୀ ନିଜେ ନୃତ୍ୟ-ଗୀତ ପ୍ରବୀଣା ଥିବାର ଅନନ୍ତ ବାସୁଦେବ ଶିଳାଲେଖରୁ ଜଣାଯାଏ । ତେଣୁ ସେ ସମ୍ଭବତଃ ସେବାରେ ନିଯୁକ୍ତ ଦେବଦାସୀଙ୍କୁ କିଛି କଳାଶିକ୍ଷା ପ୍ରଦାନ କରିବା ଦୃଶ୍ୟ ଖୋଦିତ ହୋଇଛି ।

ନୃତ୍ୟ, ଗୀତ, ବାଦ୍ୟ କଳାପ୍ରିୟ ଉତ୍କଳୀୟଗଣ କେବଳ ମନ୍ଦିର ପ୍ରସ୍ତର ଓ ଗିରିଗୁମ୍ଫା ପାହାଡ ଗାତ୍ର ନୁହେଁ, ତାଳପତ୍ର-ପଟ୍ଟ ଏବଂ କମନୀୟ ମୂର୍ତ୍ତି ଗଠନରେ ନିଜର ଆଲେଖ୍ୟ ବାଢ଼ିଯାଇଅଛନ୍ତି ।

*ଶ୍ରୀବସ୍ତା, ୩୫, ବସନ୍ତ ବିହାର, ଭୁବନେଶ୍ୱର-୧୮*

# କବି ବୈକୁଣ୍ଠନାଥସାହୁଙ୍କ କବିତାରେ ଜୀବନର ନାନାରଙ୍ଗ

ରୀତା ଅପରାଜିତା ମହାନ୍ତି (୪୦୨)

କେତେବେଳେ ସୁନ୍ଦର, ସମୃଦ୍ଧ ପୃଥିବୀ କଥା କହିଛନ୍ତି ଶ୍ରୀ ବୈକୁଣ୍ଠନାଥ ପୁଣି କେତେବେଳେ ବିଷୟ ବିଷାଦ-ବିଧୂର ଚିନ୍ତା, ନୈରାଶ୍ୟ ଓ ଅକ୍ଷମତାର ତଥା ଲୁହ ବିନ୍ଦୁର ଚିତ୍ର ଆଙ୍କିଛନ୍ତି । ତାଙ୍କ ପ୍ରକାଶିତ ସଂକଳନ ମଧ୍ୟରୁ ସତ୍ୟପାଠ (୧୯୭୯), କୁତବମୀନାର କାନ୍ଦିପାରେ ନା (୨୦୦୦), ସମୟର ଛବି ଦେଖା (୨୦୦୧), ମୁଁ ଖଣ୍ଡେ ଭାସମାନ ମେଘ (୨୦୦୪), ନିର୍ବାଚିତ କବିତା (୨୦୦୫), ପାଣିରେ ଘର ଓ ଗାଁ (୨୦୦୬), ହୃଦୟକୁଞ୍ଜ ଆଦି କବିତା ସଂକଳନରେ ସେ ଦୁଃଖ, ଆଶା, ବିଚ୍ଛେଦ, ମିଳନ, ପ୍ରାର୍ଥନା, ପରିଚୟ, ସ୍ଥାପତ୍ୟ ଆଦି ସବୁ ରଙ୍ଗର ଚିତ୍ର ଆଙ୍କିଛନ୍ତି । ଅନ୍ଧାର ଭିତରେ ଜହ୍ନ ଦେଖିବାର ପ୍ରଚେଷ୍ଟା ମଧ୍ୟ ଜାରି ରଖିଛନ୍ତି । ରାସ୍ତା ଶେଷରେ ଇନ୍ଦ୍ରଧନୁ କବିତାରେ ମଣିଷ ଜୀବନର ଗୁଢ଼ ତତ୍ତ୍ୱକୁ ଆବିଷ୍କାର କରି ଲେଖିଛନ୍ତି :-

"ବିଫଳତାର ଅନ୍ଧାର ରାତି ପରେ ସଫଳତାର ସ୍ନିଗ୍ଧ ସକାଳ, ସେଥିରେ ଥାଏ ପ୍ରିୟତମ ମଣିଷର ଅଞ୍ଜଳି ଭରା ଶୁଭେଚ୍ଛା ।"

ତାଙ୍କ କବିତାରେ ଲୁହ, କୋହ, ରକ୍ତ, ଫୁଲ, ଶୋକ ଓ ସଦିଚ୍ଛାର ଭାର-ଭାର ଉପହାର । ସୌରଭ ଓ ଜୀବନର ଲୋଭ ନେଇ ସେ କବିତା ଲେଖି ଚାଲିଥାନ୍ତି, ପାଠକର ଟିକେ ଆଦର ପାଇବା ପାଇଁ, ସୃଷ୍ଟିର ପୁଲକ ପାଇଁ । ଆମ ପ୍ରାଚୀନ ସାହିତ୍ୟ ବିଲ୍ୱମଙ୍ଗଳ ସହିତ ତାଙ୍କ 'କୁତବମୀନାର କାନ୍ଦିପାରେନା'ର ତାଳ ମେଳ ଅଛି ।

"ପ୍ରଥମ ବାଣୀରେ ହୁଏ ପ୍ରଚାରିତ କାମନାର କର ବିନାଶ, ଦୁଃଖ-ଅଶାନ୍ତିର ବିଲୟ ଘଟିବ ।"

ଶ୍ରୀ ସାହୁ ନିଜ କବିତା ସମ୍ପର୍କରେ ଲେଖିଛନ୍ତି: କବିତା ଲେଖା ଚାଲିଥାଏ ଜୀବନସାରା । ଅନେକ ଲୋକ, ଅନେକ ଚରିତ୍ର, ଅନେକ ଦୃଶ୍ୟଙ୍କୁ ଭେଟୁଥାଏ ସୁଦୀର୍ଘ ଚଲାପଥରେ । X X X ମାତ୍ର ପ୍ରତି ମୁହୂର୍ତ୍ତରେ ଲେଖି ଚାଲିଥାଏ ମନରେ ।

ହୃଦୟ ପୃଷ୍ଠାରେ ରାଶି ରାଶି କବିତା । ଅଜସ୍ର ମଣିଷ, ସୀମାହୀନ ଦୃଶ୍ୟ ଭିତରେ ମୁଁ ମୋର କବିତା ଗୁଡ଼ିକୁ ଖୋଜିପାଏ । ସ୍ୱପ୍ନ, ସମ୍ଭାବନା, ଦୁଃଖ, କ୍ଷୋଭ, ହତାଶା ହାତଧରା ଧରି ହୋଇ ଚାଲିଥାନ୍ତି ମୋ ଆଗରେ ସବୁ ସମୟରେ । ଅସୀମ ଉଚ୍ଛ୍ୱାସରେ, ଅଜସ୍ର ଆଗ୍ରହରେ, ପୁଣି ବିଷାଦବୋଧରେ ଭାଙ୍ଗିପଡ଼େ । ଲୁହ ଝରାଏ ଅସହାୟତାରେ, ଦୁର୍ନିବାର ଶୋକରେ, କ୍ଷୋଭରେ । (ସତ୍ୟପାଠ-୧୯୭୯)

ଏହା ଜୀବନର ସମସ୍ତ ଦୁଃସ୍ଥିତି ଭିତରୁ ମୁକ୍ତିର ପ୍ରୟାସ ଓ ଏକ ଶାନ୍ତ ସବୁଜ ସାବଲୀଳ ଜୀବନର ଅନ୍ୱେଷା ପଥରେ ଦୁଃଖର ଗଡୁଟିଏ ପରି ବିସ୍ତରିଯାଏ । କବିଙ୍କ ଭାଷାରେ:

"କଥାହେଲା; ଝିଅଟିର ଲଭେନ୍‌ସ, ପୁଅଟି ନେଇଯାଇଛି ।

ତା'ର ବିଛଣାରେ, ମଶାରିରେ ଏବଂ ତକିଆରେ କଥାକଥାରେ (ଲୋକଙ୍କ) ଅଶୁଭ ଇଙ୍ଗିତ ତା' ଶାଢ଼ୀର ରଙ୍ଗ ବଦଳାଇ ଦେଉଛି, ସେ ହସିବ ନା କାନ୍ଦିବ ।" (ଶଶିକଳାର ଶୋକ)

ଅନେକ କଥା ନେଇ ଶଶିକଳାର ଶୋକ ହୁଏ । ନିଜର ପ୍ରିୟଜନଠାରୁ ଅଲଗା ହୋଇ ବିଦେଶରେ ଚାକିରି କରୁଥିବାରୁ ତା'ର ବହୁତ କିଛି କରିବାକୁ ଇଚ୍ଛା ହୁଏ । ହେଲେ ସେ କିଛି କରିପାରେନା । କବି ବୈକୁଣ୍ଠନାଥ କେବେ ଭାରତୀୟ ପରମ୍ପରାକୁ ଛାଡ଼ି ନାହାଁନ୍ତି । "ଶରବିଦ୍ଧ ପକ୍ଷୀ" କବିତାକୁ ଆତ୍ମା ପରମ୍ପରାର ପ୍ରତୀକ ଭାବେ ଧରାଯାଇପାରେ ।

ଯିଏ ଯୋଜନ ଯୋଜନ ପଥକୁ କ୍ଷଣକ ମାତ୍ରେ ଉଡିଯାଉଥିଲା, ସେ ଆଜି ଶରବିଦ୍ଧ । ଦିନ ଥିଲା ତା' କାକଳିରୁ ଅମୃତ ବୃଷ୍ଟି ହେଉଥିଲା । ଏବେ କିନ୍ତୁ ତା' ହସକୁ ଛୁଇଁବାକୁ ଇଚ୍ଛା କଲେ ବି ଛୁଇଁ ହେଉନି । 'ଦୂରବାଟ' କବିତାରେ କବି ଇଚ୍ଛାର ପାଚେରୀ ଡେଇଁ କାବ୍ୟ ନାୟକ ଦୂରକୁ ବୁଲିଯାଏ । ସେଠି ସେ ସୁନାହରିଣର ମନୋଲୋଭା ଚିତ୍ର ଧରିପାରେନା ଆଉ ମନ ଖୋଲା ବା ଚୁପି ଚୁପି ହସିପାରେନା । ଏଇଠି ଖାଲି ତା' ଆଖିରୁ ଝରେ ଦୁଇବୁନ୍ଦା ଲୁହ । ଜୀବନ ଏକ ଅପଢ଼ା ବହି । ବହିମାନଙ୍କ ହିସାବ ଫର୍ଦ୍ଦ ତିଆରି କରି ଚାଲିଛନ୍ତି କାବ୍ୟ ନାୟକ ।

ମଣିଷର ନିର୍ମମ ଅତ୍ୟାଚାରରେ ସବୁ ଥୁଣ୍ଟା, ମୁଣ୍ଡିଆ ପାହାଡଟି ଶ୍ରୀହୀନ; ତଥାପି କବି ଆଶାକୁ ଛାଡି ନାହାଁନ୍ତି । ତାଙ୍କ ଭାଷାରେ :

"ଥାନ୍ତା ହାତ ପାଖେ ଶ୍ୟାମଳ ଅରଣ୍ୟ
ତାରା ଭର୍ତ୍ତି ଆକାଶ ଅପାଶୋରା ଦିନରାତି
ରଜନୀଗନ୍ଧାର ବାସ୍ନା
ବକୁଳ ବନର ମାୟା ଅପହଞ୍ଚ ସ୍ୱପ୍ନ ପୁଣି
ପାଖାପାଖି ପାଇବାର ସୀମାହୀନଇଚ୍ଛା"

ତାଙ୍କ କବିତାରେ ଓଡ଼ିଶାର ମାଟି, ପାଣି, ପବନ କଥା ଦେଖିବାକୁ ମିଳେ । ତା' ସହିତ ପୃଥିବୀର ସବୁ ମଣିଷ ପ୍ରତି ପରମ ଶ୍ରଦ୍ଧା, ଗଭୀର ନିଷ୍ଠା, ଅସୀମ ପ୍ରୀତି । କବି କେବେ ବି ମଣିଷମାନଙ୍କ ଦୁଃଖ ଦେଖି ଆଶା ହରାଇ ନାହାନ୍ତି, ବରଂ ସେମାନଙ୍କୁ

ଦେଖାଇବାକୁ ଚାହିଁଛନ୍ତି ଜୀଇଁବାର କଳା । ନବସର୍ଜନା ହେବ ବିଲୟର ପୃଷ୍ଠଭୂମିରୁ । ଆଶାବାଦର ରଙ୍ଗ ହେବ ଜୀବନର ରଙ୍ଗ ।

"ନଇଁ ପଡ଼ିଥିବା ଗଛ ହିଁ ଦେଇପାରିବ ଆଶ୍ରା ।"

(ନଇଁ ପଡିଥିବା ଗଛ- ସତ୍ୟପାଠ)

'ପ୍ରଜାପତିର ନୂଆ ଡେଣାରେ' ଆଜି ମଣିଷ କିପରି ସ୍ୱପ୍ନ ଦେଖା ଛାଡି ଏକ କୃତ୍ରିମ ବେଶଧାରଣ କରିଛି, ତା'ର ବର୍ଣ୍ଣନା ହୋଇଛି । ସେ ଯେଉଁ ବେଶ ନେଇଛି ତା' ଏକ ଛଦ୍ମ ବେଶ । 'ହେ ରାମ' କବିତାରେ ଗାନ୍ଧିଜୀଙ୍କୁ ପବିତ୍ର, ଦେବତା ରୂପରେ ପରିକଳ୍ପନା କରିଛନ୍ତି । 'ହେ ଗାନ୍ଧୀ ବିଦାୟ' କବିତାରେ ରହିଛି ଦେଶାତ୍ମବୋଧକ ରଙ୍ଗ । କବିଙ୍କ ଭାଷାରେ:

"ବିଦାୟ କେବଳ ତମର ମର ଶରୀରକୁ<br>
ବିଦାୟ ତମକୁ ନୁହେଁ<br>
ବିଦାୟ ତୁମ ପ୍ରବର୍ତ୍ତିତ ଅହିଂସାକୁ ହେଁ<br>
ବିଦାୟ ତୁମ ଦେଶ ପ୍ରେମକୁ ନୁହେଁ ।"

କବିଙ୍କ ପ୍ରତ୍ୟେକ କବିତାରେ ଫୁଟିଛି ମଣିଷ ଜୀବନର ଗାଥା । ଆଜି ଦୁନିଆର ମଣିଷ ମନରେ କିପରି ପରିବର୍ତ୍ତନ ହେଲାଣି ତା'ର ସୁନ୍ଦର ଚିତ୍ର ତାଙ୍କ କବିତା ଗୁଡିରେ ଦେଖିବାକୁ ମିଳେ । ତାଙ୍କ ଭାଷା ପ୍ରୟୋଗ ଅତ୍ୟନ୍ତ ଶିଷ୍ଟ ଓ ସଂଭ୍ରାନ୍ତ । ସେ ଏଇଭଳି ଭାବେ କାଳଜୟୀ ସାହିତ୍ୟ ଲେଖିଚାଲନ୍ତୁ, ପ୍ରଭୁ ଜଗନ୍ନାଥ ତାଙ୍କ ପଥ କୁସୁମିତ କରନ୍ତୁ ।

*ପ୍ଲଟ ନଂ-୮୩ (ସି) ଆମ୍ରପଲ୍ଲୀ*<br>
*ଶୈଳଶ୍ରୀବିହାର, ଭୁବନେଶ୍ୱର-୭୫୧୦୨୧*

# ଉତ୍କଳୀୟ ବୈଷ୍ଣବ ପରମ୍ପରା

ଅମୂଲ୍ୟ କୁମାର ନାୟକ (୫୯୯)

ଉତ୍କଳର ବୈଷ୍ଣବୀୟ ପରମ୍ପରାକୁ ଯିବା ପୂର୍ବରୁ ପ୍ରଥମେ ଚାରି ବୈଷ୍ଣବ ସମ୍ପ୍ରଦାୟର ସମ୍ୟକ୍ ସୂଚନା ପ୍ରଦାନ କରାଯାଇଛି । ଶ୍ରୀ, ରୁଦ୍ର, ବ୍ରହ୍ମ, ସନକା, ଏହି ଚାରି ବୈଷ୍ଣବ ସମ୍ପ୍ରଦାୟ ସୃଷ୍ଟି ଆରମ୍ଭରୁ ସନାତନ ଗୁରୁ ପରମ୍ପରାରେ ଅଛନ୍ତି, ଭବିଷ୍ୟତରେ ମଧ୍ୟ ଥିବେ । ଏଥିପାଇଁ ଏହା ସନାତନ ବୈଷ୍ଣବ ପରମ୍ପରା । ବର୍ତ୍ତମାନ ଶ୍ୱେତ ବରାହ କଳ୍ପରେ ଉନବିଂଶ ତମ ଦ୍ୱାପର ଗତ ହୋଇଯାଇଛି ଉନବିଂଶ ତମ କଳି ଚାଲିଛି । ଏହାର ଅନ୍ୟ ନାମ ଧନ୍ୟ କଳି । ଯେହେତୁ ନାମର ଆଶ୍ରୟରେ ଜୀବକୁ ସହଜରେ ଭଗବତ୍ ପ୍ରାପ୍ତି ହୋଇଥାଏ ।

**ଶ୍ରୀ ସମ୍ପ୍ରଦାୟ:-** ଏହି ସମ୍ପ୍ରଦାୟର ଆଦ୍ୟଗୁରୁ ମହାଲକ୍ଷ୍ମୀ ଅଟନ୍ତି । ବର୍ତ୍ତମାନର କଳିଯୁଗରେ ଏହି ସମ୍ପ୍ରଦାୟର ଜଗତ୍‌ଗୁରୁ ରୂପରେ ରାମାନୁଜାଚାର୍ଯ୍ୟ ଆସିଥିଲେ । ଆଉ ଜଣେ ଆଚାର୍ଯ୍ୟ ରାମାନନ୍ଦାଚାର୍ଯ୍ୟ ମଧ୍ୟ ଏହି ସମ୍ପ୍ରଦାୟର ଜଗତଗୁରୁ ଅଟନ୍ତି । ଶ୍ରୀ ସମ୍ପ୍ରଦାୟର ଆରାଧ୍ୟ ଲକ୍ଷ୍ମୀ-ନାରାୟଣ ଅଟନ୍ତି  ଏବଂ ରାମାନନ୍ଦାଚାର୍ଯ୍ୟ ସମ୍ପ୍ରଦାୟ ଆରାଧ୍ୟ ସୀତା ରାମ ଅଟନ୍ତି । ଏହି ସମ୍ପ୍ରଦାୟ ଅଦୈତ୍ୟବାଦ ଦର୍ଶନରେ ବିଶ୍ୱାସ କରେ । ଏହାର ପ୍ରଧାନ ପ୍ରଚାରକ ଗୋସ୍ୱାମୀ ତୁଳସୀଦାସ ସମଗ୍ର ଭାରତରେ ସୀତାରାମ ଭକ୍ତିର ପ୍ରଚାର ସହ ପୁରୀ ଆସି ଶ୍ରୀଜଗନ୍ନାଥ ଓ ବଳରାମଙ୍କୁ ରାମ ଲକ୍ଷ୍ମଣ ରୂପରେ ଭକ୍ତି ଅର୍ଘ୍ୟ ପ୍ରଦାନ କରିଥିଲେ । ପାହାଳ ନିକଟସ୍ଥ ପ୍ରାଚୀନଦୀ କୂଳରେ ଅଦ୍ୟାବଧି ତୁଳସୀ ଦାସ ଗୋସ୍ୱାମୀଙ୍କ ଆଶ୍ରମ ଅଛି । ଜଗତ୍ ଗୁରୁ ରାମାନୁଜାଚାର୍ଯ୍ୟ ମଧ୍ୟ ପୁରୀରେ ଅନେକ ଦିନ ଅବସ୍ଥାନ କରି ଜଗନ୍ନାଥଙ୍କୁ ମହାନାରାୟଣ ଓ ମହାବୈକୁଣ୍ଠାଧିପତି ରୂପେ ଉପାସନା କରିଥିଲେ ।

**ରୁଦ୍ର ସମ୍ପ୍ରଦାୟ:-** ଏହି ସମ୍ପ୍ରଦାୟର ଆଦ୍ୟଗୁରୁ ସଦାଶିବ ଅଟନ୍ତି । ଶ୍ୱେତବରାହ କଳ୍ପର ବୈବଶ୍ୱତ ମନ୍ୱନ୍ତରରେ ଉନବିଂଶତମ କଳିରେ ବିଷ୍ଣୁ ସ୍ୱାମୀ ଯିଏକି ଲକ୍ଷ୍ମଣ ମହାରାଜଙ୍କ ଅବତାର ଅଟନ୍ତି, ସେ ଜଗତ୍‌ଗୁରୁ ରୂପେ ଆସିଥିଲେ । ବିଶିଷ୍ଟ ଦୈତାଦୈତବାଦ ଏହି ସମ୍ପ୍ରଦାୟର ଦର୍ଶନ ଅଟେ । ରାଧାକୃଷ୍ଣ ଏହି ସମ୍ପ୍ରଦାୟର ଆରାଧ୍ୟ ଅଟନ୍ତି । ବିଷ୍ଣୁସ୍ୱାମୀ ପୁରୀର ବୈଦିକ ବିଦ୍ୟାଳୟରେ ଅନେକ ଦିନ ଧରି ଅଧ୍ୟାପନା କରିଥିଲେ । ସେ ଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କ ମିଳିତ ବିଗ୍ରହ ବୋଲି ମାନୁଥିଲେ ।

**ବ୍ରହ୍ମ ସମ୍ପ୍ରଦାୟ:-** ଏହି ସମ୍ପ୍ରଦାୟର ଆଦ୍ୟଗୁରୁ ବ୍ରହ୍ମା ଅଟନ୍ତି । କଳିଯୁଗରେ ମାଧବାଚାର୍ଯ୍ୟ ଏହି ସମ୍ପ୍ରଦାୟର ଜଗତ୍‌ଗୁରୁ ରୂପରେ ଆସିଥିଲେ । ତାଙ୍କର ଦର୍ଶନ ବିଶିଷ୍ଟ ଦୈତବାଦ ଥିଲା ।  ସେ ଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ମନେକରି ତାଙ୍କର ସେବାରେ ନିୟୋଜିତ ଥିଲେ ଓ ପୁରୀରେ ଅନେକ ଦିନ ଧରି ଶାସ୍ତ୍ରାର୍ଥ ଆଲୋଚନାରେ ସମୟ କଟାଇଥିଲେ ।

ଅନ୍ୟତମ ଅବତାର ଶ୍ରୀଚୈତନ୍ୟ ମହାପ୍ରଭୁ ଭକ୍ତିଧର୍ମ ପ୍ରଚାର କରିଥଲେ । କଳିଯୁଗର ମହାମନ୍ତ୍ର ପ୍ରଦାନ ଓ ପ୍ରଚାର କରିବା ପାଇଁ ତାଙ୍କର ସମଗ୍ର ଜୀବନ ସମର୍ପିତ ଥିଲା । ସେ ଚାରି ବୈଷ୍ଣବ ସମ୍ପ୍ରଦାୟକୁ ଅଙ୍ଗୀକାର କରି ନିଜର ଦର୍ଶନ ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱ ଷଡଗୋସ୍ୱାମୀ ଓ ପଣ୍ଡିତଙ୍କ ଦ୍ୱାରା ପ୍ରଚାର କରିଥିଲେ । ସେ ନିଜ ଜୀବଦଶାରେ ପୁରୀରେ ଅଠର ବର୍ଷକାଳ ପଣ୍ଡିତ ମିଶ୍ରଙ୍କର ଗମ୍ଭୀରାରେ ରହି ଜଗନ୍ନାଥଙ୍କ ସେବା କରିଥିଲେ । ସେ ଥରେ ମାତ୍ର ଦାକ୍ଷିଣାତ୍ୟ ଯାଇ ବ୍ରହ୍ମ-ସଂହିତା ଉଦ୍ଧାର କରିଥିଲେ ଓ ସେଠାକାର ସେନାପତି ରାୟ ରାମାନନ୍ଦଙ୍କୁ ଶାସ୍ତ୍ରାର୍ଥ ଆଲୋଚନା ପାଇଁ ପୁରୀ ଡକାଇ ଆଣିଥିଲେ । ଥରେ ସେ ଉତ୍ତର ଭାରତ ଗମନ କରିଥିଲେ । ସେଠାରେ ଷଡଗୋସ୍ୱାମୀଙ୍କୁ ବୃନ୍ଦାବନର ପୁନରୁଦ୍ଧାର ଦାୟିତ୍ୱ ଦେଇ ପୁରୀ ପ୍ରତ୍ୟାବର୍ତ୍ତନ କରିଥିଲେ । ଓଡ଼ିଶାର ତତ୍କାଳୀନ ପଞ୍ଚ ସଖା ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଓ ଅନନ୍ତ ଦାସଙ୍କ ସମ୍ପର୍କରେ ସେ ଆସିଥିଲେ । ଜଗନ୍ନାଥ ଦାସଙ୍କ ପାଣ୍ଡିତ୍ୟରେ ମୁଗ୍ଧହୋଇ ତାଙ୍କୁ ସେ ଅତିବଡି ଉପାଧି ପ୍ରଦାନ କରିଥିଲେ । ତାଙ୍କର ପ୍ରଧାନ ଶିଷ୍ୟ ସନାତନ ଗୋସ୍ୱାମୀ, ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଓ ଅନନ୍ତଙ୍କୁ ବୈଷ୍ଣବ ଦୀକ୍ଷାରେ ଦିକ୍ଷିତ କରାଇଥିଲେ । ମାତ୍ର ଉତ୍କଳୀୟ ବୈଷ୍ଣବ ପରମ୍ପରାରେ ଜଗନ୍ନାଥ ଦାସ ଜ୍ଞାନମିଶା ଭକ୍ତି, ବଳରାମ ଦାସ ଯୋଗମିଶା ଭକ୍ତି, ଅଚ୍ୟୁତାନନ୍ଦ ଓ ଅନ୍ୟ ଦୁଇଜଣ ଭକ୍ତ ଯଶୋବନ୍ତ ଓ ଅନନ୍ତ ଜ୍ଞାନଯୋଗ ତନ୍ତ୍ର ମିଶା ଭକ୍ତି ପଥର ପଥିକ ଥିଲେ ।

**ସନକା ସମ୍ପ୍ରଦାୟ:-** ସନକ, ସନଦ, ସନତ୍ ଓ ସନନ୍ଦନ, ଏହି ଚାରି କୁମାର ଶୁଦ୍ଧଦ୍ୱୈତବାଦ ବୈଷ୍ଣବ ସମ୍ପ୍ରଦାୟର ଆଦ୍ୟଗୁରୁ ଅଟନ୍ତି । କଳିଯୁଗରେ ଏହି ସମ୍ପ୍ରଦାୟର ନିମ୍ବକାର୍ଯ୍ୟ ଜଗତ୍‌ଗୁରୁ ରୂପରେ ଆସିଥିଲେ । ସେ ସୁଦର୍ଶନଙ୍କ ଅବତାର ଅଟନ୍ତି । ସେ ଶୁଦ୍ଧ ଦ୍ୱୈତବାଦର ପ୍ରଚାରକ ଥିଲେ । ତାଙ୍କର ଆରାଧ୍ୟ ବାଳଗୋପାଳ ଅଟନ୍ତି । ସେ ଜଗନ୍ନାଥଙ୍କୁ ବାଳ ଗୋପଳ ରୂପେ ଗ୍ରହଣ କରିଥିଲେ । ଏହି ବାଳଗୋପାଳ ରୂପ ପାଇଁ ଏକ ଉଦାହରଣ ଦିଆଗଲା । ପ୍ରଳୟ, ଆଂଶିକ ପ୍ରଳୟ, ନିତ୍ୟ ପ୍ରଳୟ, ଯୁଗ ପ୍ରଳୟ, ମନ୍ୱନ୍ତର ପ୍ରଳୟ, କଳ୍ପାନ୍ତର ପ୍ରଳୟ ମହାପ୍ରଳୟ ଅଟେ । ମହାପ୍ରଳୟ ସମୟରେ ଶ୍ରୀକ୍ଷେତ୍ର ପୁରୀର ଅସ୍ତିତ୍ୱ ଲୋପ ହୁଏ ନାହିଁ । ମାର୍କଣ୍ଡ ଋଷି ମହାପ୍ରଳୟରେ ଭଗବାନ ଜଗନ୍ନାଥଙ୍କୁ ବାଳ ଗୋପାଳ ରୂପରେ ଅଶ୍ୱତ୍ଥ ପତ୍ରରେ ଶୋଇ ନିଜର ବୃଦ୍ଧାଙ୍ଗୁଠିକୁ ଚୁଚୁମୁ ଥିବାର ଦିବ୍ୟ ଦର୍ଶନ କରିଥିଲେ । ଉତ୍କଳୀୟ ବୈଷ୍ଣବ ପରମ୍ପରାରେ ଅନେକ ସାର ଗର୍ଭକ ତତ୍ତ୍ୱ ଅଛି ଯାହା ସଂକ୍ଷେପରେ ବର୍ଣ୍ଣନା କରିବା ଅସମ୍ଭବ । ରେମୁଣାର ଶ୍ରୀଧର ସ୍ୱାମୀ ଭଗବାନ ନୃସିଂହଙ୍କୁ ତପସ୍ୟାକରି ସମ୍ପୂର୍ଣ୍ଣ ଭଗବତ୍ ଜ୍ଞାନ ଲାଭ କରିଥିଲେ । ସେ ଶ୍ରୀମଦ୍ ଭାଗବତର ପ୍ରଥମ ସଂସ୍କୃତ ଟୀକାକାର ଅଟନ୍ତି । କେନ୍ଦ୍ରାପଡ଼ାର ବଳଭଦ୍ର ବିଦ୍ୟାଭୂଷଣ ଶ୍ରୀମଦ୍ ଭଗବତ୍

ଗୀତାର ଟୀକା 'ଗୋବିନ୍ଦ ଭାଷ୍ୟ'ର ରଚୟିତା । ଜଗନ୍ନାଥ ଭକ୍ତିର ଅମୃତଧାରାରେ ପ୍ରଭାବିତ ଜଗତସିଂହପୁର ଜିଲ୍ଲାର ବିଶର ମହାନ୍ତି କଳାପାହାଡ ନେଇ ପୋଡି ଦେଇଥିବା ଦାରୁରୁ ବ୍ରହ୍ମକୁ ଗଙ୍ଗାକୂଳରୁ ଉଦ୍ଧାର କରିଥିଲେ । ତାକୁ ନିଜର ମୃଦଙ୍ଗ ଭିତରେ ଆଣି ଗଡ କୁଜଙ୍ଗରେ ପୂଜା କରୁଥିଲେ । ବନ୍ଧୁ ମହାନ୍ତିଙ୍କୁ ସୁବର୍ଣ୍ଣ ଥାଳିରେ ଖାଦ୍ୟ ପରଶିଥିଲେ । ରଘୁ ଅରକ୍ଷିତଙ୍କୁ ଦିଆଯାଇଥିବା ବିଷାକ୍ତ ଖାଦ୍ୟକୁ ଭଗବତ୍ ସମର୍ପଣ ପରେ ଭଗବାନ ନିଜେ ବିଷ ଗ୍ରହଣ କରି ଅମୃତ କରିଦେଇଥିଲେ । ଦାସିଆ ବାଉରୀ ପଠାଇଥିବା ନଡିଆକୁ ଭଗବାନ ଗ୍ରହଣ କରିଥିଲେ । ଗୀତ ଗୋବିନ୍ଦକୁ ପୂର୍ଣ୍ଣତା ଦେବା ପାଇଁ ସେ ଜୟଦେବ ରୂପରେ ଆସି ପଂକ୍ତି ରଚନା କରିଥିଲେ । ସମ୍ୟକ ରୂପରେ ଏଠାରେ ଜଗନ୍ନାଥ ସଂସ୍କୃତିର ପରିଚୟ ଦିଆଯାଉଛି । ଜଗନ୍ନାଥ ନିଜେ କୃଷ୍ଣ ଅଟନ୍ତି । ଯିଏକି ପୂର୍ଣ୍ଣବ୍ରହ୍ମ, ସଚ୍ଚିଦାନନ୍ଦ ପୂର୍ଣ୍ଣାନନ୍ଦ, ଅନନ୍ତ ରସମୟ, ପରମାନନ୍ଦ, ପରମ ପୁରୁଷ ଭଗବାନ ଅଟନ୍ତି । ଶ୍ରୀ ବଳରାମ ଭଗବାନଙ୍କ ପ୍ରଥମ ସ୍ୱରୂପର ବିସ୍ତାର ମହାଶଂକର୍ଷଣ ରୂପେ ଏଠାରେ ବିରାଜମାନ ।

ଭଉଣୀଙ୍କ ରୂପରେ ପୂଜା ପାଉଥିବା ଦେବୀ ସୁଭଦ୍ରା ଯୋଗମାୟାଙ୍କର ବିସ୍ତାର ଏବଂ ଭଗବାନଙ୍କ ଅନ୍ତରଙ୍ଗୀ ଶକ୍ତି, ହ୍ଲାଦିନୀଶକ୍ତି, ବା ଆନନ୍ଦଦାୟିକା ଶକ୍ତି ରାଧାରାଣୀ ଅଟନ୍ତି । ଏଠାରେ ସେ ଭଗବାନଙ୍କ ଶ୍ରୀଅଙ୍ଗରେ ଥିବା କାରଣରୁ ତାଙ୍କର ବିସ୍ତୃତାଂଶ ମହାଲକ୍ଷ୍ମୀ, ଭୂଦେବୀ, ଶ୍ରୀଦେବୀ, ବିମଳା ଇତ୍ୟାଦି ରୂପରେ ପୂଜା ପାଉଛନ୍ତି । ସୁଦର୍ଶନ ମହାଭାରତରେ ପ୍ରଦ୍ୟୁମ୍ନଙ୍କ ଶିର ଛେଦନପରେ ପ୍ରତିଶୃତି ଅନୁସାରେ ଦାରୁ ରୂପରେ ପୂଜିତ । କାରଣ ବାସୁଦେବ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ, ଶଂକର୍ଷଣ ଏମାନେ ଚତୁର୍ବ୍ୟୂହ । ଉଭୟ ପରମବ୍ୟୋମ ଓ ଭୌତିକ ବ୍ୟୋମରେ ନିଜର ଚତୁର୍ବ୍ୟୂହର କାର୍ଯ୍ୟ ସମ୍ପାଦନା କରୁଛନ୍ତି । ଜମ୍ବୁଦୀପ, ଭାରତବର୍ଷର କଳିଙ୍ଗ ପ୍ରାଣ କେନ୍ଦ୍ର ଟେ । ଏହା କପିଳମୁନି କପିଳ ସଂହିତାରେ କହିଛନ୍ତି । ବର୍ଷାନାଂ ଭରତ ଶ୍ରେଷ୍ଠୋ, ଦେଶାନାଂ ଉତ୍କଳ ସ୍ମୃତ, ଉତ୍କଳସ୍ୟ ସମାଦେଶ ଦେଶନାସ୍ତି ମହୀତଳେ । ପୁରୀ କ୍ଷେତ୍ରକୁ ଶିଖମାନଙ୍କ ପ୍ରଥମଗୁରୁ ଶ୍ରୀନାନକ ଦେବ ଆସିଥିଲେ । ସେ ଜଗନ୍ନାଥଙ୍କ କୃପାରୁ ସତ୍ୟର ପ୍ରତ୍ୟକ୍ଷ ଦର୍ଶନ କରି ରାସ ମଣ୍ଡଳରେ ପ୍ରବେଶ କରିବାର ସୁଯୋଗ ପାଇଥିଲେ । ଏହି ସ୍ଥାନକୁ ସନ୍ଥକବୀର, ଜ୍ଞାନଦେବ, ତୁକାରାମ୍ ଓ ଅଦୈତବାଦର ପ୍ରଚାରକ ଆଦି ଶଙ୍କର ଇତ୍ୟାଦି ମହାପୁରୁଷମାନେ ନିଜର ସାଧନା କ୍ଷେତ୍ର ରୂପେ ଗ୍ରହଣ କରିଥିଲେ । ଭଗବାନ ବ୍ୟାସଦେବ ମଧ୍ୟ ଏଠାକୁ ଆସିଥିବାର ପ୍ରମାଣ ଅଛି । ଏହା ବ୍ୟତିରେକେ ଗୌତମ, କଣାଦ, କପିଳ, ପତଞ୍ଜଳୀ, ଜୈମିନୀ, ଅଷ୍ଟବକ୍ର ଇତ୍ୟାଦି ଆଧ୍ୟାତ୍ମିକ ତତ୍ତ୍ୱବିତ୍‌ମାନେ ଶ୍ରୀକ୍ଷେତ୍ରକୁ ଆସିଛନ୍ତି ଏବଂ ଜଗନ୍ନାଥଙ୍କୁ ନିଜର ଇଷ୍ଟରୂପେ ଗ୍ରହଣ କରିଛନ୍ତି । କେବଳ ଚୈତନ୍ୟ ମହାପ୍ରଭୁ ନୁହନ୍ତି ପରବର୍ତ୍ତୀ ସମୟରେ ଅନେକ ବୈଷ୍ଣବ ଆଚାର୍ଯ୍ୟ ଓଡ଼ିଶାକୁ ଆସିଛନ୍ତି । ଯଥା ନିଗମାନନ୍ଦ ସରସ୍ୱତୀ, ଶ୍ରୀ ମନ୍ଦିର

ଚାରି ଦ୍ୱାର ମଧ୍ୟରୁ ଏକ ଦ୍ୱାରରେ ତାଙ୍କୁ ସ୍ଥାନ ଦିଆଯାଇଛି । ସେ ଜ୍ଞାନୀଗୁରୁ, ଯୋଗୀଗୁରୁ, ତନ୍ତ୍ରଗୁରୁ ଓ ପ୍ରେମୀଗୁରୁ ଇତ୍ୟାଦି ପୁସ୍ତକ ରଚନା କରି ସନାତନ ଧର୍ମକୁ ଓ ବୈଷ୍ଣବ ପରମ୍ପରାକୁ ସୁଦୃଢ଼ କରିଛନ୍ତି । ଭଗବାନ ହଂସ ଅବତାରଙ୍କ ଅଂଶରେ ଠାକୁର ଅନୁକୂଳଚନ୍ଦ୍ର ଜନ୍ମ ଗ୍ରହଣ କରି ପୁରୁଷୋତ୍ତମ ଧାମ ଶ୍ରୀକ୍ଷେତ୍ରର ମହନୀୟତାକୁ ପ୍ରତିପାଦନ କରିଛନ୍ତି । ସେ ଲୋକ ସଂସ୍କାର ଓ ଲୋକଶିକ୍ଷା ନିମିତ୍ତ ସମାଜର ସୁଧାର ପାଇଁ ଅନେକ ଶିକ୍ଷା ପ୍ରଦାନ କରିଛନ୍ତି । ଭଗବାନଙ୍କର ୨୩ ଅବତାର ମଧ୍ୟରୁ ଓଡ଼ିଶାରେ ପାଞ୍ଚଟି ଅବତାରର ସ୍ଥାନ ଅଛି । ସମଗ୍ର ଉତ୍କଳ ତଥା ମହେନ୍ଦ୍ରଗିରି ଭଗବାନ ପରଶୁରାମଙ୍କର ତପସ୍ୟାସ୍ଥଳୀ ଅଟେ । ଭଗବାନଙ୍କ ଅବତାର କପିଳମୁନୀ ଭୁବନେଶ୍ୱରରେ କପିଳଶ୍ୱେର ମହାଦେବ ରୂପରେ ପୂଜା ପାଉଅଛନ୍ତି । ଭଗବାନଙ୍କ ଦଶମ ଅବତାର ବୁଦ୍ଧଦେବ କଳିଙ୍ଗର ସନ୍ତାନ ଅଟନ୍ତି ? ତାଙ୍କର ଧର୍ମକୁ ସମଗ୍ର ଏସିଆ ଭୂଖଣ୍ଡରେ କଳିଙ୍ଗର ବଣିକମାନେ ପ୍ରଚାର କରିଅଛନ୍ତି । ଯଥା ସିଂହଳ, ଜାଭା, ସୁମତ୍ରା ବର୍ଣ୍ଣିଓ ବ୍ରହ୍ମଦେଶ, ଥାଇଲାଣ୍ଡ ମାଲେସିଆ, ଚମ୍ପାଦେଶ (ଭିଏତନାମ୍) ଫିଲିପାଇନ୍, ଜାପାନ, ଚାଇନା ଇତ୍ୟାଦି ଦେଶ । ଜୈନ ଧର୍ମର ଆଦିନାଥ, ଋଷଭନାଥ କଳିଙ୍ଗର ସନ୍ତାନ ଅଟନ୍ତି ଏବଂ ଜୈନଧର୍ମର ଶେଷ ତୀର୍ଥଙ୍କର ପାର୍ଶ୍ୱନାଥ ଓ ମହାବୀରଙ୍କର ସାଧନା କ୍ଷେତ୍ର କଳିଙ୍ଗ ଅଟେ । ବିଶ୍ୱର ଅନେକ ଧର୍ମ କଳିଙ୍ଗରୁ ସୃଷ୍ଟ -ଯଥା ଅଲେଖ ଧର୍ମର ମୂଳପ୍ରଚାରକ ପ୍ରବୋଧସ୍ୱାମୀ ଓ ପରେ ଭୀମଭୋଇ ତଥା ଅନ୍ୟମାନେ ଏହି ଓଡ଼ିଶାର ଗରିମାକୁ ପ୍ରତିପାଦିତ କରୁଅଛନ୍ତି । ଗୋପବନ୍ଧୁଙ୍କ ଭାଷାରେ ଭାରତ ରୂପକ ପଦ୍ମଫୁଲରେ କଳିଙ୍ଗ ହିଁ କେଶର । ସ୍କନ୍ଦ ପୁରାଣରେ କଥିତ ଅଛି, ଏଠାରେ ଜଣାପଡେ ଯେ ଜଗନ୍ନାଥ ନୁହନ୍ତି ଜୀବନ୍ତ । ସତ୍ୟ ଯୁଗରେ ଜଗନ୍ନାଥଙ୍କର ହସ୍ତ ପଦଯୁକ୍ତ ଇନ୍ଦ୍ରନୀଳମଣୀ ବିଗ୍ରହ ଥିଲା । କଳିଯୁଗରେ ମଣିଷ ପାଇଁ ଏହା ଦର୍ଶନୀୟ ନୁହେଁ ବୋଲି ମହାଲକ୍ଷ୍ମୀଙ୍କ ପ୍ରାର୍ଥନାରେ ଭଗବାନ ଦାରୁ ବିଗ୍ରହ ରୂପ ଧାରଣ କରିଛନ୍ତି । ଓଡ଼ିଶାର ଗାଁ ଗଣ୍ଡାରେ ୫ ହଜାର ବର୍ଷ ପୂର୍ବରୁ ବୈଷ୍ଣବ ପରମ୍ପରାର ଦୋଳମେଣଳ ପ୍ରଥା ଅଛି । ଏହା ଉତ୍କଳୀୟ ବୈଷ୍ଣବ ଧର୍ମର ମହାନତାର ସାମାନ୍ୟ ବିଶ୍ଳେଷଣ ।

ଗ୍ରା. ସୁଗୋମୋ: ଗୋପାଳଜୀଉ, ଭା: ଏଡତାଳ
ଜି: ଭଦ୍ରକ-୭୫୬୧୨୪, ମୋ: ୯୬୬୮୭୪୬୩୦

*(ଅନେକ ପ୍ରସଙ୍ଗ ଲେଖକଙ୍କ ନିଜସ୍ୱ ମତ- ସଂପାଦକ)*

# ଜଗନ୍ନାଥ ସଂସ୍କୃତି ଓ ସାମ୍ୟବାଦ

ଡା. ହରେକୃଷ୍ଣ ନାୟକ (୫୯୭)

ଜଗନ୍ନାଥ ଓଡ଼ିଶାର ଇଷ୍ଟ ଦେବତା ହିସାବରେ ସୁପ୍ରତିଷ୍ଠିତ । ଜଗତର ସୃଷ୍ଟି ଭଳି ଜଗନ୍ନାଥଙ୍କ ସର୍ଜନା ରହସ୍ୟମୟ । ସେ ରହସ୍ୟର ଉନ୍‌ମୋଚନ ଅତ୍ୟନ୍ତ ଦୁସାଧ, ଅସାଧ ମଧ । ଏ ଦେବତାଙ୍କର ଉଦ୍ଭବ ଓ ବିକାଶ ବିଷୟରେ ଅନେକ ଆଲୋଚନା ଓ ସମାଲୋଚନା ହୋଇଥିଲେ ମଧ କୌଣସି ସଠିକ୍ ସିଦ୍ଧାନ୍ତ ହୋଇପାରିନାହିଁ । ମାନବ ସଭ୍ୟତାର ସୃଷ୍ଟି ଦିନରୁ ଅନେକ ସଂସ୍କୃତିର ସୃଷ୍ଟି ଓ ବିକାଶ ହୋଇଛି ଏବଂ ପ୍ରକାର ଭେଦରେ ବିଲୀନ ହୋଇଯାଇଛି ମଧ । ଏ ସଂସ୍କୃତିମାନଙ୍କ ମଧରେ ଆର୍ଯ୍ୟ ସଂସ୍କୃତି ମୂଳ । ସବୁ ସଂସ୍କୃତି ମୂଳରେ ନିହିତ ରହିଛି ଧର୍ମର ଉପାସନା ଓ ଧର୍ମର ସାଧନା । ଜଗନ୍ନାଥଙ୍କର ଉପାସନାରୁ ହିଁ ଜଗନ୍ନାଥ ସଂସ୍କୃତିର ସୃଷ୍ଟି ।

ଜଗନ୍ନାଥ ପୀଠ ପୁରୀ ସାମ୍ୟବାଦର ଉତ୍ପତ୍ତିର ସ୍ଥଳ ବୋଲି ଲୋକ ମୁଖରୁ ଶୁଣାଯାଏ । ଜଗନ୍ନାଥ ସାମ୍ୟବାଦର ଜ୍ୱଳନ୍ତ ବର୍ତ୍ତିକା ଓ ସାମ୍ୟବାଦ ଜଗନ୍ନାଥ ସଂସ୍କୃତିର ଏକ ବଳିଷ୍ଠ ଆଦର୍ଶ ।

ଜଗନ୍ନାଥଙ୍କ ସମ୍ମୁଖରେ ସମସ୍ତେ ସମାନ । ସେ ଧନୀ ଦରିଦ୍ର, ରାଜା, ପ୍ରଜା, ପାପୀ ତପୀଙ୍କ ମଧରେ ତଫାତ୍ ଦେଖନ୍ତି ନାହିଁ । ଜଗନ୍ନାଥ ସଂସ୍କୃତିରେ ଜାତି, ଧର୍ମ, ସାମ୍ପ୍ରଦାୟିକତାର ସ୍ଥାନ ନାହିଁ । ସେ ମନ୍ଦିରରେ ରହନ୍ତି, ସାଧାରଣ ଲୋକଙ୍କ ଭଳି ଖିଆପିଆ କରନ୍ତି । ଶ୍ରଦ୍ଧାରେ ଓ ଭକ୍ତି ସହିତ ଯିଏ ଯାହା ଯେତେବେଳେ ଯେଉଁଠି ଦେଲେ ସେ ଖାଆନ୍ତି । ମନ୍ଦିରରେ ଭକ୍ତମାନଙ୍କ ଚଳପ୍ରଚଳରେ କଟକଣା ନାହିଁ । ବିନା ଟିକସରେ ଜଗନ୍ନାଥଙ୍କୁ ଯିଏ କେହି ଦର୍ଶନ କରିପାରିବେ ଏବଂ ମନ୍ଦିର ଭିତରେ ଚଳପ୍ରଚଳ କରିପାରିବେ । ଯିଏ କେହି ଜଗନ୍ନାଥଙ୍କ ଭୋଗ ଜାତି ଧର୍ମ ନିର୍ବିଶେଷରେ ଗ୍ରହଣ କରିପାରିବେ । ଶବରମାନେ ଅଣସର ସମୟରେ ତାଙ୍କୁ ପୂଜା କରନ୍ତି ଓ ଭୋଗ ମଧ ଦିଅନ୍ତି । ତା' ଛଡ଼ା ଦଳିତ ଶ୍ରେଣୀର ସେବକମାନଙ୍କର କେତେକ କର୍ତ୍ତବ୍ୟ ଓ ଅଧିକାର ଅଛି ଯାହାକି ସେମାନେ ଦିନକୁ ଦିନ ବିଧିବଦ୍ଧ ଭାବରେ ପ୍ରତିପାଳିତ କରିଥାଆନ୍ତି ।

ଜଗନ୍ନାଥଙ୍କ ନାମରୁ ଜଣାଯାଏ ସେ କୌଣସି ଏକ ଜାତି କିମ୍ବା ଧର୍ମର ନୁହନ୍ତି ସେ ସାରା ବିଶ୍ୱର ଦେବତା । ଜଗତମାନେ ବିଶ୍ୱ, ନାଥମାନେ କର୍ତ୍ତା । ସେ ସାରା ବିଶ୍ୱର ଦୁଃଖରେ ଥିବା ଲୋକଙ୍କର ରକ୍ଷାକର୍ତ୍ତା । ଜଗନ୍ନାଥ ସଂସ୍କୃତିରେ ଧର୍ମ ମାନେ ସମଗ୍ର ଜଗତର ମଙ୍ଗଳ ଓ ସଂହତି ।

ଭକ୍ତର ବନ୍ଧୁ ଭାବେ ପରିଚିତ ଜଗନ୍ନାଥ ସାରା ସୃଷ୍ଟିକୁ ଆଲିଙ୍ଗନ କରିବାର ଉଦାହରଣ ଅନ୍ୟ କୌଣସି ଉପାସନା ପୀଠରେ ଦେଖିବାକୁ ମିଳେ ନାହିଁ । ସମଗ୍ର ମାନବ ଜାତିକୁ ସେ ମୈତ୍ରୀ ଫାଶରେ ଆବଦ୍ଧ ରଖିବା ପାଇଁ ତାଙ୍କର ବନ୍ଧୁତ୍ୱର ହସ୍ତ ସର୍ବଦା ପ୍ରସାରିତ ଅବସ୍ଥାରେ ଅଛି ।

ତେଣୁ କବି ଲେଖିଛନ୍ତି "ଦୀନାନାଂ ଉଦ୍ଧୃତା ନାଥଂ ପ୍ରଳମ୍ବଭୁଦ ମଞ୍ଜରୀ । ତାଙ୍କର ହାତ ନାହିଁ ମାତ୍ର ସେ ଦାସିଆ ବାଉରୀ ଭଳି ଭକ୍ତ ହାତରୁ ନଡ଼ିଆ ଗ୍ରହଣ କରିଥିବାର କିମ୍ବଦନ୍ତୀ ଅଛି । ତାଙ୍କର ଗୋଡ଼ ନାହିଁ ମାତ୍ର ଭକ୍ତ ବଂଧୁ ମହାନ୍ତିଙ୍କ ପରିବାରର ଦୁଃଖ ସହି ନପାରି ସୁନା ଥାଳିରେ ଲୁଗା ଢ଼ାଙ୍କି ମହାପ୍ରସାଦ ଆଣି ତାଙ୍କ କୁଡ଼ିଆରେ ଦେଇଯାଇଥିଲେ । ତାଙ୍କର କାନ ନାହିଁ, ମାତ୍ର ସେ ହଜାର ହଜାର ଭକ୍ତଙ୍କର ଡାକ ବିଶେଷ କରି ଭକ୍ତ ସାଲବେଗଙ୍କର ଡାକ ଶୁଣି ସେ ପୁରୀ ପହଞ୍ଚିବା ପର୍ଯ୍ୟନ୍ତ ରଥକୁ ବଳଗଣ୍ଡିଠାରେ ଅଟକାଇ ରଖିଥିଲେ । ତାଙ୍କ ଚକା ଆଖିରେ ସାରା ସଂସାରର ଦୃଶ୍ୟ ସେ ଦେଖୁଛନ୍ତି ଏବଂ କର୍ମ ଅନୁସାରେ କାହାକୁ ଆଶ୍ରୟ ଦେଉଛନ୍ତି ତ କାହାକୁ କଠିନ ଦଣ୍ଡରେ ଦଣ୍ଡିତ କରୁଅଛନ୍ତି ।

ପୁରୀ ରଥଯାତ୍ରା ସାମ୍ୟବାଦର ଏକ ବଳିଷ୍ଠ ଉଦାହରଣ । ସମସ୍ତ ମାନବ ଜାତିକୁ ଏକ କରି ସମସ୍ତଙ୍କୁ କୋଳ କରିବା ପାଇଁ ସେ ଏହି ଯାତ୍ରା ଦିନ ବଡଦାଣ୍ଡକୁ ଓହ୍ଲାଇ ଆସନ୍ତି । ଏହି ବଡ଼ଦାଣ୍ଡରେ ପାପୀ-ତାପୀ, ଧନୀ-ନିର୍ଦ୍ଧନ, ରୋଗୀ-ଭୋଗୀ, ଜାତି-ଅଜାତି, ଉଚ୍ଚ-ନିଚ୍ଚ ନର ନାରୀ ନିର୍ବିଶେଷରେ ସମସ୍ତଙ୍କୁ ସେ ସମାନ ଦୃଷ୍ଟିରେ ଦେଖି ସେମାନଙ୍କ ପୂଜା ଅର୍ଚ୍ଚନା ଗ୍ରହଣ କରିଥାଆନ୍ତି ।

ଜଗନ୍ନାଥ ସଂସ୍କୃତିର ବୈଶିଷ୍ଟ୍ୟ ହେଉଛି ସମନ୍ୱୟ ଧର୍ମ । ଜଗନ୍ନାଥ ହିଁ ପ୍ରତ୍ୟେକ ଧର୍ମର ତଥା ସଂସ୍କୃତିର ସଂକେତ ବହନ କରି ଅଛନ୍ତି ।

ଏହି ସମନ୍ୱୟ ଆଦର୍ଶରେ ଜଗନ୍ନାଥ ସଂସ୍କୃତିର ବିକାଶ ହୋଇଛି । ବଦ୍ରିନାଥ, ଦ୍ୱାରିକାନାଥ ଓ ରାମନାଥ ଆଦି ତୀର୍ଥମାନଙ୍କରେ ପୂଜିତ ବିଗ୍ରହ ଏକ ନିର୍ଦ୍ଦିଷ୍ଟ ସ୍ଥାନର ଅଧିପତି ରୂପେ ବିବେଚିତ ହେଉଥିଲାବେଳେ ଶ୍ରୀକ୍ଷେତ୍ରରେ ଦାରୁ ବ୍ରହ୍ମଙ୍କୁ ପୁରୀନାଥ କୁହାନଯାଇ ସମଗ୍ର ଜଗତର ନାଥ ଜଗନ୍ନାଥ ବୋଲି କୁହାଯାଏ ।

ଏ ଅବସରରେ ଆମେ ଅନୁଭବ କରୁ ଯେ ଶବର ବିଶ୍ୱାବସୁ ଠାରୁ ଆର୍ଯ୍ୟ ଇନ୍ଦ୍ରଦ୍ୟୁମ୍ନ ବୌଦ୍ଧ ଇନ୍ଦ୍ରଭୁତି, ଶୈବ ଶଙ୍କରାଚାର୍ଯ୍ୟ, ଶୂନ୍ୟବାଦୀ ବଳରାମ ଦାସ, ଶୁଦ୍ଧ ଭକ୍ତିବାଦୀ ଶ୍ରୀଚୈତନ୍ୟ ଦେବ, ଶିଖ୍ ଗୁରୁ ନାନକ, ରାମ ଭକ୍ତ ତୁଳସୀ ଦାସ, ଇସଲାମଧର୍ମାବଲମ୍ବୀ ସନ୍ଥ କବୀର, ଭକ୍ତ ସାଲବେଗ, ଜନକ ହରିଦାସଙ୍କ ପର୍ଯ୍ୟନ୍ତ ଏବଂ ଏବେ ଇସ୍କନ୍ ସୋସାଇଟିର ଭକ୍ତମାନେ ମଧ୍ୟ ଜଗନ୍ନାଥଙ୍କୁ ଆରଧନା କରନ୍ତି ।

ଜଗନ୍ନାଥ ଉପାସନା ବିଭିନ୍ନ ଧର୍ମ ମତବାଦର ସମନ୍ୱୟ ପୀଠ ରୂପେ ପରିଗଣିତ ।

ବୌଦ୍ଧ, ଜୈନ, ବୈଷ୍ଣବ, ଶୈବ, ଶାକ୍ତ ପ୍ରଭୃତି ସମସ୍ତେ ଦାରୁ ବ୍ରହ୍ମଙ୍କୁ ନିଜର ବୋଲି ପ୍ରମାଣ କରିଚାଲିଛନ୍ତି ।

ଶବରଙ୍କ ଉପାସନାର ଦାରୁ ଦେବତା ଜଗନ୍ନାଥଙ୍କୁ ଆର୍ଯ୍ୟ ଜୈନ ନିଜର କରିବାକୁ ପ୍ରଚେଷ୍ଟା କରିଥିବା ଇତିହାସ ପୁରାଣ କହୁଛି । ଜୈନମାନେ ଜଗନ୍ତ ସହିତ ସ୍ୱଧର୍ମର ନାଥ ଶବ୍ଦ ଯୋଗ କରି ଦାରୁକୁ ଜଗନ୍ତନାଥ ବା ଜଗନ୍ନାଥ ରୂପେ ଅଭିହିତ କରୁଥିଲାବେଳେ, ଆର୍ଯ୍ୟମାନେ ଦାରୁ ସହିତ ପରମ ଭବ-ଜ୍ୟୋତିକ ବ୍ରହ୍ମ ଶବ୍ଦ ଯୋଗ କରି ଦାରୁ ବ୍ରହ୍ମ ରୂପେ ପୂଜା କରି ଆସିଛନ୍ତି ।

ଧର୍ମୀୟ ପରମ୍ପରାରେ ଏକ ନିରାଟ ସତ୍ୟତା ବହନ କରି ଆସିଛି ଯେ ଦାରୁ ଦେବତା ଜଗନ୍ନାଥଙ୍କୁ ସମସ୍ତ ଧର୍ମାବଲମ୍ବୀ ନିଜର ବୋଲି ପ୍ରତିପାଦନ କରିବାକୁ ଚେଷ୍ଟା କରିଛନ୍ତି ।

ସ୍ୱ ସ୍ୱ ଧର୍ମର ଉପାସ୍ୟ ଦେବତାଙ୍କ ସହିତ ଜଗନ୍ନାଥଙ୍କୁ ଏକତ୍ର ପ୍ରତିଷ୍ଠା କରି ଉପାସନାର ଧାରା ବଦଳାଇବା ସକାଶେ ସାଧାରଣରେ ବହୁ ପ୍ରଚେଷ୍ଟା ହୋଇ ଆସିଛି ।

ବୈଚିତ୍ର୍ୟ ବିସ୍ମୟ ମଧ୍ୟରେ ଚାଲିଛି ଘୋଷଯାତ୍ରା । କିଏ ଏ କାଳିଆ, କାହିଁକି ଦାରୁ ପୂଜା, ଦାରୁ ବ୍ରହ୍ମ ବାରମାସରେ ବିଭିନ୍ନ ପୂଜା ଉତ୍ସବ ଓ ବଡ଼ ଦେଉଳ ବଡ଼ ଦାଣ୍ଡ, ମହୋଦଧି, ଶରଧା ବାଲିର ମହିମା ଭାବିଲେ ମନରେ ଅସୀମ ଚିନ୍ତା ତଥା ଦର୍ଶନ ଭରି ଯାଉଛି । କିନ୍ତୁ ଶେଷଯାଏ ସମାଧାନର ସୂତ୍ର ମିଳୁନାହିଁ । ଗୋଟିଏ ରୂପରେ ସର୍ବରୂପର ଆତ୍ମ ପ୍ରକାଶ ହିଁ ଜଗନ୍ନାଥଙ୍କ ବିଶ୍ୱରୂପ ଅଟେ । ସର୍ବତ୍ର ନିଜକୁ ଦେଖିବା, ନିଜ ଭିତରେ ସମସ୍ତଙ୍କୁ ସ୍ଥାନ ଦେବା ଦ୍ୱାରା ଜାତି ଭେଦ, ବର୍ଣ୍ଣ ବିଦ୍ୱେଷ, ସାମ୍ପ୍ରଦାୟିକତା ବଦଳରେ ମିତ୍ରତା ଦୃଢ଼ୀଭୂତ ହେବା ହିଁ ଜଗନ୍ନାଥ ସଂସ୍କୃତିର ଆଦର୍ଶ । ବସୁଧୈବ କୁଟୁମ୍ବକମ ନୀତିରେ ଏ ଧରଣୀର ସକଳ ମାନବ ଏକ କୁଟୁମ୍ବରେ ବାନ୍ଧିହୋଇ ରହିଅଛନ୍ତି । ତେଣୁ ସେମାନଙ୍କ ଭିତରେ ଥିବା ସଂକୀର୍ଣ୍ଣ ମନୋଭାବ ଦୂର କରି ଜାତି, ଧର୍ମ, ବର୍ଣ୍ଣ, ସମ୍ପ୍ରଦାୟ ନିର୍ବିଶେଷରେ ସମସ୍ତଙ୍କୁ ସମ ଦୃଷ୍ଟିରେ ଦେଖିବା ପାଇଁ ଜଗନ୍ନାଥ ଯୁଗେ ଯୁଗେ ମାନବ ଜାତିକୁ ପ୍ରେରଣା ପ୍ରଦାନ କରିଆସୁଛନ୍ତି ।

ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଭିନ୍ନ ଭିନ୍ନ ରଙ୍ଗରେ ରଙ୍ଗିତ ହୋଇ ସାରା ପୃଥିବୀରେ ବାସ କରୁଥିବା ତିନି ରଙ୍ଗର ଲୋକଙ୍କର ପ୍ରତିନିଧିତ୍ୱ କରୁଅଛନ୍ତି । ଭାରତ, ଆଫ୍ରିକା ସହିତ ବିଭିନ୍ନ ଦେଶରେ ବସବାସ କରୁଥିବା କଳା ରଙ୍ଗର ଲୋକଙ୍କର ଜଗନ୍ନାଥ ପ୍ରତିନିଧିତ୍ୱ କରୁଛନ୍ତି । ଚୀନ୍, ଜାପାନ, ଥାଇଲାଣ୍ଡ ଏବଂ ଅନ୍ୟାନ୍ୟ ଦେଶରେ ବସବାସ କରୁଥିବା ହଳଦିଆ ରଙ୍ଗର ଲୋକଙ୍କୁ ସୁଭଦ୍ରା ପ୍ରତିନିଧିତ୍ୱ କରୁଛନ୍ତି । ଇଂଲଣ୍ଡ, ଆମେରିକା, ଫ୍ରାନ୍ସ, ଜର୍ମାନ ଆଦି ଦେଶରେ ବସବାସ କରୁଥିବା ଧଳା ରଙ୍ଗର ଲୋକଙ୍କର ପ୍ରତିନିଧିତ୍ୱ ବଳଭଦ୍ର

କରୁଅଛନ୍ତି । ଏହା ସାମ୍ୟବାଦର ଏକ ବଳିଷ୍ଠ ଉଦାହରଣ ।

ଦିନ ଥିଲା ଜଣେ ଦଳିତ ଲୋକର ଛାଇ ପଡ଼ିଲେ ଅନ୍ୟ ଜଣେ ଉଚ୍ଚ ଜାତିର ଲୋକ ଅପବିତ୍ର ହୋଇଯାଉଥିଲେ । ଜଣେ ନିଚ୍ଚ ଜାତିର ଲୋକ କୌଣସି ଜାଗାରେ ଠିଆ ହୋଇଥିଲେ ସେ ଜାଗା ଅପିବତ୍ର ହେଲା ବୋଲି ଧରି ନେଉଥିଲେ ଓ ସେ ଯାଗାକୁ ଗୋବର ପାଣିରେ ଧୋଇଲେ ତାହା ପବିତ୍ର ହେବ ବୋଲି ଧାରଣା ଥିଲା । ମାତ୍ର ଆଜି ସମୟର ପରିବର୍ତ୍ତନ ସହିତ ତାଳ ମିଳାଇ ଜଣେ ଉଚ୍ଚ ଜାତିର ଲୋକ କୌଣସି ଚିକିତ୍ସାଳୟରେ ଚିକିତ୍ସାଧିନ ହୋଇ ଆବଶ୍ୟକତା ବୋଧରେ ଜଣେ ନିଚ୍ଚ ଜାତିର ବ୍ୟକ୍ତି ଠାରୁ ରକ୍ତ ଗ୍ରହଣ କରିବାକୁ କୁଣ୍ଠାବୋଧ କରୁନାହିଁ । ଏବେ ନିଚ୍ଚ ଜାତିର ପରିବାରରେ ମଧ୍ଯ ଉଚ୍ଚ ଜାତିର ଲୋକେ ବୈବାହିକ ସମ୍ବନ୍ଧ ରଖିଲେଣି । ଜଗନ୍ନାଥଙ୍କର ସଂସ୍କାରଶୀଳ ଚେତନା ସମାଜରେ ଏତାଦୃଶ ସାମ୍ୟବାଦର ପ୍ରତିଷ୍ଠା କରିପାରିଛି ।

ଶ୍ରୀକ୍ଷେତ୍ରରେ ଉପାସନାର ସ୍ୱାଧୀନତା, ସାର୍ବଜନୀନ ଭାତୃଭାବରେ ଉଦାରତା ଯେପରି ଉପଲବ୍ଧ, ଜାତି ଧର୍ମ, ବର୍ଣ୍ଣ ନିର୍ବିଶେଷରେ ମୈତ୍ରୀ ଚେତନାର ପରାକାଷ୍ଠା ସେହିପରି ପ୍ରଦର୍ଶିତ ହୋଇଛି ।

ସେଥିପାଇଁ ଉତ୍କଳମଣି ଗୋପବନ୍ଧୁ ସଂସ୍କୃତିର ଯଥାର୍ଥ ମୂଲ୍ୟାଙ୍କନ କରି କହିଛନ୍ତି-

ସାମ୍ୟ ସ୍ୱାଧୀନତା ପ୍ରେମ ପରିଚୟ  
ନୀଳାଚଳ ଶୁଦ୍ଧ ଭାରତ ହୃଦୟ  
ଛାଡ଼ ଭେଦ ଭାବ ବାଦ ଅହଂକାର  
ହେଉ ନୀଳାଚଳୁ ସମତା ପ୍ରଚାର ।

*ପ୍ଲଟ୍ ନଂ-୧୩୪୧, ସେକ୍ଟର-୬, ସିଡିଏ*  
*ପୋ: ମର୍କତ ନଗର, କଟକ-୭୫୩୦୧୪*

# ପରିବେଶ ପ୍ରଦୂଷଣ-ଏକ ବିଶ୍ୱ ସମସ୍ୟା

ଡକ୍ଟର ମାନସ ରଞ୍ଜନ ସେନାପତି (୫୯୮)

୧୮୫୦ ମସିହା ପୂର୍ବରୁ ବାୟୁମଣ୍ଡଳରେ ସ୍ୱଳ୍ପ ମାତ୍ରାରେ ଅଙ୍ଗାରକାମ୍ଳ ବାଷ୍ପ ଥିଲା । ଏହାପରେ ଆରମ୍ଭ ହୋଇଥିଲା ଶିଳ୍ପ ବିପ୍ଳବ । ୧୯୬୦ ଦଶକରେ ଯୁକ୍ତରାଷ୍ଟ୍ର ଆମେରିକାରେ ଆରମ୍ଭ ହୋଇଥିଲା ବ୍ୟାପକ ଶିଳ୍ପାୟନ । ଶିଳ୍ପର ଦ୍ରୁତ ପ୍ରଗତି ପରିବେଶକୁ ଦୂଷିତ କରିଚାଲିଛି । ଏକ ଆକଳନରୁ ଜଣାଯାଏ ଯେ ଯଦି ଆଜିର ଦିନରେ ସମସ୍ତ ଶିଳ୍ପ କାରଖାନା ବନ୍ଦ କରିଦିଆଯାଏ ତେବେ ପରିବେଶର ପୂର୍ବାବସ୍ଥା ଫେରିପାଇବା ପାଇଁ ପ୍ରାୟ ୧୦୦୦ ବର୍ଷ ଅପେକ୍ଷା କରିବାକୁ ପଡ଼ିବ । ଜଳ, ସ୍ଥଳ, ବନ, ଗିରି ଓ ଆକାଶକୁ ନେଇ ଆମ ପରିବେଶ ଓ ଆମ ଧରିତ୍ରୀ । ଏ ସମସ୍ତ ପ୍ରଦୂଷଣ ବଳୟରେ ଆକ୍ରାନ୍ତ । ବର୍ତ୍ତମାନ ମହାକାଶ ମଧ ଆଉ ପ୍ରଦୂଷଣମୁକ୍ତ ହୋଇ ରହିନାହିଁ । ବିଗତ ୧୫ ବର୍ଷ ମଧ୍ୟରେ ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ପରିମାଣ ଯଥେଷ୍ଟ ବଢ଼ିଛି । ଏହା ଫଳରେ ଜାଗତିକ ଉଷ୍ଣତା ଏବଂ ଜଳବାୟୁ ପରିବର୍ତ୍ତନ ସମଗ୍ର ବିଶ୍ୱବାସୀଙ୍କୁ ଆତଙ୍କିତ କରିଛି । ଛଅଟି ଋତୁ ମଧ୍ୟରୁ କେତେକ ଋତୁ ଆଉ ଅନୁଭୂତ ହେଉନାହିଁ । ମାଘମାସର ବାଘ ଭଳି ଶୀତ ବଦଳରେ ଟାଣ ଖରା ଆମେ ଦେଖୁଛେ । କୁଆ, କୋଇଲି ଓ ଘରଚଟିଆ ଆଦି ପକ୍ଷୀ ଆଉ ଦେଖିବାକୁ ମିଳୁନାହାନ୍ତି । ୧୯୯୦ରୁ ୧୯୯୯ ମସିହା ମଧ୍ୟରେ ଅଙ୍ଗାରକାମ୍ଳ ନିଃସରଣ ମାତ୍ରା ମାତ୍ର ଶତକଡ଼ା ୦.୮ ବଢ଼ିଥିଲା । କିନ୍ତୁ ୨୦୦୦ରୁ ୨୦୧୦ ମସିହା ମଧ୍ୟରେ ପରିମାଣ ଶତକଡ଼ା ୫.୩ ବୃଦ୍ଧି ପାଇଛି । ସମଗ୍ର ପୃଥିବୀରେ ପ୍ରତିବର୍ଷ ୧୨୦ ଲକ୍ଷ ହେକ୍ଟର ଜଙ୍ଗଲ କ୍ଷୟ ହେଉଛି । ଏହି ଜଙ୍ଗଲ କ୍ଷୟ ଯୋଗୁଁ ବାୟୁମଣ୍ଡଳରେ ବାର୍ଷିକ ୧୦୦ କୋଟିରୁ ୨୬୦ କୋଟି ଟନ୍ କାର୍ବନ ବା ଅଙ୍ଗାରକ ବାୟୁମଣ୍ଡଳରେ ପ୍ରବେଶ କରୁଛି । ଆମ ବାୟୁମଣ୍ଡଳରେ ୩୫୦ ପି.ପି.ଏମ୍ ଅଙ୍ଗାରକାମ୍ଳ ବାଷ୍ପ ନିରାପଦ ସୀମା ହୋଇଥିବା ବେଳେ ବର୍ତ୍ତମାନ ଏହା ୪୦୦ ପି.ପି.ଏମ୍ ଟପିଲାଣି । ୧୯୫୨ ମସିହାରେ ଲଣ୍ଡନ ସ୍ମଗ୍ ଘଟଣାରେ ପ୍ରାୟ ୪୦୦୦ ଲୋକ ମୃତ୍ୟୁବରଣ କରିଥିଲେ । ଏହାପରେ ୧୯୫୬ ମସିହାରେ ସ୍ୱଚ୍ଛ ବାୟୁ ନିୟମ ବା କ୍ଲିନ୍ ଏୟାର ଆକ୍ଟ କାର୍ଯ୍ୟକାରୀ ହେଲା ।

ଶୁକ୍ର ଗ୍ରହରେ ତାପମାତ୍ରା ୪୬୦୦ ସେଲ୍‌ସିୟସ୍ ରହୁଥିବାବେଳେ ମଙ୍ଗଳ ଗ୍ରହର ତାପମାତ୍ରା ୧୪୦୦ ସେଲ୍‌ସିୟସ୍‌ରୁ କମ୍ ରହିଥାଏ । ସୂର୍ଯ୍ୟଠାରୁ ଗ୍ରହମାନଙ୍କର ଦୂରତା ଏକ କାରଣ ହୋଇଥିବାବେଳେ ଅଙ୍ଗାରକାମ୍ଳ ବାଷ୍ପର ମାତ୍ରା ମଧ ଏହି ତାରତମ୍ୟର

ଅନ୍ୟ ଏକ କାରଣ । ଶୁକ୍ର ଗ୍ରହର ବାୟୁମଣ୍ଡଳ ମୁଖ୍ୟତଃ ଅଙ୍ଗାରକାମ୍ଳ ବାଷ୍ପ ଦ୍ୱାରା ଆଚ୍ଛାଦିତ ହୋଇ ରହିଥାଏ ଯାହାକି ଏକ କମ୍ବଳ ସଦୃଶ କାର୍ଯ୍ୟ କରିଥାଏ ଓ ଶୁକ୍ର ପୃଷ୍ଠରୁ ଫେରିଆସୁଥିବା ଉତ୍ତପ୍ତ ବିକିରଣକୁ ଅଟକାଇ ଦେଇଥାଏ । ଫଳତଃ ଶୁକ୍ର ଗ୍ରହ ଏକ ଉତ୍ତପ୍ତ ପିଣ୍ଡ ସଦୃଶ ମନେହୁଏ । ମଙ୍ଗଳ ଗ୍ରହରେ କିନ୍ତୁ ଏପରି ହୋଇନଥାଏ । କାରଣ ଏହି ଗ୍ରହରେ ଅପେକ୍ଷାକୃତ କମ୍ ଅଙ୍ଗାରକାମ୍ଳ ବାଷ୍ପ ରହିଥାଏ । ପୃଥିବୀ ପୃଷ୍ଠରେ ସଠିକ୍ ପରିମାଣର ଅଙ୍ଗାରକାମ୍ଳ ବାଷ୍ପ ବାୟୁମଣ୍ଡଳରେ ଥିବା ଦ୍ୱାରା ଜୀବଜଗତ ପାଇଁ ସଠିକ୍ ତାପମାତ୍ରା ବଜାୟ ରହିପାରିଛି । ମାତ୍ର ଆଜି ଏଥିରେ ବ୍ୟତିକ୍ରମ ପରିଲକ୍ଷିତ ହୋଇଛି । ଆକଳନରୁ ଏହା ଜଣାଯାଏ ଯେ ୨୧୦୦ ମସିହା ସୁଦ୍ଧା ଅଙ୍ଗାରକାମ୍ଳ ମାତ୍ରା ପୃଥିବୀ ପୃଷ୍ଠରେ କ୍ରମାନ୍ୱୟ ଭାବେ ବୃଦ୍ଧି ପାଇ ଦ୍ୱିଗୁଣିତ ହୋଇପାରେ । ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନର ରିପୋର୍ଟ ଅନୁଯାୟୀ ଚୀନ୍‌ରେ ୬ଲକ୍ଷରୁ ଉର୍ଦ୍ଧ୍ୱ ନାଗରିକ ବାୟୁ ପ୍ରଦୂଷଣ ଯୋଗୁଁ ମୃତ୍ୟୁବରଣ କରୁଥିବାବେଳେ ଦୂଷିତ ଜଳ ପାନ ଦ୍ୱାରା ପ୍ରାୟ ଏକ ଲକ୍ଷ ରୋଗାକ୍ରାନ୍ତ ହେବା ସହିତ ମୃତ୍ୟୁବରଣ କରୁଛନ୍ତି ।

ପରିବର୍ତ୍ତିତ ଜଳବାୟୁ ଯୋଗୁଁ ବିଶ୍ୱରେ ବାର୍ଷିକ ୧,୬୦,୦୦୦ରୁ ଅଧିକ ବ୍ୟକ୍ତି ପ୍ରାଣ ହରାଉଛନ୍ତି ବୋଲି ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ ଆକଳନରୁ ଜଣାପଡିଛି । କିନ୍ତୁ କୌଣସି ରୋଗୀ ପ୍ରଦୂଷଣ ଜନିତ ରୋଗରେ ।କ୍ରାନ୍ତ ହୋଇଥିବା କଥା ଡାକ୍ତରମାନେ କହିନଥାନ୍ତି । ଜଳବାୟୁ ପରିବର୍ତ୍ତନର ସିଧାସଳଖ ପ୍ରଭାବ ଭୂମି ଅବକ୍ଷୟ ଓ ବୃଦ୍ଧି ଉପରେ ପଡୁଛି । ବିଗତ ୧୩ ବର୍ଷ ମଧ୍ୟରେ ଆମ ରାଜ୍ୟର ମୋଟ୍ ଭୂଭାଗର ୭.୭ ପ୍ରତିଶତ ଅଞ୍ଚଳ ଚାଷ କାର୍ଯ୍ୟ ପାଇଁ ଅନୁପଯୋଗୀ ହୋଇପଡିଛି । କୃଷି ଉତ୍ପାଦନ ହ୍ରାସ ପାଇଚାଲିଛି । ବିଶେଷତଃ ଅଙ୍ଗାରକ-୩ ଶ୍ରେଣୀ ଅନ୍ତର୍ଭୁକ୍ତ ଉଦ୍ଭିଦ ଧାନ ଓ ଗହମ ଅମଳ ହ୍ରାସ ପାଇଛି । ପରିସଂଖ୍ୟାନରୁ ଏହା ଜଣାଯାଏ ଯେ ପ୍ରତି ୧.୫ ଡିଗ୍ରୀ ସେଲ୍‌ସିୟସ ତାପମାତ୍ରା ବୃଦ୍ଧି ଓ ୨ ମି.ମି. ବୃଷ୍ଟିପାତ ବୃଦ୍ଧି ଦ୍ୱାରା ପ୍ରାୟ ୩.୧୫ ପ୍ରତିଶତ ଧାନ ଅମଳ ହ୍ରାସ ପାଇବ । ଏହା ନିଶ୍ଚିତ ଭାବେ ଉଦ୍‌ବେଗଜନକ କାରଣ ଧାନ ଆମ ରାଜ୍ୟର ପ୍ରଧାନ କୃଷିଜାତ ଶସ୍ୟ । ଓଡ଼ିଶାରେ ସାଧାରଣତଃ ୧୪୮୨.୨ ମି.ମି. ବର୍ଷା ହୁଏ । ବିଗତ ୨୦ ବର୍ଷରେ ଓ ୧୦ ବର୍ଷରେ ଯଥାକ୍ରମେ ହାରାହାରି ୧୩୯୪.୯ ଓ ୧୩୭୫.୩ ମି.ମି ବର୍ଷା ହୋଇଥିଲା । ଏବେ ଏହାର ହାର କ୍ରମଶଃ ହ୍ରାସ ପାଇବାରେ ଲାଗିଛି । ପରିବର୍ତ୍ତିତ ବର୍ଷା, ବିବର୍ତ୍ତିତ ଋତୁ ଚକ୍ର ଆଦି ମନୁଷ୍ୟ ତଥା ଜୀବଜଗତ ପ୍ରତି ବିଭୀଷିକାମୟ ହୋଇଛି । ସହରାଞ୍ଚଳରେ କଂକ୍ରିଟ୍ ଜଙ୍ଗଲର ଅଭିବୃଦ୍ଧି ସବୁଜ ଧରିତ୍ରୀର ସୌନ୍ଦର୍ଯ୍ୟକୁ ନଷ୍ଟ କରିଚାଲିଛି । ଯାନବାହାନ ସଂଖ୍ୟା

ବୃଦ୍ଧି ପରିବେଶ ପ୍ରଦୁଷଣର ଅନ୍ୟତମ କାରଣ । ଜଣେ ମନୁଷ୍ୟର ବର୍ଷକୁ ଯେତିକି ଅମ୍ଳଜାନ ଆବଶ୍ୟକ ହୋଇଥାଏ, ଗୋଟିଏ ଗାଡ଼ି ୯୬୦ କିଲୋମିଟର ରାସ୍ତା ଅତିକ୍ରମ କଲେ ସେତିକି ଅମ୍ଳଜାନ ଉପଯୋଗ ହୋଇଥାଏ ।

ପରିବେଶ ପ୍ରଦୂଷଣ ନିୟନ୍ତ୍ରଣ ଦିଗରେ ସରକାର ବିଭିନ୍ନ ସମୟରେ କେତେକ ବିଧି ପ୍ରଣୟନ କରିଛନ୍ତି । ସାଧାରଣ ଜନତାଙ୍କ ମଧ୍ୟରେ ପରିବେଶ ସୁରକ୍ଷା ପ୍ରତି ସଚେନତା ବୃଦ୍ଧି କରି ସାମାଜିକ ଚାପ ଦ୍ୱାରା ପ୍ରଦୁଷଣକୁ ନିୟନ୍ତ୍ରଣ କରାଯାଇପାରିବ ।

*ରସାୟନ ବିଜ୍ଞାନ ବିଭାଗ ମୁଖ୍ୟ*
*ଟ୍ରାଇଡେଣ୍ଟ ଏକାଡେମୀ ଅଫ୍ ଟେକ୍‌ନୋଲୋଜି,*
*ଇନ୍‌ଫୋସିଟି, ଭୁବନେଶ୍ୱର, ୭୫୧୦୩୧*

# ବନ୍ଦେ ଉତ୍କଳ ଜନନୀ

ଡକ୍ଟର ଉଦ୍ଧବ ଚରଣ ନାୟକ (୨୯୪)

ଉତ୍କଳ, କଳିଙ୍ଗ, ଉଡ୍ର ଓ କୋଶଳ ଓଡ଼ିଶାର ପୂର୍ବ ନାମ । 'ଉତ୍କଳ' ଭାରତବର୍ଷର ବହୁ ପୁରାତନ ଦେଶ ଭାବରେ ବିବେଚିତ । ରାମାୟଣରେ କଳିଙ୍ଗ ଓ ଉତ୍କଳ ଦେଶର ନାମ ଉଲ୍ଲେଖ ଅଛି । ଆର୍ଯ୍ୟଜାତିର ଆଦ୍ୟଗ୍ରନ୍ଥ ଋକ୍‌ବେଦରେ କଳିଙ୍ଗ ଦେଶର ନାମ ଉଲ୍ଲେଖ ଅଛି । ରାମଚନ୍ଦ୍ର ବନବାସ ସମୟରେ ଉତ୍କଳ ଭୂଖଣ୍ଡ ଦେଇ ଗୋଦାବରୀ ତଟରେ ଥିବା ଦଣ୍ଡକାରଣ୍ୟକୁ ଯାତ୍ରା କରିଥିଲେ । ଏହି ସମୟରେ ସେ ଉତ୍କଳ ଭୂଖଣ୍ଡର ବିଭିନ୍ନ ଦେବଦେବୀଙ୍କର ଦର୍ଶନ କରିବା ସହ ନାନା ଦର୍ଶନୀୟ ସ୍ଥାନ ଭ୍ରମଣ କରିଥିଲେ । ମହାରାଜା ରଘୁ ଦିଗ୍‌ବିଜୟକାଳରେ ଉତ୍କଳ ଓ କଳିଙ୍ଗ ପଥ ଦେଇ ଦାକ୍ଷିଣାତ୍ୟ ଆଡକୁ ଯାତ୍ରା କରିଥିବାର ବିଷୟ କାଳିଦାସଙ୍କ 'ରଘୁବଂଶ'ରେ ଉଲ୍ଲେଖ ଅଛି-

ଉତ୍କଳ ଦର୍ଶିତ ପଥଃ କଳିଙ୍ଗାଭିମୁଖୀ ଯଯୌ।<br>
ଶ୍ରିୟଂ ମହେନ୍ଦ୍ରନାଥସ୍ୟ ବ୍ରହାରନୁତୁ ମେଦିନୀମ୍ । (ରଘୁ. ୪. ୩୮.୪୩)

ଉତ୍କଳଦେଶ ସମ୍ପର୍କରେ ମହାଭାରତରେ ଉଲ୍ଲେଖ ଅଛି-

ଉତ୍କଳା ମେଖଳାଃ ପୌଣ୍ଡାଃ କଳିଙ୍ଗ ଶ୍ୟଶ୍ଚ ସଂଯୁଗେ,<br>
ନିଷାଦାଶ୍ଚ ତ୍ରିଗର୍ତ୍ତାଶ୍ଚ ବାଲହକିଶ୍ଚ ଜିତାସ୍ତ୍ୱୟା (ଦ୍ରୋଣପର୍ବ)

ମହାନ୍ ଉତ୍କଳଦେଶର ଉତ୍ପତ୍ତି ସମ୍ପର୍କରେ ଅନେକ କଥା ଶୁଣାଯାଏ- ଆଦିମାନବ ମନୁଙ୍କ ନାତି ଅର୍ଥାତ୍, ସୁଦ୍ୟୁମ୍ନଙ୍କ ପୁତ୍ର ଉତ୍କଳ ଥିଲେ ଏହି ଭୂଖଣ୍ଡର ରାଜା । ତାଙ୍କରି ନାମ ଅନୁସାରେ ଏହି ଭୂଖଣ୍ଡର ନାମ 'ଉତ୍କଳ' ହୋଇଛି ବୋଲି 'ମତ୍ସ୍ୟପୁରାଣ'ରେ ଉଲ୍ଲେଖ ଅଛି । ପୂର୍ବେ ଅନ୍ୟାନ୍ୟ ଦେଶ ଅପେକ୍ଷା ଉତ୍କଳର କଳାବିଦ୍ୟା ଶୀର୍ଷ ସ୍ଥାନ ଅଧିକାର କରିଥିଲା । ଏହି ଦେଶର କଳାକୌଶଳ ଉତ୍କୃଷ୍ଟ ଥିବାରୁ ଏହି ଦେଶର ନାମ 'ଉତ୍କଳ' ହୋଇଥିବାର ଜଣାଯାଏ । ତ୍ରିବିନ୍ ଠାରୁ ମିଳିଥିବା ମତ୍ସ୍ୟବଂଶୀୟ ରାଜା ଅର୍ଜୁନଙ୍କ ତାମ୍ର ଶାସନରୁ ପ୍ରମାଣ ମିଳେ, ତଦାନୀନ୍ତନ ଉତ୍କଳର ରାଜା ତାଙ୍କର ଏକମାତ୍ର କନ୍ୟା ପଦ୍ମାବତୀକୁ ସତ୍ୟମାର୍ତ୍ତଣ୍ଡକୁ ବିବାହ ଦେଇ, ଜାମାତାଙ୍କୁ ଉଡ୍‌ବାଜି ବା ଉଡ୍ର ଦେଶକୁ ଯୌତୁକ ଆକାରରେ ପ୍ରଦାନ କରିଥିଲେ । କିନ୍ତୁ ଉତ୍କଳର ରାଜା ଅପୁତ୍ରିକ ଥିବାରୁ ସତ୍ୟମାର୍ତ୍ତଣ୍ଡ ସେହି ଉତ୍କଳ ମଣ୍ଡଳକୁ ଶାସନ କରିବାରେ ଲାଗିଲେ । ପରେ ପରେ ସେ 'ଉତ୍କଳ' ଓଉଡ୍ର ବାଜିକୁ ଏକାଠି ମିଶାଇଦେଲେ । ଏହାର ନାମ

ରଖିଲେ 'ଓଡ଼ିଶା' ଉତ୍କଳ କେତେକାଳ କଳିଙ୍ଗ ଅନ୍ତର୍ଗତ ଥିଲା ତ ଆଉ କେତେବେଳେ ପୃଥକ୍ ଥିଲା । ଉତ୍କଳ କଳିଙ୍ଗର ଉତ୍ତରରେ ଅବସ୍ଥିତି ଥିବାରୁ ଏହା 'ଉତ୍କଳିଙ୍ଗ' ନାମରେ ପରିଚିତ ଥିଲା । କାଳକ୍ରମେ ଏହା ଉତ୍କଳିଙ୍ଗରୁ 'ଉତ୍କଳ'ରେ ପରିଣତ ହୋଇଥିବାର ଜଣାଯାଏ ।

ବିଭିନ୍ନ ଶାସ୍ତ୍ର-ପୁରାଣରେ ଉତ୍କଳ ଓ ଉତ୍କଳର ମହନୀୟତା ସମ୍ପର୍କରେ ଉଲ୍ଲେଖ ଅଛି-

ସୁଦ୍ୟୁମ୍ନସ୍ୟ ତୁ ଦାୟାଦା ସ୍ତ୍ରୟଃ ପରମଧାର୍ମିକାଃ
ଉତ୍କଳଶ୍ଚ ଗୟଶ୍ଚୈବ ବିନିତାଶ୍ୱଶ୍ଚ ଭାରତ । ।
ଉତ୍କଳ ସ୍ୟୋତ୍କଳ ରାଜନ ବିନିତାଶ୍ୱଶ୍ଚ ପଶ୍ଚିମା ।
ଦିକ୍‌ପୂର୍ବା ଭାରତଶ୍ରେଷ୍ଠ ଗୟସ୍ୟତୁ ଗୟାପୁରୀ ।        (ହରିବଂଶ)

ବର୍ଷାଣାଂ ଭାରତଃ ଶ୍ରେଷ୍ଠୋ ଦେଶାନାମୁତ୍କଳଃ ଶ୍ରୁତଃ,
ଉତ୍କଳସ୍ୟ ସମୋଦେଶଃ ଦେଶୋନାସ୍ତି ମହୀତଳେ ।  (କପିଳ ସଂହିତା)

ସାରସ୍ୱତାଃ କନ୍ୟାକୁବ୍‌ଜା ଉତ୍କଳାଃ ମୈଥିଳାଶ୍ଚ ଯେ,
ଗୌଡାଶ୍ଚ ପଞ୍ଚଧାଚୈବ ପଞ୍ଚଗୌଡା ପ୍ରକୀର୍ତ୍ତିତାଃ ।    (ସ୍କନ୍ଦପୁରାଣ)

ଜଗନ୍ନାଥପ୍ରାନ୍ତ ଦେଶ ଉତ୍କଳଃ ପରିକୀର୍ତ୍ତିତଃ ।        (ଉତ୍କଳ ମାହାତ୍ମ୍ୟ)

ଭାରତେ ଚୋତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ ଭକ୍ତାନାମଭୟପ୍ରଦଃ ।        (ତନ୍ତ୍ରଯାମଳ)

ଉପରୋକ୍ତ ଶାସ୍ତ୍ରମାନଙ୍କରୁ ସ୍ପଷ୍ଟ ସୂଚନାମିଳେ ଯେ, ଉତ୍କଳ ହେଉଛି ଏକ ମହାନ୍, ପୁରାତନ ଓ ପବିତ୍ର ଦେଶ । ସ୍ୱାଧୀନତା ପୂର୍ବରୁ ତଥା ସ୍ୱାଧୀନତା ପରେ 'ଉତ୍କଳ'କୁ ଜାତୀୟ ଗୁରୁତ୍ୱ ପ୍ରଦାନ କରାଯାଇଛି । ସାମାଜିକ ତଥା ଜାତୀୟ ମୂଲ୍ୟବୋଧରେ, ସାହିତ୍ୟ, ସଂସ୍କୃତି ଓ ରାଜନୀତିକ୍ଷେତ୍ରରେ ଉତ୍କଳକୁ ବିଶେଷ ମାନ୍ୟତା ମିଳିଛି । ଆମ ଦେଶର ଜାତୀୟ ସଙ୍ଗୀତରେ ଭାରତବର୍ଷର ବିଭିନ୍ନ ସ୍ଥାନ ଓ ରାଜ୍ୟର

ନାମ ଉଲ୍ଲେଖ ବେଳେ 'ଉତ୍କଳ'ର ନାମ ସ୍ଥାନ ଯାଇଛି-

"ଜନଗଣମନ ଅଧିନାୟକ ଜୟହେ ଭାରତ ଭାଗ୍ୟ ବିଧାତା
ପଞ୍ଜାବ ସିନ୍ଧୁ, ଗୁଜୁରାତ, ମରାଠା, ଦ୍ରାବିଡ଼ ଉତ୍କଳ ବଙ୍ଗ
ବିନ୍ଧ୍ୟ ହିମାଚଳ ଯମୁନା ଗଙ୍ଗା ଉଚ୍ଛଳ ଜଳଧିତରଙ୍ଗ ।

ଏହି ସଙ୍ଗୀତଟିର ରଚୟିତା ହେଉଛନ୍ତି ରବୀନ୍ଦ୍ରନାଥ ଠାକୁର । ପ୍ରଥମେ ଏହି ଗୀତଟି ତାଙ୍କ ସମ୍ପାଦିତ ବଙ୍ଗଳା ତତ୍ତ୍ୱବୋଧିନୀ ପତ୍ରିକାରେ ୧୯୧୨ ମସିହାରେ ପ୍ରକାଶ ପାଇଥିଲା । ତା'ପୂର୍ବରୁ ଏହି ଗୀତଟି ସର୍ବପ୍ରଥମେ ୧୯୧୧ ମସିହା ୨୭ ଡିସେମ୍ବରରେ କଂଗ୍ରେସ ଅଧିବେଶନର ଦ୍ୱିତୀୟ ଦିବସରେ କବି ନିଜେ ତାଙ୍କର ସୁଲଳିତ କଣ୍ଠରେ ଗାନ କରିଥିଲେ ।

ଏହା ପୂର୍ବରୁ ଉତ୍କଳ ସମ୍ମିଳନୀ ଅଧିବେଶନରେ ଗାନ ହେବା, ନିମନ୍ତେ ରାଧାନାଥ ରାୟ (୧୮୪୮-୧୯୦୮) ରଚନା କରିଥିବା 'ଭାରତ ଗୀତିକା'ରେ ଉତ୍କଳର ମହନୀୟତା ସମ୍ପର୍କରେ ଗାଇଥିଲେ-

ଭାରତ ପଙ୍କଜ ଦଳମିତମୁକ୍ଳ-
ମଣ୍ଡଳମିତି ବିଦିତଂ ଯତ,
ତସ୍ୟୁକୃତେ ବୟମତ୍ର ସମେତା ।

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର (୧୮୮୮-୧୯୫୩) 'ବନ୍ଦେ ଉତ୍କଳ ଜନନୀ' କବିତାରେ ଉତ୍କଳକୁ ଜନନୀର ସ୍ଥାନ ପ୍ରଦାନ କରିଛନ୍ତି । ବର୍ତ୍ତମାନ ଏହି କବିତାଟି 'ଉତ୍କଳ ବନ୍ଦନା' ଉପରେ ଗାନ କରାଯାଉଛି ।-

"ବନ୍ଦେ ଉତ୍କଳ ଜନନୀ
ଚାରୁହାସମୟୀ ଚାରୁଭାଷମୟୀ
ଜନନୀ ଜନନୀ ଜନନୀ" (ଘୋଷା)

ଭକ୍ତକବି ମଧୁସୂଦନ ରାଓ (୧୮୫୩-୧୯୧୨) ଉତ୍କଳୀୟମାନଙ୍କୁ ଜାଗ୍ରତକରି ଗାଇଛନ୍ତି-

ପାହିଲାଣି ଏବେ ନିରାଶା-ଶର୍ବରୀ
ଡାକୁଛନ୍ତି ମାତା କେତେ ଆଶା କରି
ଜାଗହେ ସରବେ ଉତ୍କଳ ସନ୍ତାନେ
ଏକତାର ମନ୍ତ୍ର ଜପି ପ୍ରାଣେ ପ୍ରାଣେ ।

ମଧୁସୂଦନ ଦାସ (୧୮୪୮-୧୯୩୪) ଜାଗ୍ରତ ହେବା ପାଇଁ ଉତ୍କଳୀୟମାନଙ୍କୁ ଆହ୍ୱାନ ଦେଇ ଗାଇଛନ୍ତି-

ଉଠରେ ଉଠାରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେଦିନେ ?
ପୂରୁବ ଗୌରବ ପୂରୁବ ସାହସ
ପଡ଼ିବନି ତୋର ମନେ ?
ତୁପରା ବୋଲଇ ଉତ୍କଳ ସନ୍ତାନ
ତେବେ କି ପାଇଁ ତୁ ଭୀରୁ,
ତୋହରି ଜନନୀ ରୋଦନ କରିଲେ
କହିବାକୁ କିଆଁ ଡରୁ ।

ଗୋପବନ୍ଧୁ ଦାସ (୧୮୭୭-୧୯୨୭) ତରୁଣ ବୟସରେ ଉତ୍କଳୀୟମାନଙ୍କୁ ଜାଗ୍ରତ କରିବା ନିମନ୍ତେ ରଚନା କରିଥିଲେ-

ଉତ୍କଳ ତନୟେ ଦିଅ ନବବଳ,
ଉତ୍କଳ ପାଦପେ ରସମୟ ଫଳ
ଉତ୍କଳ ସରିତେ ପବିତ୍ର ଜୀବନ
ଉତ୍କଳ କାନନେ ସ୍ୱର୍ଗୀୟ ସୁମନ
ଉତ୍କଳ ଆକାଶେ ନବଯଶ ରବି
ଉତ୍କଳ ପ୍ରକୃତି ଧରୁ ନବଛବି ।

ନେତୃତ୍ୱ ଅଭାବରେ ଉତ୍କଳ ଭାଙ୍ଗିପଡ଼ିବ ନାହିଁ ଭାବି ସେ ପୁଣି ଲେଖିଥିଲେ-

ନ ଅଟକେ କର୍ମ ନେତାର ଅଭାବେ
ଧର୍ମ ନାବଚଳେ ଧର୍ମର ପ୍ରଭାବେ,

ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ।

ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଆମ ଓଡ଼ିଆ କବିମାନେ ଉତ୍କଳକୁ ବିଶେଷ ସ୍ଥାନ ପ୍ରଦାନ କରି କବିତାମାନ ରଚନା କରିଛନ୍ତି ।

କବିବର ରାଧାନାଥ ରାୟ ସ୍ୱରଚିତ ଚିଲିକା କାବ୍ୟର ସର୍ବପ୍ରଥମେ ଉଲ୍ଲେଖ କରିଛନ୍ତି-

ଉତ୍କଳ-କମଳା-ବିଳାସ-ଦୀର୍ଘିକା ।
ମରାଳ-ମାଳିନୀ ନୀଳାମ୍ବୁ ଚିଲିକା
ଉତ୍କଳର ତୁହି ଚାରୁ ଅଳଙ୍କାର
ଉତ୍କଳ-ଭୁବନେ ଶୋଭାର ଭଣ୍ଡାର ।

ଏହାବ୍ୟତୀତ କବି ରାଧାନାଥଙ୍କର ଅନ୍ୟ କବିତାମାନଙ୍କରେ ବହୁଳ ଭାବରେ ଉତ୍କଳର ସ୍ଥିତି ଓ ମହନୀୟତା ଉଲ୍ଲେଖ ହୋଇଛି-

ପଙ୍କଜବାସିନୀ ଦେବି, ଉତ୍‌କଳ ଭାରତି !
ସାରଳେ, କି କଲେ, କହ, କରୁଚୂଡ଼ାମଣି (ମହାଯାତ୍ରା)

ଉତ୍କଳର ପୂର୍ବ କୀର୍ତ୍ତି-ସ୍ମୃତି-ପୂତ
ବାରବାଟୀ ଆଜି ସାଜେ ସଜ୍ଜୀଭୂତ
ଜରାଜୀର୍ଣ୍ଣ ବେଶେ ଦେଖଇ ସେ ଆଜ
ନବ୍ୟ ଉତ୍କଳର ଏ ସଭ୍ୟ ସମାଜ । (ଦରବାର)

ଏତେଦିନେ ହେଲା ମୋ ନେତ୍ର ଗୋଚର
ଉତ୍କଳ ମଣ୍ଡଳେ ଶିଖର ଗୋଚର (ମହେନ୍ଦ୍ରଗିରି)

ଓଡ଼ିଶାର ଲୋକକଥା ଗୁଡ଼ିକୁ ଏକତ୍ର କରି ଗୋପାଳଚନ୍ଦ୍ର ପ୍ରହରାଜ (୧୮୭୨-୧୯୪୫) ସଂକଳନ କରି ଯାଇଛନ୍ତି 'ଉତ୍କଳ କାହାଣୀ' ନାମରେ ଏକ ଲୋକପ୍ରିୟ ପୁସ୍ତକ । ଓଡ଼ିଶାର ଗ୍ରାମ୍ୟ ଗୀତ, ଢ଼ଗ, ଢ଼ମାଳୀ, ପ୍ରବଚନ ଓ ପ୍ରହଳିକା ଆଦିକୁ ସଂଗ୍ରହ

କରି ଚକ୍ରଧର ମହାପାତ୍ର ସଂକଳନ କରିଛନ୍ତି 'ଉତ୍କଳ ଗାଉଁଲି ଗୀତ' ଏକ ବିରାଟ ପୁସ୍ତକ । ଏହାବ୍ୟତୀତ ଫକୀରମୋହନଙ୍କ ଉତ୍କଳ ଭ୍ରମଣ, ଗଙ୍ଗାଧର ମେହେରଙ୍କର 'ଉତ୍କଳ ଲକ୍ଷ୍ମୀ' ଓ ମଧୁସୂଦନ ରାଓଙ୍କର 'ଉତ୍କଳଗାଥା' ଆଦି ପୁସ୍ତକ 'ଉତ୍କଳୀୟତା'ର ମହାନ୍ ପରିଚୟ ଦେଇଥାଏ । ଊନବିଂଶ ଶତକ ଓ ବିଂଶ ଶତକରେ ଓଡ଼ିଆ ଭାଷାରେ ପ୍ରକାଶ ପାଇଥିବା ପତ୍ରପତ୍ରିକା ଗୁଡିକର ନାମକରଣରେ ଉତ୍କଳର ନାମ ଗ୍ରହଣ ଆମକୁ ଖାଣ୍ଟି ଉତ୍କଳୀୟ ଭାବରେ ପରିଚୟ କରାଇଦିଏ । ସେ ଗୁଡ଼ିକ ମଧ୍ୟରେ ଉତ୍କଳଦୀପିକା (କଟକ-୧୮୬୬), ଉତ୍କଳ ହିତୈଷିଣୀ (କଟକ-୧୮୬୯), ଉତ୍କଳଦର୍ପଣ (ବାଲେଶ୍ୱର-୧୮୭୩), ଉତ୍କଳ ପୁତ୍ର (କଟକ-୧୮୭୩), ଉତ୍କଳ ମଧୂପ (କଟକ-୧୮୭୮), ଉତ୍କଳପ୍ରଭା (ବାରିପଦା - ୧୮୯୧), ଉତ୍କଳବନ୍ଧୁ (ତାଳଚେର ୧୮୯୭. ଉତ୍କଳ ସାହିତ୍ୟ (କଟକ-୧୮୯୭), ଉତ୍କଳ ଦର୍ପଣ (ସମ୍ବଲପୁର-୧୯୦୫), ଉତ୍କଳ ଜୀବନ (ଗଞ୍ଜାମ-୧୯୦୯), ଷ୍ଟାର ଅଫ୍ ଉତ୍କଳ (କଟକ-୧୯୦୯),. ଉତ୍କଳ ସେବକ (ସମ୍ବଲପୁର-୧୯୧୩), ଉତ୍କଳବାର୍ତ୍ତା (ପୁରୀ-୧୯୩୭), ଓଡ଼ିଶା ସରକାରଙ୍କର ମୁଖପତ୍ର 'ଉତ୍କଳ ପ୍ରସଙ୍ଗ' (ପ୍ରଥମେ କଟକ ଓ ପରେ ଭୁବନେଶ୍ୱର-୧୯୪୩) ।

ଏହାବ୍ୟତୀତ ଆମ ରାଜ୍ୟର ପ୍ରଥମ ସାହିତ୍ୟ ଓ ସଂସ୍କୃତି ଅନୁଷ୍ଠାନକୁ 'ଉତ୍କଳ ସାହିତ୍ୟ ସମାଜ' ନାମରେ ନାମିତ କରାଯାଇଛି । ୧୯୧୨ ମସିହାରେ ଏହି ଅନୁଷ୍ଠାନଟି ବର୍ତ୍ତମାନ ସ୍ଥାନରେ ଅବସ୍ଥିତ ଥିବା କୋଠାରେ ସ୍ଥାୟୀ ଭାବରେ କାର୍ଯ୍ୟ କରିଥିଲା । ଏହି ଅନୁଷ୍ଠାନ ପ୍ରତ୍ୟେକ ବର୍ଷ ତା'ର ବାର୍ଷିକ ଉତ୍ସବରେ 'ଉତ୍କଳ ରତ୍ନ' ନାମରେ ଏକ ମର୍ଯ୍ୟାଦାଜନକ ଉପାଧି ପ୍ରଦାନ କରିଥାଏ । ଦେଶ ସେବା ସମାଜ ସେବା ଓ ସାହିତ୍ୟ ସେବା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ନିମନ୍ତେ ଏ ମାଟିର ଉଜ୍ଜ୍ୱଳ ବ୍ୟକ୍ତିତ୍ୱଙ୍କୁ ଉତ୍କଳମଣି, ଉତ୍କଳ ଗୌରବ, ଉତ୍କଳ କେଶରୀ, ଉତ୍କଳ ଘଣ୍ଟ, ଉତ୍କଳ ଭାରତୀ, ଉତ୍କଳ ରତ୍ନ, ଉତ୍କଳ ବାଚସ୍ପତି, ଉତ୍କଳ ଭୀମ ଓ ଉତ୍କଳ ବ୍ୟାସ ଆଦି ଉପାଧିରେ ଭୂଷିତ କରାଯାଇଛି । ଓଡ଼ିଶାର ସର୍ବପ୍ରଥମ ବିଶ୍ୱ ବିଦ୍ୟାଳୟର ନାମ 'ଉତ୍କଳ ବିଶ୍ୱବିଦ୍ୟାଳୟ' ବୋଲି ରଖାଯାଇଛି । ସବୁଠାରୁ ଉଲ୍ଲେଖନୀୟ ବିଷୟ ହେଲା ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ନିମନ୍ତେ ଯେଉଁ ଅନୁଷ୍ଠାନଟି ଗଠନ କରାଯାଇଥିଲା ତା'ର ନାମ ରହିଥିଲା 'ଉତ୍କଳ ସମ୍ମିଳନୀ' । ଏହି 'ଉତ୍କଳ ସମ୍ମିଳନୀ'ର ନେତୃତ୍ୱରେ ଅଭିଯାନ ଆରମ୍ଭ କରାଯାଇ ଆମେ ଲାଭ କରିଥିଲେ

ଭାରତବର୍ଷରେ ପ୍ରଥମେ ଭାଷା ଭିତ୍ତିକ ପ୍ରଦେଶ "ଓଡ଼ିଶା ପ୍ରଦେଶ" । ଭାରତର ସ୍ୱାଧୀନତା ଆନ୍ଦୋଳନ ସମୟରେ ପ୍ରତିଷ୍ଠିତ କଂଗ୍ରେସ ଅନୁଷ୍ଠାନକୁ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି" ଭାବରେ ନାମିତ କରାଯାଇଥିଲା । ଏକ ସମୟରେ 'ଉତ୍କଳ କଂଗ୍ରେସ' ନାମରେ ଏକ ରାଜନୈତିକ ଦଳ ଓଡ଼ିଶାରେ ମୁଣ୍ଡଟେକିଥିଲା । କ୍ଷମତାକୁ ମଧ୍ୟ ଆସିଥିଲା ।

ଏସବୁ ବ୍ୟତୀତ ବହୁ ସରକାରୀ ଓ ଘରୋଇ ଅନୁଷ୍ଠାନ ଉତ୍କଳ ନାମ ଥାଇ ପ୍ରତିଷ୍ଠା କରାଯାଇଛି । ସେଗୁଡ଼ିକ ମଧ୍ୟରେ ଉତ୍କଳ ଆୟୁର୍ବେଦିକ ସମବାୟ ଫାର୍ମାସୀ, ଉତ୍କଳ କେମିକାଲ୍ସ, ଉତ୍କଳ ଅଟୋମୋବାଇଲ୍ସ, ଉତ୍କଳିକା ଇତ୍ୟାଦି । ବିହାର-ଓଡ଼ିଶା ପ୍ରଦେଶର ରାଜଧାନୀ ଠାରେ କାର୍ଯ୍ୟରତ ଥିବା କେତେକ ଓଡ଼ିଆ କର୍ମଚାରୀଙ୍କ ଉଦ୍ୟମରେ ପ୍ରତିଷ୍ଠା କରାଯାଇଥିଲା- 'ଉତ୍କଳ କୋପରେଟିଭ୍ ବ୍ୟାକିଂ ସୋସାଇଟି' ନାମରେ ଏକ ସମବାୟ ବ୍ୟାଙ୍କିଙ୍ଗ ଅନୁଷ୍ଠାନ । ଏବେ ଏହା ଭୁବନେଶ୍ୱର ଠାରେ ସୁଚାରୁ ରୂପେ କାର୍ଯ୍ୟ କରୁଛି । ଓଡ଼ିଶାରୁ ଦିଲ୍ଲୀକୁ ପ୍ରଥମ ଏକ୍ସପ୍ରେସ୍ ଟ୍ରେନ୍‌ଟିର ନାମ ଥିଲା 'ଉତ୍କଳ ଏକ୍ସପ୍ରେସ' । ବର୍ତ୍ତମାନ ଏହା ଉତ୍କଳ-କଳିଙ୍ଗ ଏକ୍ସପ୍ରେସ୍ ନାମରେ ନାମିତ । ରାଉରକେଲାର ପ୍ରଗତି-ଉତ୍କଳ ସଂଘ ଓ କଟକର 'ଉତ୍କଳପାଠକ ସଂସଦ ଓଡ଼ିଶାର ଦୁଟି ପ୍ରମୁଖ ସାହିତ୍ୟ-ସଂସ୍କୃତି ଅନୁଷ୍ଠନ ଭାବରେ ବିବେଚିତ । ଓଡ଼ିଆ ମାନଙ୍କର ଉତ୍କଳ ଶବ୍ଦଟି ଅତି ପ୍ରିୟ । ଏଣୁ ଆମେ ଆମର ପୂର୍ବ ପରିଚିତ ରାଜ୍ୟର ନାମ 'ଉତ୍କଳ'କୁ ଗ୍ରହଣ କରି ନେଲେ କିପରି ହୁଅନ୍ତା ?

'ବନ୍ଦେ ଉତ୍କଳ ଜନନୀ'...

*ସାଇଦିଗ୍‌ବଳୟ, ଇ-୧୯୨*
*ବରମୁଣ୍ଡା ହାଉସିଂବୋର୍ଡ କଲୋନି*
*ଭୁବନେଶ୍ୱର-୭୫୧୦୦୩,*
*ମୋ-୯୪୩୮୨୯୯୧୭୪*

※

# ନିଶା, ଆଳସ୍ୟ, ଜଡ଼ତା ଓ ଭାଷା

ନିର୍ମଳ କୁମାର ବେହେରା (୩୭୧)

ପୁରୀ ଜିଲ୍ଲା ଡେଲାଙ୍ଗ ନିକଟ ବେରବୋଇଠାରେ ୧୯୩୮ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ୭ଦିନିଆ ଶିବିରର ଉଦ୍‌ଯାପନ ଉତ୍ସବରେ ଭାଷଣ ଦେଲାବେଳେ ମହାତ୍ମା ଗାନ୍ଧୀ କହିଥିଲେ "ଓଡ଼ିଶାରେ ପାଣି, ପବନ, ମାଟି, ସବୁଜ କ୍ଷେତ୍ର, ଖଣିଜ ଦ୍ରବ୍ୟ, ସବୁକିଛି ଅଛି- ହେଲେ ତିନୋଟି ଜିନିଷ ଓଡ଼ିଶାକୁ ପଛୁଆ କରି ରଖିଛି । ସେ ସବୁ ହେଲା "ନିଶା, ଆଳସ୍ୟ ଓ ଜଡ଼ତା" । ଏହି ଉକ୍ତିର ୭୯ ବର୍ଷ ପରେ ଗତ ଜୁନ୍ ମାସ ୨ ତାରିଖରେ ବୁଦ୍ଧମନ୍ଦିରରେ ନିଶାନିବାରଣ ପାଇଁ ଏକତ୍ରିତ ହୋଇଥିବା ଏକ ସମାବେଶରେ ଓଡ଼ିଶାର ବିଶିଷ୍ଟ କୃଷି ଅର୍ଥନୀତି ବିଶେଷଜ୍ଞ ନଟବର ଖୁଣ୍ଟିଆ ଓଡ଼ିଶାର ବର୍ତ୍ତମାନ ସମସ୍ୟା ସମ୍ବନ୍ଧରେ ନିଜ ବକ୍ତବ୍ୟ ରଖିବା ବେଳେ କହିଲେ "ଆଜି ଓଡ଼ିଶାର ତିନୋଟି ବଡ଼ ସମସ୍ୟା ରହିଛି ଓ ସେ ଗୁଡ଼ିକ ହେଲା "ଭାଷା, ନିଶା, ଚଷା" । ଏହି ଦୁଇଟି ଉକ୍ତି ମଧ୍ୟରେ ନିଶା, ଆଳସ୍ୟ ଯାହା ଚାଷ ଓ ବ୍ୟବସାୟ ସହିତ ସମ୍ବନ୍ଧିତ, ଜଡ଼ତା ଯାହା ଆମର ଜାତୀୟ ଚରିତ୍ର ମାପକାଠି ଓ ଭାଷା ଯାହାକି ଆଜି ସରକାରୀ ସ୍ତରରେ ସ୍ୱୀକୃତି ପାଇନାହିଁ । ଏହି ଚାରୋଟି ବିଷୟରେ ଆଲୋଚନା କରି ଏ ସବୁ ଓଡ଼ିଶାର ନବନିର୍ମାଣରେ କେତେଦୂର ପ୍ରାସଙ୍ଗିକ, ସେହି ବିଷୟ ଉପରେ ଆଲୋକପାତ କରିବା ।

ସ୍ୱାଧୀନତା ପୂର୍ବରୁ ଓଡ଼ିଶାର ଲୋକମାନେ ବହୁଳ ଭାବରେ ଗୁଡ଼ାଖୁ, ଦୋକ୍ତା, ବିଡ଼ି ଓ କଡ଼ା ଗୁଣ୍ଡିର ବ୍ୟବହାର କରୁଥିଲେ । କିଛି ଲୋକ ଅଫିମ, ଗଞ୍ଜା, ଭାଙ୍ଗ ଆଦି ମଧ୍ୟ ସେବନ କରୁଥିଲେ । ଗାଁ ଗହଳ ତଥା ସହରରେ ଜନସାଧାରଣଙ୍କ ଉପରେ ନିଶାଦ୍ରବ୍ୟ ଓ ମାଦକ ଦ୍ରବ୍ୟମାନଙ୍କର ପ୍ରଭାବ ଥିଲା । ଯୁବକମାନେ କିଛି ମାତ୍ରାରେ ବିଡ଼ି ଓ ସିଗାରେଟ୍ ସେବନ କରୁଥିଲେ । ମଦ, ହିରୋଇନ୍, ଚରସ ଇତ୍ୟାଦିର ପ୍ରଭାବ ଜନସାଧାରଣଙ୍କ ଉପରେ ନଥିଲା । କେବଳ ସମ୍ଭ୍ରାନ୍ତ ପରିବାରର ଲୋକଙ୍କ ମଧ୍ୟରେ ଏସବୁ ସୀମିତ ଥିଲା । ଆଜି ୨୦୧୭ ମସିହାରେ ଓଡ଼ିଶାର ପୁରପଲ୍ଲୀ ତଥା ସହର ସବୁଠି ମଦର ଅତ୍ୟଧିକ ପ୍ରଭାବ ଦେଖାଦେଇଛି । ଏହା ସହିତ ସିଗାରେଟ୍ ଓ ଗୁଟ୍‌କାର ବହୁଳ ବ୍ୟବହାର ମଧ୍ୟ ହେଉଛି । ନିଶା ନିବାରଣ ଆନ୍ଦୋଳନର ମୁଖ୍ୟ ପୁରୋଧା ଓ ବର୍ଷୀୟାନ ସମାଜସେବୀ ପଦ୍ମଚରଣ ନାୟକଙ୍କ ଅନୁସାରେ ୨୦୦୪-୨୦୦୫ରେ ମଦ ଓ ଅନ୍ୟ ମାଦକ ଦ୍ରବ୍ୟରୁ ଓଡ଼ିଶା ସରକାରଙ୍କର ଆୟ ୩୮୧ କୋଟି ଟଙ୍କାରୁ ବଢ଼ି ୨୦୧୫-୧୬ ମସିହାରେ ୨୫୦୦ କୋଟି ଟଙ୍କା ହୋଇଛି ଓ ଚଳିତ ବର୍ଷ ସରକାର ୩୩୦୦ କୋଟି ଟଙ୍କାର

ଆୟ ଏହି କ୍ଷେତ୍ରରୁ ପାଇବାର ଆଶା ରଖିଛନ୍ତି । ଅନ୍ୟପକ୍ଷରେ ମାଦକ ଦ୍ରବ୍ୟର ସେବନରୁ ଆମ ରାଜ୍ୟରେ ହେଉଥିବା କ୍ଷୟକ୍ଷତିର ଯଦି ହିସାବ ନିଆ ଯାଆନ୍ତା ତାହାହେଲେ ଏହାର ପରିମାଣ ୨ଲକ୍ଷ କୋଟି ଟଙ୍କାରୁ ଅଧିକ ହେବ । ସେଥିରେ ଆଶ୍ଚର୍ଯ୍ୟ ହେବାର ନାହିଁ । କ୍ୟାନ୍ସର, ହୃଦରୋଗ ଇତ୍ୟାଦି ଭୟାନକ ରୋଗର ମୁଖ୍ୟ କାରଣ ନିଶା ସେବନ । ଏଥିପାଇଁ କେନ୍ଦ୍ରସରକାର ଓ ରାଜ୍ୟ ସରକାରମାନେ ଆଇନମାନ ପ୍ରଣୟନ କରିଛନ୍ତି । ବିହାର, ଗୁଜରାଟ, କେରଳ ଜାମ୍ମୁ କାଶ୍ମୀର, ଆନ୍ଧ୍ରପ୍ରଦେଶ ଓ ତାମିଲନାଡୁରେ ମଦ ନିଷେଧ ହୋଇଛି । ୧୯୫୬ ମସିହାରେ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀଙ୍କ ସରକାର ଦ୍ୱାରା ଆଗତ ନିଶା ନିବାରଣ ଆଇନ ଆଜିଯାଏ ଓଡ଼ିଶାରେ କାର୍ଯ୍ୟକାରୀ ହୋଇନାହିଁ । ମଦ ଦୋକାନ ଓ ମଦଭାଟିର ସଂଖ୍ୟା ଦିନକୁ ଦିନ ବଢ଼ିଚାଲିଛି । ଠିପି ଖୋଲା ଦେଶୀ ମଦ ଦୋକାନ, ବିଦେଶୀ ମଦ ଦୋକାନ ସହିତ ହୋଟେଲ ଓ ରେଷ୍ଟୁରାଣ୍ଟ ତଥା ଗାଁ ଗହଳର ମନୋହରି ଓ ଡାଲି ଚାଉଳ ଦୋକାନରେ ମଧ ମଦ ବିକ୍ରି ହେଉଛି । ଆଜିର ଯୁବ ସମାଜ ମଦ ସହିତ ଗୁଟୁକା ଓ ସିଗାରେଟ୍ ପାନ କରି ଅସମୟରେ ମୃତ୍ୟୁ ମୁଖରେ ପଡ଼ିବା ସହିତ ଅନୈତିକ କାମରେ ଲିପ୍ତ ରହୁଛନ୍ତି । ଓଡ଼ିଶାର କେତେକ ଅଞ୍ଚଳରେ ମଦ ବିରୁଦ୍ଧରେ ଆନ୍ଦୋଳନର ପଦଧ୍ୱନି ଶୁଣାଯାଉଛି । ଏବେ ମହିଳାମାନେ ଏ ଦିଗରେ ସକ୍ରିୟ ଭୂମିକା ନେଲେଣି । ଏ ସବୁର କୁପ୍ରଭାବ କାରଣରୁ ମହିଳାମାନଙ୍କ ଜୀବନ ଦୁର୍ବିସହ ହେଲାଣି ।

ଦ୍ୱିତୀୟ ପର୍ଯ୍ୟାୟର ଆଲୋଚ୍ୟ ବିଷୟ, ଆଳସ୍ୟ । ଏହାର ପ୍ରଭାବ ମୁଖ୍ୟତଃ ଚାଷୀ ଓ ରୋଜଗାର ଉପରେ ପଡ଼ିଥାଏ । ଆଳସ୍ୟପରାୟଣତା ଓଡ଼ିଆ ଜାତିର ସବୁଠାରୁ ବଡ଼ ଦୁର୍ବଳତା । ଉର୍ବର ଭୂମି, ଖଣିଜ ସମ୍ପଦ ଭରା ପାହାଡ଼ ପର୍ବତ, ଚିରସ୍ରୋତା ନଦୀମାନଙ୍କର ଓଡ଼ିଶାରେ କୌଣସି ଅଭାବ ନାହିଁ । ମାତ୍ର ମାନବ ସମ୍ବଳର ଦୁରୁପଯୋଗ ଓଡ଼ିଶାକୁ ଅନ୍ୟ ରାଜ୍ୟ ତୁଳନାରେ ପଛରେ ପକାଇଦେଇଛି । କଳା, ବାଣିଜ୍ୟ, ଧର୍ମ ସଭ୍ୟତା, ସଂସ୍କୃତି ଓ କ୍ରୀଡ଼ା ଦୃଷ୍ଟିରୁ ବିଚାର କଲେ ଓଡ଼ିଶା ଏକ ଉତ୍କୃଷ୍ଟ ରାଜ୍ୟ ରୂପେ ସମଗ୍ର ଭାରତରେ ଉଚ୍ଚସ୍ଥାନ ଅଧିକାର କରିବା କଥା । ସଜପଖାଳ ଖାଇ ଦିନରେ ନିଦ୍ରା ଯିବା ଓ ଅପରାହ୍ନରୁ ରାତି ପର୍ଯ୍ୟନ୍ତ ତାସ, ପଶା ଖେଳ ଗୁଲିଗପରେ ସମୟ ଅତିବାହିତ କରିବା ଓଡ଼ିଶାରେ ଏକ ସାଧାରଣ କଥା ହୋଇଗଲାଣି । ଓଡ଼ିଶା ପରି କୃଷି ପ୍ରଧାନ ରାଜ୍ୟରେ ଜୁଲାଇ ମାସରୁ ଡିସେମ୍ବର ମାସଯାଏ ଧାନ ଫସଲର କାମ କରି ସାରିଲାପରେ ୭୦ରୁ ୮୦ ଭାଗ ଚାଷୀ ଅନ୍ୟ ଫସଲ ନ କରି ଘରେ ବସି ରହନ୍ତି । ଏହି ସମୟ ମଧରେ ପଞ୍ଜାବ, ହରିୟାଣା, ଉତ୍ତର ପ୍ରଦେଶ, ମହାରାଷ୍ଟ୍ର ଗୁଜରାଟ, କର୍ଣ୍ଣାଟକର କୃଷକ ୩ଟି ଫସଲ ଯଥା ଧାନ, ଗହମ ଓ ରବିଫସଲ ଅମଳ କରିଥାଏ । ଆମର ପଡ଼ୋଶୀ ରାଜ୍ୟ ଆନ୍ଧ୍ରପ୍ରଦେଶର କୃଷକ ଧାନ ସହିତ ମାଛ, ଅଣ୍ଡା, ପନିପରିବା, ଫୁଲ, ଫଳ, ଆମ୍ବ ଇତ୍ୟାଦି ଉତ୍ପାଦନ କରି

ବଳକା ଫସଲ ଭାରତର ଅନ୍ୟ ରାଜ୍ୟକୁ ଯୋଗାଉଛନ୍ତି । ଜାପାନ ଓ ଚୀନ ଭଳି ଏସୀୟ ରାଜ୍ୟର ଲୋକ ପରିଶ୍ରମ ବଳରେ ତାଙ୍କ ଦେଶକୁ ସାରା ପୃଥିବୀରେ ଉଚ୍ଚ କରି ତୋଳିଛନ୍ତି । ଦୁଗ୍ଧ ଉପାଦନରେ ଓଡ଼ିଶା ସମଗ୍ର ଭାରତରେ ପଛରେ ରହିବାର ପ୍ରଧାନ କାରଣ ଏ ପର୍ଯ୍ୟନ୍ତ ଗ୍ରାମାଞ୍ଚଳରେ ଆଇମା ଅମଳର ଦେଶୀ ଗାଈ ଓ ମଇଁଷି ପାଳନ କରାହେଉଛି । ବ୍ୟବସାୟିକ ଭିତ୍ତିରେ ଉନ୍ନତ କିସମର ଯଥା ବା ଜାତୀୟା ଭଲ କ୍ଷୀର ଦେଉଥିବା ଗାଈ ପାଳିବାର ଆବଶ୍ୟକତା ଆଜି ମଧ୍ୟ ସାଧାରଣ କୃଷକ ଅନୁଭବ କରିନାହିଁ । ଓଡ଼ିଶାରେ ସମୟ ସମୟରେ ଆଳୁ, ପିଆଜ, ଡାଲି ଇତ୍ୟାଦିର ଅଭାବ ହୋଇଯାଏ । ଆମ ରାଜ୍ୟର ୧୫୦ଟି ଶୀତଳ ଭଣ୍ଡାରରୁ ୩୦ଟି ମଧ୍ୟ କାର୍ଯ୍ୟକ୍ଷମ ନୁହେଁ; ଯେତେବେଳେ ଉତ୍ତର ପ୍ରଦେଶର ଆଗ୍ରା ଜିଲ୍ଲାରେ ୪୫୦ଟି ଶୀତଳ ଭଣ୍ଡାର କାର୍ଯ୍ୟ କରୁଅଛି । ଅନ୍ୟ ରାଜ୍ୟ ତୁଳନାରେ ଓଡ଼ିଶାରେ ଯୁବ ସମାଜ ଶିଳ୍ପ ଓ ବାଣିଜ୍ୟ ପ୍ରତି ଆଗ୍ରହ ନ ଦେଖାଇ ଛୋଟମୋଟ ସରକାରୀ ଚାକିରି ପାଇଁ ଲାଳାୟିତ । ସେମାନେ ମଦ୍ୟପାନ, ଫେସନ, ସିନେମା, ଟିଭି, ଯାତ୍ରା, ମେଲୋଡ଼ି ଇତ୍ୟାଦି ଆମୋଦ ପ୍ରମୋଦ ଯୁକ୍ତ ବ୍ୟାପାରରେ ସମୟ ବିତାଇଥାଆନ୍ତି । ଆଳସ୍ୟ ସହିତ ପରଶ୍ରୀକାତରତା ଓଡ଼ିଆ ମାନସିକତାର ଏକ ନାସ୍ତିବାଚକ ଦିଗ ବୋଲି ସାଧାରଣରେ ଆଲୋଚନା କରାଯାଏ । ଅନ୍ୟର, ଗୋଡ଼ ଟାଣିବା, ସହିତ ସହକର୍ମୀ, ପଡ଼ୋଶୀ ବା ଜ୍ଞାତିକୁଟୁମ୍ବମାନଙ୍କର ବିକାଶକୁ ସହ୍ୟ ନକରିବା ଓ ଅନ୍ୟମାନଙ୍କ ଅଗ୍ରଗତିରେ ବାଧା ସୃଷ୍ଟି କରିବା ଘୋର ପରିତାପର ବିଷୟ । ଶସ୍ତା ଚାଉଳ, କାମଦାମରେ ଖାଦ୍ୟ ଓ ନିର୍ବାଚନ ସମୟରେ ବିଭିନ୍ନ ଅତ୍ୟାବଶ୍ୟକ ବସ୍ତୁର ବିନାମୂଲ୍ୟରେ ବିତରଣ ଅଳସୁଆ ଜାତିକୁ ଏକ ଭୀକାରି ସଂସ୍କୃତି ମଧ୍ୟକୁ ଟାଣି ନେଉଛି । ୧୮୬୫ ମସିହାର ନଅଙ୍କ ଦୁର୍ଭିକ୍ଷ ସମୟରେ ଉପକୂଳବର୍ତ୍ତୀ ଅଞ୍ଚଳର ୧୦ ଲକ୍ଷ ଲୋକ ଖାଦ୍ୟବିନା ପୋକମାଛି ପରି ମରିଗଲେ ଏକଥା ମନରୁ ପାସୋରି ଯାଇନାହିଁ । ଏବେ ମାଗଣାରେ କ'ଣ ମିଳିପାରିବ, ଏଥିପାଇଁ ପୁରପଲ୍ଲୀରେ ପ୍ରବଳ ପ୍ରତିଯୋଗିତା ଚାଲିଛି । ଏହି ପରିପ୍ରେକ୍ଷୀରେ ଅର୍ଥନୈତିକ ସର୍ଭେ ଓ ବିବିଧ ଆକଳନର ପରିସଂଖ୍ୟାନ ଦେଖିଲେ ଜଣାଯାଏ ଉତ୍କଳ ପ୍ରଦେଶର ନିର୍ମାତାମାନଙ୍କର ସ୍ୱପ୍ନ ସମ୍ପୂର୍ଣ୍ଣ ରୂପେ ବିଫଳ ହୋଇଛି । ଭାରତୀୟ ରିଜର୍ଭବ୍ୟାଙ୍କର ସର୍ଭେ ଅନୁସାରେ ଆମଦେଶର ସବୁଠାରୁ ସ୍ୱଚ୍ଛଳ ରାଜ୍ୟ ତାଲିକାରେ ଓଡ଼ିଶା ତଳଆଡୁ ଚତୁର୍ଥ ।

ଏହି କ୍ରମରେ ତୃତୀୟ ଆଲୋଚ୍ୟ ବିଷୟ ହେଉଛି ଜଡ଼ତା । ଓଡ଼ିଆଙ୍କ ଧମନୀରେ ଶିଥିଳ ରକ୍ତ ପ୍ରବାହିତ ହୁଏ । ଏଣୁ ଆଖି ଆଗରେ ଘଟିଯାଉନଥିବା ଅଘଟଣ, ଅନିୟମିତତାକୁ ଆମେ ଅଣଦେଖା କରି ଏଡାଇ ଦେଇଯାଇଥାଉ । ଅନ୍ୟାୟ, ଅତ୍ୟାଚାର ଧର୍ଷଣ ଦୁର୍ନୀତି, ହତ୍ୟା ପରଦ୍ରବ୍ୟ ଅପହରଣ ଇତ୍ୟାଦି ଆମ ସମସ୍ତଙ୍କର ଜାଣତରେ ହେଉଥିଲେ ମଧ୍ୟ ଆମେ ସେ ସବୁକୁ ଦେଖି ନ ଦେଖିଲାଭଳି ରହିଯାଉ । ଏସବୁ ବିରୁଦ୍ଧରେ ଜନମତ,

ଜାଗ୍ରତ କରିବା, ସ୍ୱର ଉତ୍ତୋଳନ କରିବା ଓ ପ୍ରତିରୋଧ କରିବାର ଦୃଷ୍ଟାନ୍ତ ଆମ ରାଜ୍ୟରେ ବିରଳ । ଆଜି ଓଡ଼ିଶାରେ ସଡ଼କ ଦୁର୍ଘଟଣାରେ ମୃତ୍ୟୁ ହେଲେ ରାସ୍ତା ଅବରୋଧ କରିବା ଓ ରାଜନୈତିକ ଶତ୍ରୁତାକୁ ନେଇ ପରସ୍ପର ବିରୋଧରେ ଆନ୍ଦୋଳନ କରିବା ବ୍ୟତୀତ ଅନ୍ୟ ରଚନାତ୍ମକ ଆନ୍ଦୋଳନର ଦୃଷ୍ଟାନ୍ତ ଖୁବ୍ କମ୍ । ଓଡ଼ିଶାର ଦୁର୍ନୀତି, କଳାବଜାରୀ, ଅସାଧୁ ସରକାରୀ କର୍ମଚାରୀ ବ୍ୟଭିଚାରୀ ରାଜନେତାମାନଙ୍କ ବିରୁଦ୍ଧରେ ଆନ୍ଦୋଳନ ଓ ସଙ୍ଗଠନ ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ଆଜି ଶାସନକଳ ଓ ସରକାରୀ କ୍ଷେତ୍ରରେ ଉତ୍କୋଚ ନଦେଲେ କୌଣସି କାର୍ଯ୍ୟ ହୁଏ ନାହିଁ । ସରକାରୀ କର୍ମଚାରୀମାନଙ୍କ ଉଦାସୀନତା ଓ ମନ୍ଥର ଗତି ଯୋଗୁ ଅନେକ ଯୋଜନାର ସଫଳ ରୂପାୟନ ହୋଇପାରୁନାହିଁ ଓ ଯୋଜନା ବ୍ୟୟ ସାପେକ୍ଷ ହେଉଛି । ନିମ୍ନମାନର କାମ ଗୁଡ଼ିକ ବର୍ଷ ବର୍ଷ ଧରି ଚାଲିଛି ବା ସମୟ ଆଗରୁ ବିପଦସଙ୍କୁଳ ଘୋଷିତ କରାଯାଇ ବହୁଳ ଅର୍ଥ ବ୍ୟୟରେ ପୁଣିଥରେ କରାଯାଉଛି । ନବକଳେବରର ନିମ୍ନମାନର କାର୍ଯ୍ୟ ବର୍ଷେ ପୁରିବାକୁ ଯାଉଥିବାବେଳେ ରାସ୍ତା କାର୍ଯ୍ୟ ସମ୍ପୂର୍ଣ୍ଣ ନ ହୋଇଥିବା ଘଟଣା ଏହାର ଉଦାହରଣ । ରାଜ୍ୟର ୪ କୋଟି ଜନସାଧାରଣ ପ୍ରତି ହେଉଥିବା ଅନ୍ୟାୟ, ଅତ୍ୟାଚାର, ଶୋଷଣର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା, ଆନ୍ଦୋଳନାତ୍ମକ ପଦକ୍ଷେପ ନେବାର ଆବଶ୍ୟକତା ଆମେ ସମସ୍ତେ କ'ଣ ଅନୁଭବ କରିପାରୁଛୁ ? ଏହି ଜଡ଼ତା ଯୋଗୁଁ କେତେକ ଅପରାଧପ୍ରବଣ, ନ୍ୟସ୍ତସ୍ୱାର୍ଥୀ ଲୋକମାନଙ୍କୁ ଆମେ ଅନ୍ୟାୟ ଓ ଅତ୍ୟାଚାର କରିବା ପାଇଁ ପରୋକ୍ଷରେ ପ୍ରୋତ୍ସାହନ ଦେଇ ନାହୁଁ କି ? ରାଜନୀତିରେ ଅପରାଧ, ଦୁର୍ନୀତି ପ୍ରବେଶ କରିବାର ଏହା ମୂଳ କାରଣ ନୁହେଁ କି ?

ଏବେ, ଭାଷା କ୍ଷେତ୍ରକୁ ଆସିବା । ଇଂରାଜୀ ଭାଷାର କବଳରେ କବଳିତ ହୋଇ ଓଡ଼ିଆ ଭାଷା ଏବେ ଆର୍ତ୍ତନାଦ କରୁଛି । ଭାଷାର ଅଧାରରେ ୧୯୩୬ ମସିହାରେ ଗଠିତ ହୋଇଥିବା ଆମ ରାଜ୍ୟରେ ୧୯୫୪ ମସିହାରେ ତତ୍କାଳୀନ ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଓଡ଼ିଆ ଭାଷାର ସରକାରୀ ସ୍ତରରେ ପ୍ରଚଳନ ପାଇଁ ଆଇନ ପାସ୍ କରାଇଥିଲେ । ଆଜି ୬୩ ବର୍ଷ ପରେ ମଧ୍ୟ ଆମ ପ୍ରଦେଶରେ ସେ ଆଇନ ଲାଗୁ ହୋଇନାହିଁ । ୨୦୧୫ରୁ ଭାଷା ଆନ୍ଦୋଳନ ବିଭିନ୍ନ ପର୍ଯ୍ୟାୟରେ ଜୋର ଧରିବାପରେ ମେ' ମାସରେ ସରକାର ଏକ ଅଧ୍ୟାଦେଶ ଆଣି ଅଗଷ୍ଟମାସରେ ଭାଷା ଆଇନ୍‌କୁ କାର୍ଯ୍ୟକାରୀ କରିବେ ବୋଲି ଘୋଷଣା କରିଛନ୍ତି । ଆଶ୍ଚର୍ଯ୍ୟର ବିଷୟ, ସରକାରୀ ଘୋଷଣାରେ ଅନେକ ପଦକ୍ଷେପ କଥା ଉଲ୍ଲେଖଥିଲେ ମଧ୍ୟ ଓଡ଼ିଆ ଭାଷାକୁ ସରକାରୀ ସ୍ତରରେ ପ୍ରଚଳନ କରାଯିବାର ଘୋଷଣା ସ୍ଥାନ ପାଇନାହିଁ । ଏଣୁ ଆନ୍ଦୋଳକାରୀମାନେ ଏହି ଘୋଷଣାକୁ ସମ୍ପୂର୍ଣ୍ଣରୂପେ ଗ୍ରହଣ ନକରି ଆନ୍ଦୋଳକୁ ସ୍ଥଗିତ ରଖି ଅଗଷ୍ଟ ମାସରୁ ସରକାରୀ ପ୍ରୟୋଗକୁ ଅପେକ୍ଷା କରିଛନ୍ତି । ଯେଉଁ ଭାଷାରେ ସାରଳା ଦାସ ମହାଭାରତ ରଚନାକଲେ, ଅତିବଡ଼ି

ଜଗନ୍ନାଥ ଦାସ ଭାଗବତ ଲେଖିଲେ, ସନ୍ଥକବି ଭୀମଭୋଇ, କବି ସମ୍ରାଟ ଉପେନ୍ଦ୍ରଭଞ୍ଜ, ପ୍ରକୃତି କବି ଗଙ୍ଗାଧର ମେହେର, ଗଣକବି ବୈଷ୍ଣବ ପାଣି, କବିବର ରାଧାନାଥ ରାୟ, ଓଡ଼ିଆ ଗଳ୍ପର ଜନ୍ମଦାତା ବ୍ୟାସକବି ଫକୀରମୋହନ ଇତ୍ୟାଦି ମନିଷୀଗଣ ଅମୂଲ୍ୟ ସମ୍ପଦର ଉପହାର ସାହିତ୍ୟ ଜଗତକୁ ଦେଲେ, ସେହି ଓଡ଼ିଆ ଭାଷା ଏକ ଶାସ୍ତ୍ରୀୟ ଭାଷାର ମାନ୍ୟତା ପାଇ ରହିଯାଇଛି । ଆଜି ଓଡ଼ିଶାର ପୁରପଲ୍ଲୀରେ ବିବାହ, ନିମନ୍ତ୍ରଣ, ବିଜ୍ଞାପନ, ନାମଫଳକ, କେଉଁଠି ବି ଓଡ଼ିଆ ଭାଷାର ପ୍ରୟୋଗ ଦେଖିବାକୁ ମିଳୁନାହିଁ । ଓଡ଼ିଆ ସ୍କୁଲମାନଙ୍କରେ ଦୁର୍ଦ୍ଦଶା ନ ଲେଖିଲେ ଭଲ । ଅପର ପକ୍ଷରେ ଇଂରାଜୀ ଭାଷା ଓ ଇଂରାଜୀ ସ୍କୁଲ ଗୁଡ଼ିକ ଛତୁ ଫୁଟିଲା ପରି ରାଜ୍ୟସାରା ବ୍ୟାପି ଶିକ୍ଷାକୁ ବ୍ୟୟବହୁଳ କରିବା ସଙ୍ଗେ ସଙ୍ଗେ ଅଭିଭାବକମାନଙ୍କୁ ବଶୀଭୂତ କରି ଏକ ନକାରାତ୍ମକ ପ୍ରତିଯୋଗିତା ଆଡ଼କୁ ଟାଣି ନେଉଛନ୍ତି । ଉତ୍କଳମଣି ଗୋପବନ୍ଧୁଙ୍କ ସତ୍ୟବାଦୀ ବନ ବିଦ୍ୟାଳୟକୁ ଭଲ ମଣିଷ ତିଆରି କାରଖାନା କୁହାଯାଉଥିବା ବେଳେ ଏବେ ଇଂରାଜୀ ମିଡିୟମ ସ୍କୁଲ ଗୁଡ଼ିକ ବଡ଼ ମଣିଷ ତିଆରି କାରଖାନାରେ ରୂପାନ୍ତରିତ ହୋଇଛନ୍ତି । ଏହି 'ବଡ଼ମଣିଷ' ବନାମ 'ଭଲ ମଣିଷ' ପ୍ରତିଯୋଗିତାରେ ଆମ ଯୁବସମାଜ ଭବିଷ୍ୟତ ନାଗରିକ ହେଲାବେଳକୁ ସମାଜ କଥା ଚିନ୍ତା ନ କରି ନିଜର ପରିବାର ଓ ବେଶି ଆୟ ପାଇଁ ସବୁକିଛି ତ୍ୟାଗ କରିବା ପାଇଁ ପଛରେ ଯାଉନାହାନ୍ତି । ବ୍ୟକ୍ତିର ଆଜି ସମାଜ ପ୍ରତି କୌଣସି ଅଙ୍ଗୀକାର ନାହିଁ । ଦେଶପ୍ରେମର ଅଭାବ ଆଜି ଆମ ସମସ୍ତଙ୍କ ପାଇଁ ବିପଦର କାରଣ ହୋଇଛି । କାରଣ ଏହାର ସୁଯୋଗ ନେଇ ବିଚ୍ଛିନ୍ନତାବାଦ, ସନ୍ତ୍ରାସବାଦ, ଜାତି, ଧର୍ମ ଓ ସୀମାଭେଦ ମୁଣ୍ଡଟେକି ଉଠି ଆମର ସାର୍ବଭୌମତା, ନିରାପତ୍ତା ଓ ଗଣତନ୍ତ୍ର ପ୍ରତି ବିପଦ ଦେଖାଦେଇଛି ।

ଏବେ ଆସନ୍ତୁ ମିଳିମିଶି ଏସବୁର ପ୍ରତିକାର କିପରି କରିବା ଏହି ବିଷୟରେ ଆଲୋଚନା କରିବା । ଗାନ୍ଧିଜୀଙ୍କର "ନିଶା ଆଳସ୍ୟ ଓ ଜଡ଼ତା" ସହିତ ନଟବର ଖୁଣ୍ଟିଆଙ୍କର "ନିଶା, ଭାଷା ଓ ଚଷା" ପ୍ରସଙ୍ଗ ଆଜି ମଧ ଆମକୁ ପଛୁଆ କରି ରଖିଛି ଏହା ଆମେ ହୃଦୟଙ୍ଗମ କରୁଛୁ । ଦେଶପ୍ରେମ ଓ ଜାତୀୟତା ଗୋଟିଏ ଦେଶର ଶକ୍ତି, ସାମର୍ଥ୍ୟ ଓ ଶୌର୍ଯ୍ୟର ପରିଚୟ ଦେଇଥାଏ । ଯେଉଁ ଜାତି ଯେତିକି ସଚେତନ ଓ ସଂଗଠିତ ହେଉଥିବ ସେହି ଅନୁପାତରେ ଉନ୍ନତି ଓ ପ୍ରଗତିର ପଥରେ ଅଗ୍ରସର ହେଉଥିବ । ଯେଉଁ ସମାଜରେ ଲୋକମାନଙ୍କର ଦୃଢ଼ ମନୋବଳ ଥିବ ସେମାନେ ସେହି ସମାଜରେ ଅନ୍ୟାୟ, ଅତ୍ୟାଚାର, ଆଇନଭଙ୍ଗ, ନକାରାତ୍ମକ ଓ ଆକ୍ରମଣାତ୍ମକ ଶକ୍ତିମାନଙ୍କର ସେତିକି ଭାବରେ ପ୍ରତିରୋଧ କରିପାରିବେ । ଅଷ୍ଟାଦଶ ଶତାବ୍ଦୀରେ ଇଂରେଜମାନଙ୍କ କବଳରେ ପରାଧୀନତାର ଶୃଙ୍ଖଳ ପିନ୍ଧିଲାପରେ ଅନେକ ମହାପୁରୁଷ ଯଥା ସ୍ୱାମୀ ବିବେକାନନ୍ଦ, ଯୋଗୀ ଅରବିନ୍ଦ, ଦୀନଦୟାଲ ଉପାଧ୍ୟାୟ, ଦୟାନନ୍ଦ ସରସ୍ୱତୀ, ଡକ୍ଟର ରାମମୋହନ

ଲୋହିୟା, ସୁଭାଷ ବୋଷ, ମହାତ୍ମା ଗାନ୍ଧୀ, ବାଳ ଗଙ୍ଗାଧର ତିଲକ, ଓଡ଼ିଶାର ଉତ୍କଳମଣି ଗୋପବନ୍ଧୁ, ଉତ୍କଳଗୌରବ ମଧୁସୁଦନ, ବ୍ୟାସକବି ଫକିର ମୋହନ ଆଦି ଜାତୀୟବାଦୀ ନେତାମାନେ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ତଥା ବ୍ୟକ୍ତିଗତ ସ୍ୱାର୍ଥ ତ୍ୟାଗ କରି ଅନ୍ୟାୟ, ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ ଏକତ୍ରିତ ହୋଇ ଆନ୍ଦୋଳନ କରିବାକୁ ଡାକରା ଦେଇଥିଲେ । ଉତ୍କଳ ଗୌରବ ମଧୁସୁଦନ ଆବେଗରେ ଆହ୍ୱାନ କରିଥିଲେ:-

"ଉଠରେ ଉଠରେ ଉତ୍କଳ ସନ୍ତାନ ଉଠିବୁଟୁ କେତେ ଦିନେ,
ପୂରୁବ ଗୌରବ ପୂରୁବ ସାହସ ପଡ଼ିବକି କେବେ ମନେ ।
ଜାତି ନନ୍ଦିଘୋଷ ଚଳିବକି ଭାଇ ସ୍ୱାର୍ଥକୁ ସାରଥୀ କଲେ,
ଟାଣେ କିରେ ଗାଡ଼ି ଦାନାର ତୋବଡ଼ା ଘୋଡ଼ା ମୁହେଁ ବନ୍ଧା ଥିଲେ ।
ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କର ସ୍ୱାର୍ଥକୁ ଦିଅ ଆହୁତି,
ସ୍ୱାର୍ଥମେଧ ଯଜ୍ଞେ ଚାରିଆଡ଼େ ନାଚ ଛାତିକୁ ମିଶାଇ ଛାତି ।
ଭୂମିକମ୍ପ ହେବ ଧରଣୀ ଫାଟିବ ଉଠିବେ ସହସ୍ର ଭୁଜା,
ସେହି ତୋର ମାତା ସେହି ତୋର ଭ୍ରାତା କର ସେଇ ପାଦପୂଜା ।"

ମଧୁବାବୁଙ୍କର ସେହି ଐତିହାସିକ ଆହ୍ୱାନର ପ୍ରତିବେଦନ ପାଇଁ ଶୁଭବେଳା ଏବେ ଉପସ୍ଥିତ ହୋଇଛି । ଖଣି ଦୁର୍ନୀତି, ଚିଟ୍‌ଫଣ୍ଡ ଦୁର୍ନୀତି, ଶିକ୍ଷା, ସ୍ୱାସ୍ଥ୍ୟ, ପ୍ରଶାସନ ସବୁ କ୍ଷେତ୍ରରେ ଦୁର୍ନୀତିର ଲୋପ କରିବା ପାଇଁ ଓ ସମାଜକୁ ଅନ୍ୟାୟ, ଅରାଜକତା, ଅପରାଧ ପ୍ରବଣତା କବଳରୁ ମୁକ୍ତ କରିବା ପାଇଁ ଆମ ସମସ୍ତଙ୍କୁ ଏକଜୁଟ ହୋଇ ଏକ ଗଣ ଆନ୍ଦୋଳନର ସୂତ୍ରପାତ କରିବା ଏଥିପାଇଁ ଉପଯୁକ୍ତ କ୍ଷେତ୍ର ପ୍ରସ୍ତୁତ ହୋଇଯାଇଛି । ଆସନ୍ତୁ ଆମେ ସମସ୍ତେ ସ୍ୱାର୍ଥକୁ ଆହୁତି ଦେଇ ଓଡ଼ିଶାର ପୂର୍ବ ଗୌରବ ଓ ସାହସକୁ ମନେପକାଇ ସହସ୍ରଭୁଜ ଉତ୍ତୋଳନ କରି ଛାତିକୁ ଛାତି ମିଶାଇ ସ୍ୱାର୍ଥମେଧ ଯଜ୍ଞ ନାମକ ଗଣ ଆନ୍ଦୋଳନ କରିବା ଓ ନିଶାମୁକ୍ତ, ଓଡ଼ିଆ ଭାଷାରେ ପରିପୂର୍ଣ୍ଣ, ଦୁର୍ନୀତିମୁକ୍ତ ଓଡ଼ିଶା ଗଠନ କରିବା ସହିତ ସବୁ ଶ୍ରେଣୀର ଜନସାଧାରଣଙ୍କୁ ସାମାଜିକ ନ୍ୟାୟ ଦେଇପାରିବା । ଏଭଳି ହେଲେ ଓଡ଼ିଶାର ନିର୍ମାତା ମହାପୁରୁଷମାନଙ୍କ ସ୍ୱପ୍ନ ସାକାର ହେବ ଏବଂ ଭାରତ ବର୍ଷର ମାନଚିତ୍ରରେ ଭିନ୍ନ ଦିଶିବ ଆମର ପ୍ରିୟ ରାଜ୍ୟର ଚେହେରା ।

*ବି-୨୪୩, ରାଜେନ୍ଦ୍ରବିହାର ଆପାର୍ଟମେଣ୍ଟ*
*ଫରେଷ୍ଟପାର୍କ, ଭୁବନେଶ୍ୱର-୭୫୧୦୦୯*
*ଦୂରଭାଷ-୮୮୭୫୩୬୭୯୧୭*

# ସାମ୍ପ୍ରତିକ ସାହିତ୍ୟରେ ସୃଷ୍ଟିଚେତନା

ଡ. ପୂର୍ଣ୍ଣଚନ୍ଦ୍ର ଦାସ (୫୪୬)

ଇଂରେଜମାନେ ବେପାରବଣିଜ କରିବାକୁ ଆସି କୌଶଳକ୍ରମେ ଆମଦେଶର ଶାସନ ଗାଦି ମାଡି ବସିଲେ । ଦୀର୍ଘ ଦୁଇଶହ ବର୍ଷ ଶାସନ କଲେ । ଶାସନର ସୁପରିଚାଳନା ପାଇଁ ଇଂରେଜୀ ପାଠର ପ୍ରସାର ଘଟାଇଲେ । ସେମାନଙ୍କ ସଂସ୍କୃତି ଓ ସଭ୍ୟତା ପ୍ରତି ଅଜାଣତରେ ତଥାକଥିତ ଶିକ୍ଷିତ ଗୋଷ୍ଠୀ ଆକୃଷ୍ଟ ହେଲେ । କେବଳ ସେତିକି ନୁହେଁ, ଆମ ସାହିତ୍ୟ ଉପରେ ପାଶ୍ଚାତ୍ୟ ବିଶେଷ ପ୍ରଭାବ ପଡିଲା । ଏହି ପ୍ରଭାବ ଏତେ ଶକ୍ତିଶାଳୀ ଥିଲା ଯେ, ଏହାକୁ ଅସ୍ୱୀକାର କରିବା ଦୂରର କଥା; ବରଂ ଏହାକୁ ଆମେ ସାଦର ଗ୍ରହଣ କରି ଅଭ୍ୟୁଦୟ ସାହିତ୍ୟ (ରେନାଁସା)ର ଆଖ୍ୟା ଦେଲୁ । ଊନବିଂଶ ଶତାବ୍ଦୀ ଓଡ଼ିଆ ସାହିତ୍ୟର ଆଙ୍ଗିକ ଓ ଆତ୍ମିକ ପରିବର୍ତ୍ତନର ଏକ ପ୍ରମୁଖ ସମୟ । ଆମର ପ୍ରାଚ୍ୟ କାବ୍ୟ ପରଂପରା ବହୁ ପୁରାତନ ହେଲେ ହେଁ, ଗଦ୍ୟସାହିତ୍ୟର ନୂତନ ଧାରା ଓ ବିଭାଗ ସୃଷ୍ଟି କରିବାରେ ଏହି ପ୍ରଭାବର ଭୂମିକା ଅନସ୍ୱୀକାର୍ଯ୍ୟ । ଭାରତୀୟ କାବ୍ୟ ମହାକାବ୍ୟ ଗୁଡିକରେ ଚରିତ୍ରଚିତ୍ରଣ, ଘଟଣାବିନ୍ୟାସ, ସାମାଜିକ ସଂଦେଶ, ସମାଜ ସଂସ୍କାର ପ୍ରୟାସ, ପ୍ରଭାବକାରୀ ଆଙ୍ଗିକ-ଆତ୍ମିକ ଶୈଳୀ, ଦ୍ୱନ୍ଦ୍ୱ, ଉତ୍କଣ୍ଠା ଏବଂ ଜନଶିକ୍ଷାର ସାମାଜିକ ଉଦ୍ଦେଶ୍ୟ ଗୁଡ଼ିକ ଅତି ସ୍ପଷ୍ଟ । ପ୍ରାଚୀନ କାଳର ସାହିତ୍ୟ ସ୍ରଷ୍ଟାଗଣ ନିଜର ସାମାଜିକ ଅଙ୍ଗୀକାରବଦ୍ଧତାରୁ ତିଳେମାତ୍ର ଦୂରେଇ ଯାଇଥିବା ଦେଖାଯାଏ ନାହିଁ । ଏପରି ବଳିଷ୍ଠ ସୃଷ୍ଟି ପରମ୍ପରା ଥିବା ସତ୍ତ୍ୱେ ଆମେ ପାଶ୍ଚାତ୍ୟ ସାହିତ୍ୟର ନୂତନ ଭାବଧାରା ପ୍ରତି ଅନୁରକ୍ତ ହୋଇପଡିଲୁ । ଏହା ପଛରେ ନିଶ୍ଚିତ ଭାବରେ କିଛି ବଳିଷ୍ଠ କାରଣ ରହିଛି । ଏହି ଅନୁରକ୍ତି ଓ ଅନୁକରଣ ଆମ ସାହିତ୍ୟରେ ନୂତନ ଧାରା ସୃଷ୍ଟି କରିବା ସହିତ ଆଧୁନିକ ଯୁଗର ସୂତ୍ରପାତ କଲା । ସାହିତ୍ୟରେ କୌଣସି ଆହରଣକୁ ଅସ୍ୱୀକାର କରାଯାଇନପାରେ । ପାଶ୍ଚାତ୍ୟ ସାହିତ୍ୟରୁ ଭାବଲୁଣ୍ଠନ କରି ନିଜସ୍ୱ ଶବ୍ଦଗୁମ୍ଫନ ମାଧ୍ୟମରେ ସାହିତ୍ୟର ନବରୂପାୟନ କରାଗଲା । ଏହି ନବରୂପାୟନରେ କବିବର ରାଧାନାଥ ରାୟ, ଭକ୍ତ କବି ମଧୁସୂଦନ ରାଓ, ନାଟ୍ୟକାର ଜଗନ୍ମୋହନ ଲାଲା ଏବଂ ପରବର୍ତ୍ତୀକାଳରେ କବି ସଚ୍ଚିରାଉତରାୟ, ନାଟ୍ୟକାର ମନୋରଞ୍ଜନ ଦାସଙ୍କ ପରି ଅନେକ ଶୈଳୀ ସଚେତନ ନୂତନ ଲେଖକଲେଖିକାଙ୍କ ନାମ ଉଲ୍ଲେଖଯୋଗ୍ୟ । ରାଧାନାଥଙ୍କ ସମୟରେ କଥାକାର ଫକୀରମୋହନ ସେନାପତି, ସ୍ୱଭାବକବି ଗଙ୍ଗାଧର ମେହେର, ପଲ୍ଲୀ କବି ନନ୍ଦକିଶୋର ବଳଙ୍କ ପରି ଶକ୍ତିଶାଳୀ ସ୍ରଷ୍ଟାଗଣ ନିଜସ୍ୱ ଦୃଷ୍ଟିଭଙ୍ଗୀ ନେଇ ସାହିତ୍ୟ ସୃଷ୍ଟିରେ ମନୋନିବେଶ କରିଥିଲେ ମଧ୍ୟ ଏ

ପ୍ରକାର ଅନୁକରଣକୁ ବିରୋଧ କରିନଥିଲେ । କେବଳ ପଞ୍ଚସଖା ଗୋଷ୍ଠୀର ବାଗ୍ମୀ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପରି କେତେଜଣ ଉଗ୍ର ଜାତୀୟବାଦୀ ସ୍ରଷ୍ଟା ଆମ ଇତିହାସର ବିକୃତ କାବ୍ୟାୟନ ପରିପ୍ରେକ୍ଷୀରେ ପରୋକ୍ଷ ପ୍ରତିବାଦ କରିଥିଲେ ମାତ୍ର । ଏପରି ଏକ ସନ୍ଧିକ୍ଷଣରେ ପାଶ୍ଚାତ୍ୟ ସାହିତ୍ୟ ପ୍ରାଚ୍ୟଭୂମିରେ ତା'ର କାୟା ବିସ୍ତାର କରିଚାଲିଲା । ନୂତନ ଯୁଗ ସୃଷ୍ଟିର ଆହ୍ଲାଦରେ ଆମେ ଆତ୍ମହତରା ହୋଇପଡିଲୁ ।

ଓଡ଼ିଆ ଭାଷା ସାହିତ୍ୟର ଜନକ ମାଟିର ମହାକବି ଶାରଳା ଦାସଙ୍କ ଦ୍ୱାରା ନିଛକ ଓଡ଼ିଆ ପାଣିପବନର ଭୌଗୋଳିକ ଚିତ୍ରପଟରେ ରଚିତ ଓଡ଼ିଆ ମହାଭାରତ, ପଞ୍ଚସଖା ଯୁଗର ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱସମ୍ବଳିତ ସାମାଜିକ ବିପ୍ଲବର ବାର୍ତ୍ତାବହନ କରିଥିବା ମୌଳିକଚିନ୍ତନର ଅନେକ ଧର୍ମୀୟ କାବ୍ୟ, ଘରେ ଘରେ ପରିଚିତ ଓଡ଼ିଆ ଜୀବନଚର୍ଯ୍ୟାର ଅନନ୍ୟ ସୃଷ୍ଟି ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତ, ଅଚ୍ୟୁତାନନ୍ଦଙ୍କର ମାଳିକା, ଭଞ୍ଜଯୁଗୀୟ ରୀତିକାବ୍ୟ ଏବଂ ପରବର୍ତ୍ତୀ ଗୋପାଳକୃଷ୍ଣ ଓ ବନମାଳୀ ପ୍ରମୁଖ ବୈଷ୍ଣବ କବିମାନଙ୍କର ରାଗାନୁଗା ଭକ୍ତି ସମ୍ବଳିତ ସୁକୋମଳ ପଦାବଳୀ ଗୁଡିକ ମଧ୍ୟ କ୍ରମଶଃ ଅଲୋଡା ହୋଇପଡିଲେ । ଭକ୍ତଚରଣଙ୍କର ବୈରାଗ୍ୟ ଚିନ୍ତା ସମ୍ବଳିତ ମନବୋଧ ଚଉତିଶା, ଦନେଇ ଦାସଙ୍କର ବାତ୍ସଲ୍ୟ ପ୍ରେମର ଗୋପୀଭାଷା ପ୍ରଭୃତି ସର୍ବଜନାଦୃତ ସୃଷ୍ଟିଗୁଡିକ ସାମୟିକ ଭାବେ ନବ୍ୟସମାଜରେ ଅନାଦୃତି ଲାଭକଲେ । ଅବଶ୍ୟ ଏହାକୁ ଆମେ ସର୍ବସାଧାରଣ ମତ ବୋଲି କହିପାରିବା ନାହିଁ; କିନ୍ତୁ ସାହିତ୍ୟିକମାନେ ଏପରି ବଳିଷ୍ଠ କାବ୍ୟଶୈଳୀକୁ ଗୌଣ ମନେକଲେ । ଇଂରେଜୀ ସାହିତ୍ୟର ମୋହିନୀ ମାୟାରେ କେବଳ ଓଡ଼ିଆ ସାହିତ୍ୟ ନୁହେଁ, ସମଗ୍ର ଭାରତୀୟ ସାହିତ୍ୟ ପ୍ରଭାବିତ ହେଲା । ରାଧାନାଥଙ୍କ ଆଧୁନିକ ଯୁଗପରେ ସତ୍ୟବାଦୀ ସାଧକମାନେ ଜାତି ଓ ସଂସ୍କୃତିର ସୁରକ୍ଷା ପାଇଁ ତତ୍ପର ହୋଇଉଠିଥିଲେ ହେଁ ତାହା ପରବର୍ତ୍ତୀ ସାହିତ୍ୟ ଉପରେ ବିଶେଷ ପ୍ରଭାବ ପକାଇପାରିନଥିଲା । ପ୍ରଗତିବାଦର ଦ୍ୱାହି ଦେଇ ସବୁଜ ଗୋଷ୍ଠୀ ଏବଂ କେତେକ ଏକକ ସ୍ରଷ୍ଟା ଆବିର୍ଭୂତ ହେଲେ । ଏତେବେଳକୁ ସାହିତ୍ୟର ପ୍ରବନ୍ଧ, ଗଳ୍ପ, ରମ୍ୟରଚନା, ପଦ୍ୟ, ସନେଟ୍, ନାଟକ ପ୍ରଭୃତି ନିଜର ରୂପ ବଦଳାଇ ସାରିଥିଲେ । ପୁରାତନ ଠାରୁ ଦୂରେଇ ଯାଇ ନୂତନତାକୁ ଆଦରି ନେବା ଆଧୁନିକ ସମାଜର ଅନ୍ଧାଭିମୁଖ୍ୟ ହୋଇଯାଇଥାଏ । ଆଙ୍ଗିକ ଓ ଆତ୍ମିକ ଉଭୟ କ୍ଷେତ୍ରରେ ଲେଖକ ନିଜସ୍ୱ ମନୋଭାବ ଓ ଶୈଳୀ ନରଖି ଅନୁସରଣ କରିବାକୁ ଲାଗିଲା । ବିଂଶ ଶତାବ୍ଦୀର କେତେକ ଆନ୍ତର୍ଜାତୀୟ ପ୍ରଭାବ ଯଥା- କାର୍ଲମାର୍କସ୍‌ଙ୍କର ଶ୍ରେଣୀହୀନ ସମାଜ ଗଠନର ସ୍ୱପ୍ନ, ଫ୍ରଏଡ୍‌ଙ୍କର ଅବଚେତନମନର ରହସ୍ୟ ଉନ୍ମୋଚନ, ଚାର୍ଲସ୍ ଡାରଉଇନ୍‌ଙ୍କର ବିବର୍ତ୍ତନବାଦତତ୍ତ୍ୱ, ଦୁଇଦୁଇଟା ବିଶ୍ୱଯୁଦ୍ଧ ଏବଂ ଆମର ସ୍ୱାଧୀନତା ସଂଗ୍ରାମ ଦ୍ୱାରା ସାହିତ୍ୟ ପ୍ରଭାବିତ ହୋଇଥିଲା ।

ଉପରୋକ୍ତ ଦୃଷ୍ଟାନ୍ତରୁ ଆମ ସାହିତ୍ୟ ସମକାଳୀନ ସମାଜ, ରାଜନୈତିକ ପ୍ରଭାବ ଏବଂ ଜନରୁଚିଦ୍ୱାରା ପ୍ରଭାବିତ ହୋଇଥିବା ଜଣାଯାଏ । ନୂତନତା ଆଧାରରେ ପାଠକୀୟ ସ୍ୱୀକୃତି ପାଇବା ପରେ ସାହିତ୍ୟ ସ୍ରଷ୍ଟାଗଣ ସ୍ୱାଧୀନତାର ବଳୟ ଅତିକ୍ରମ କରି ସ୍ୱେଚ୍ଛାଚାରିତା ଆଡକୁ ଆଗେଇଗଲେ । ସାହିତ୍ୟ ଏକପ୍ରକାର ଶଙ୍କର ଶୈଳୀର ଅନୁଗାମୀ ହୋଇପଡିଲା । ଆମେ ଆମର ବଳିଷ୍ଠ ପରମ୍ପରାକୁ ଛାଡିଲୁ, ତେଣେ ନୂତନତାର ଅସଲ ଆଭିମୁଖ୍ୟକୁ ଗ୍ରହଣ କରିପାରିଲୁ ନାହିଁ । ଏ କୂଳ ଛାଡି, ସେକୂଳରେ ପହଞ୍ଚି ନପାରିବାର ସ୍ଥିତିରେ ରହିଗଲୁ ।

ମହାକବି କାଳିଦାସଙ୍କର ମେଘଦୂତ ମହାକାବ୍ୟର ଲକ୍ଷହରା ପକ୍ଷ ଯୁବକର ରାମଗିରିରେ ନିର୍ବାସନ କାଳର ମାନସିକ ସ୍ଥିତି, ଯିଏ କାମାର୍ତ୍ତ ହୋଇ ପ୍ରକୃତି କୃପଣ ହୋଇପଡେ, ତାର ଚେତନ-ଅଚେତନ ବିଚାର ରହେ ନାହିଁ । ଧୂମ, ଜ୍ୟୋତି, ମରୁତ, ସଲିଳ ସମ୍ଭୂତ ଚଳମାନ ନିର୍ଜୀବ ମେଘକୁ ବାର୍ତ୍ତାବହ କରି ନିଜ ବିରହୀ ପ୍ରିୟା ପାଖକୁ ବାର୍ତ୍ତା ପ୍ରେରଣ କରୁଛି- ଏସବୁ ବର୍ଣ୍ଣନା ଭିତରେ ନିବିଡ ମନସ୍ତାତ୍ତ୍ୱିକ ଚିତ୍ର ଲୁଚି ରହିଛି । ପୁରାଣ ବର୍ଣ୍ଣିତ ପୁରୁରବା-ଉର୍ବଶୀ ଉପାଖ୍ୟାନ, ଶକୁନ୍ତଳା, ଦ୍ରୌପଦୀ, ଅର୍ଜୁନ, କର୍ଣ୍ଣ ଓ ଉତ୍ତରା ପ୍ରଭୃତି ଚରିତ୍ର ଗୁଡିକ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ କୌଣସି ଗୁଣରେ କମ୍ ନଥିଲେ । ଏହି ଚରିତ୍ର ଗୁଡିକ ମାଧ୍ୟମରେ ପ୍ରେମପ୍ରଣୟର ଶାଶ୍ୱତ ମୂଲ୍ୟବୋଧ, ମାନବିକ ସମ୍ବେଦନଶୀଳତା ଏବଂ ମୌଳିକ ଚିନ୍ତାର ଅବତାରଣା କରାଯାଇଥିଲା । ଆଜି ଆମେ ପ୍ରାୟତଃ ଏସବୁ ପ୍ରାଚୀନ ସୃଷ୍ଟିକୁ ଛାଡିଦେଇଛୁ ଏବଂ ଏହା କେବଳ ଅଧ୍ୟାପନା ବୃତ୍ତି ଆଶାୟୀ ମୁଷ୍ଟିମେୟ ଗବେଷକଙ୍କ ଉପାଦାନ ହୋଇ ରହିଛି ।

କସ୍ତୁରୀମୃଗ ନିଜ ନାଭିରେ ଥିବା ସୁବାସିତ ପଦାର୍ଥକୁ ଠାବକରି ନପାରି ଗହନବନରେ ଏହାର ପ୍ରାପ୍ତି ପାଇଁ ଦୌଡୁଥାଏ ଆମେ ସେପରି ଦୌଡୁଥିବା ଅନୁମେୟ, କିନ୍ତୁ ଏହା ସର୍ବସମ୍ମତ ସିଦ୍ଧାନ୍ତ ବୋଲି ଦମ୍ଭରେ କହିପାରିବା ନାହିଁ । ସାହିତ୍ୟ ସମାଜର ପ୍ରତିଛବି । ସମାଜ ବଦଳିଲେ ସାହିତ୍ୟ ବଦଳେ । ଆଜି ପୁରୁଣା ସମାଜ ନୂଆରୂପ ନେଇଛି । ତେଣୁ ସାହିତ୍ୟ କ୍ଷେତ୍ରରେ ପରିବର୍ତ୍ତନ ଘଟିବା ସ୍ୱାଭାବିକ । ଏହି ପରିବର୍ତ୍ତନକୁ ଅସ୍ୱୀକାର କରିବା ସଂକୀର୍ଣ୍ଣ ମାନସିକତାର ପରିଚାୟକ ହେବ । ଆମେ ଆଧୁନିକତାକୁ ସ୍ୱୀକାର କରିବା, କିନ୍ତୁ ନାଳଟା ନୂଆ ବୋଲି ତା' ଭିତରେ ବହିଯାଉଥିବା ପାଣିକୁ ପିଇବା ନାହିଁ । (ସ୍ୱର୍ଗତ ଗୋବିନ୍ଦ ତ୍ରିପାଠୀଙ୍କ ବଟୁଆ) । ସାମ୍ପ୍ରତିକ ସୃଷ୍ଟି ପର୍ଯ୍ୟାୟକୁ ଆସି ଉଦାହରଣ ସହ ଆଲୋଚନା କରିବା ଉଚିତ ମନେହେଉନାହିଁ । କାରଣ ପ୍ରତ୍ୟେକ ସୃଷ୍ଟିର ନିଜସ୍ୱ ପୃଷ୍ଠଭୂମି ରହିଛି । ଆଲୋଚକ ତୃତୀୟ ପୁରୁଷ ମାତ୍ର । କୌଣସି ସୃଷ୍ଟିର ସେ ସମୀକ୍ଷା କରିପାରେ, ମାତ୍ର ତାହା ଅପସୃଷ୍ଟି ବୋଲି କହିପାରିବ ନାହିଁ । କେବଳ ସାମଗ୍ରିକ ଭାବରେ ସାମ୍ପ୍ରତିକ ସ୍ରଷ୍ଟା ଏବଂ

ସେମାନଙ୍କର ସୃଷ୍ଟିର କିଂଚିତ ଆଲୋଚନା କରାଯାଇପାରେ ।

ମୋର ପୂଜ୍ୟଗୁରୁ ଲୋକରତ୍ନ ସ୍ୱର୍ଗତ କୁଞ୍ଜବିହାରୀ ଦାଶଙ୍କର ଗୋଟିଏ ପଂକ୍ତି ମନେପଡେ- 'ଜୀବନରୁ ଯେବେ ଛନ୍ଦ ହଜିଲା ମନୁ ମରିଗଲା ଗୀତ' କବିତା କଥା ବିଚାରକୁ ନେଲେ ଜଣାଯାଏ, କବିତା ଆଜି ଛନ୍ଦହୀନ । ଛନ୍ଦ କହିଲେ ଉପଧାମିଳନ ବା କୌଣସି ନିର୍ଦ୍ଦିଷ୍ଟ ଆଳଙ୍କାରିକ ଛନ୍ଦର ଅନୁସରଣ କରି ଲେଖିବା କଥା କୁହାଯାଉନି । ଆଧୁନିକ କବିତାର ମଧ୍ୟ ଏକ ଅନ୍ତରୀଣ ଛନ୍ଦ ଅଛି । କବିତା ମୁଖ୍ୟତଃ ଭାବଗର୍ଭକ । ହୃଦୟର ସ୍ୱତଃସ୍ଫୂର୍ତ୍ତ ଆବେଗର ଉଦ୍ଗୀରଣ ହିଁ କବିତାର ପ୍ରାଣ । କବିର ଭାବାବେଗ କବିତାରେ ପ୍ରକାଶ ପାଇଥାଏ । ତାହା ଯଦି ପାଠକ ହୃଦୟକୁ ନଛୁଁଇଲା, ତାହାହେଲେ ସେ ସୃଷ୍ଟି ନିରର୍ଥକ । ଆଜିର ଅନେକ କବିତା ଆତ୍ମକୈନ୍ଦ୍ରିକ । ନିଜ ହୃଦୟର ଅନୈତିକ ବିଚଳନ, କୌଣସି ଅନାମଧେୟ ପ୍ରତାରକର ଦୁର୍ବଳ ପ୍ରେମ କାହାଣୀ, ଯାହାର କୌଣସି ଶକ୍ତିଶାଳୀ ପ୍ରଭାବ ପାଠକ ମନକୁ ଆକ୍ରାନ୍ତ କରିପାରେ ନାହିଁ । ପୁଣି ତାହାର ବକ୍ତବ୍ୟ ଦୁର୍ବୋଧ୍ୟ ବା ଅବୋଧ୍ୟ । ପ୍ରଯୁକ୍ତ ଶବ୍ଦାବଳୀ ଅନେକ କ୍ଷେତ୍ରରେ ଅକାବ୍ୟିକ ମନେହୁଏ । କବିର ସ୍ୱାଧୀନତା ରହୁ, ଆତ୍ମପ୍ରକାଶ ନିର୍ବାଧ ରହୁ, କିନ୍ତୁ ଏହା ଦୁର୍ବୋଧ୍ୟ ନହେଉ । ଦୁର୍ବୋଧତା କୌଣସି ପ୍ରକାରେ ଆଧୁନିକତାର ଲକ୍ଷ୍ୟ ନୁହେଁ । ସେଥିପାଇଁ ଗୋଦାବରୀଶ ମିଶ୍ରଙ୍କର 'କାଳିଜାଇ' କବିତା, ସଚ୍ଚିରାଉତରାୟଙ୍କର 'ଛୋଟମୋର ଗାଁଟି' କବିତା, ରାଧାମୋହନ ଗଡନାୟକଙ୍କର 'ଶୁଆ ଓ ଦେବଦୂତ' କବିତା, ନନ୍ଦକିଶୋରଙ୍କର 'ବାଟୋଇ ଓ ନାଉରିଆ' କବିତା ଏବଂ କୁନ୍ତଳାକୁମାରୀଙ୍କର 'ଶେଫାଳି' କବିତା ଆଜି ମଧ୍ୟ ଆମେ ଗୁଣୁଗୁଣେଇ ଗାଇବୁଲୁଚେ । ଏଗୁଡିକ ଆମ ହୃଦୟକୁ ଛୁଇଁଛି । ମାନବବାଦୀ କବି ସ୍ୱର୍ଗତ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର ଶୋଲରୀ ପାହାଡତଳେ ମୁଗବିଲ ଜଗିଥିବା ପଧାନଘର ଝିଅ ନେତକୁ ନେଇ ରଚିତ କବିତା 'ନେତ' କୌଣସି ଗୁଣରେ ଇଂରେଜ କବି ୱାର୍ଡଶୱାର୍ଥଙ୍କର 'ସଲିଟାରୀ ରିପର' କବିତା ଠାରୁ ନ୍ୟୁନ ନୁହେଁ ।

ଆଜିର ଅନେକ ଗଳ୍ପ ଓ ଉପନ୍ୟାସରେ ମେଞ୍ଚାମେଞ୍ଚା ଚରିତ୍ର ଭର୍ତ୍ତି । ସେଗୁଡିକ ଦ୍ୱାରା ବୟାନ କରାଯାଉଥିବା ସନ୍ଦେଶ ଅନିର୍ଦ୍ଦିଷ୍ଟ ଓ ଅସ୍ପଷ୍ଟ । କାହାଣୀର ପୃଷ୍ଠଭୂମି ଖୁବ୍ ଦୁର୍ବଳ । ପାଠକଟି ଯଦି ଗଳ୍ପ ଭିତରେ ନିଜକୁ ଖୋଜି ନପାଇଲା, ତାହେଲେ ସେ ଅଣନିଶ୍ୱାସୀ ହୋଇ ତାହାକୁ ପଢିବ ନାହିଁ । ସ୍ରଷ୍ଟାଗଣ ଏଥିପ୍ରତି ଧ୍ୟାନଦେବା ଉଚିତ

ପ୍ରବନ୍ଧ ଗଭୀର ଅନୁଶୀଳନର ଅପେକ୍ଷା ରଖେ । ସଂଗୃହୀତ ତଥ୍ୟ କେତେକ କ୍ଷେତ୍ରରେ ଅନ୍ୟ ଠାରୁ ଗ୍ରହଣ କରିବାକୁ ପ୍ରାବନ୍ଧିକ ବାଧ୍ୟ ହୁଏ, କିନ୍ତୁ ଯଦି ସଂଭବ ହୁଏ ଏହା ନିଜେ ପ୍ରାବନ୍ଧିକଙ୍କ ଦ୍ୱାରା ଘଟଣାର ଉତ୍ସରୁ ସଂଗ୍ରହ କରାଯାଇପାରିଲେ ଅତି ଉତ୍ତମ । ସଂଗୃହୀତ ଉପାଦାନର ସଠିକତା ପ୍ରବନ୍ଧ ମୂଲ୍ୟାୟନରେ ସାହାଯ୍ୟ କରିଥାଏ ।

ନାଟକ ହେଉଛି ଦୃଶ୍ୟକାବ୍ୟ । ମୁଖ୍ୟତଃ ଏହା ମଞ୍ଚାୟନ ଉଦ୍ଦେଶ୍ୟରେ ରଚନା କରାଯାଇଥାଏ । ନାଟକର ମଞ୍ଚମୂଲ୍ୟ ରହିବା ଦରକାର । ତେଣୁ ନାଟକ ରଚୟିତାଙ୍କର ମଞ୍ଚ କୌଶଳ ସମ୍ପର୍କୀୟ ଜ୍ଞାନ ଥିଲେ ନାଟକ ବିଶେଷ ଭାବେ ସଫଳ ହୋଇଥାଏ । ଦ୍ୱନ୍ଦ୍ୱ, ଉତ୍କଣ୍ଠା, ବଳିଷ୍ଠ ଚରିତ୍ର, ପାତ୍ରୋପମୁଖୀ ସଂଳାପ ଓ ସାମାଜିକ ସନ୍ଦେଶ ନାଟକର ବିଶେଷ ବିଭବ ରୂପେ ବିବେଚନା କରାଯାଇଥାଏ । ଏଥିପ୍ରତି ନାଟ୍ୟକାର ଧ୍ୟାନଦେବା ଉଚିତ ।

ପ୍ରସଙ୍ଗକ୍ରମେ ଉପରୋକ୍ତ ଆଲୋଚନାରେ ଆଧୁନିକ ସାହିତ୍ୟ ଏବଂ ସାହିତ୍ୟିକମାନଙ୍କର ଅପାରଗତା ପ୍ରତିପାଦନ କରାଯାଇନାହିଁ । ଯୁଗର ଆହ୍ୱାନକ୍ରମେ ଆଧୁନିକତାକୁ ଗ୍ରହଣ କରିବାର ଯଥାର୍ଥତା ଅଛି । ଆଧୁନିକ ସାହିତ୍ୟିକଗଣ ତାହାହିଁ କରିଛନ୍ତି । ଏଥିରେ ପଥଭ୍ରଷ୍ଟ ହେବାର ପ୍ରଶ୍ନ ଉଠୁନାହିଁ । କେବଳ ଏତିକି କୁହାଯାଉଛି, ନୂତନତାର ଅନୁସରଣ ରହୁ, କିନ୍ତୁ ଆମର ବଳିଷ୍ଠ କାବ୍ୟପରମ୍ପରା ପ୍ରତି ଉଦାସୀନତା ପ୍ରକାଶ ନପାଉ । ଏ ପରିପ୍ରେକ୍ଷୀରେ ସମସ୍ତ ସାହିତ୍ୟ ସ୍ରଷ୍ଟାଙ୍କୁ ଏକାକାର କରି ଆଲୋଚନାଭୁକ୍ତ କରାଯାଇନାହିଁ; ମାତ୍ର କେତେକ ଆଧୁନିକ ସାହିତ୍ୟିକଙ୍କର ସୃଷ୍ଟିର ସାଧାରଣ ଅଭାବବୋଧ ବର୍ଣ୍ଣନା କରାଯାଇଛି । ଏହାକୁ ସକାରାତ୍ମକ ମନନେଇ ବିବେଚନା କରିବାକୁ ଅନୁରୋଧ ।

*ମହାବିନାୟକପୁରମ୍ (ପଟିଆ)*
*କିଟ୍, ଭୁବନେଶ୍ୱର-୨୪*
*ମୋ: ୯୪୩୭୩୦୪୦୩୨*

❀

# ବିଶ୍ୱକବି ରବୀନ୍ଦ୍ରନାଥ ଓ ଓଡ଼ିଶା

ନିର୍ମଳା କୁମାରୀ ମହାପାତ୍ର (୭୭)

"କତ ଅଜାନାରେ ଜାନାଇଲେ ତୁମି କତ ଘରେ ଦିଲେ ଠାଇଁ
ଦୂରକେ କରିଲେ ନିକଟବନ୍ଧୁ ପରକେ କରିଲେ ଭାଇ ।"

XX XX XX XX

"ହେ ମୋର ଚିତ୍ତ, ପୁଣ୍ୟ ତୀର୍ଥେ, ଜାଗରେ ଧୀରେ
ଏଇ ଭାରତେର ମହାମାନବେର ସାଗର-ତୀରେ"...

-ରବୀନ୍ଦ୍ରନାଥ ଠାକୁର

ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର (୧୮୬୧-୧୯୪୧) ତାଙ୍କର କବିତାଗ୍ରନ୍ଥ ଗୀତାଞ୍ଜଳି ପାଇଁ ୧୯୧୩ ମସିହାରେ ମର୍ଯ୍ୟାଦାଜନକ ନୋବେଲ୍ ପୁରସ୍କାର ପ୍ରାପ୍ତ ହୁଅନ୍ତି । ତାଙ୍କ ରଚନା- 'ଜନଗଣ-ମନ-ଅଧିନାୟକ...' ଏବେ ଆମର ଜାତୀୟ ସଂଗୀତ । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଶାନ୍ତିନିକେତନ ଆଜି ପୃଥିବି ବିଖ୍ୟାତ ଶିକ୍ଷାକେନ୍ଦ୍ର । ଏକ ଖ୍ୟାତିସମ୍ପନ୍ନ ବିଶ୍ୱବିଦ୍ୟାଳୟ । ଏଇ ମହାକବି ନିଜର ଜମିଦାରୀ ବୁଝାଶୁଝା ପାଇଁ ସନ ୧୮୭୫, ୧୮୯୧, ୧୮୯୩, ମସିହାରେ ଓଡ଼ିଶା ଆସିଥିଲେ, ତାଙ୍କର ଶେଷ ଗସ୍ତ ଥିଲା ୧୯୩୯ ମସିହାରେ ।

ଆଲୋଚ୍ୟ ରବୀନ୍ଦ୍ରନାଥ ଠାକୁର କଲିକତା ମହାନଗରୀରେ ସ୍ଥିତ ଜୋଡ଼ାସାଙ୍କୋର ବିଶିଷ୍ଟ ଧନିକ ପ୍ରିନ୍ସ ଦ୍ୱାରକାନାଥ ଠାକୁରଙ୍କ ନାତି ଓ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କର ସୁପୁତ୍ର ଭାବେ ୧୮୬୧ ମସିହା ମଇମାସ ୦୭ ତାରିଖରେ ଜନ୍ମଲାଭ କରିଥିଲେ । ମାଆ ଶାରଦା ଦେବୀ ଥିଲେ ବଡ଼ଘରର ଝିଅ ତଥା ବଡ଼-କାର୍ଯ୍ୟବ୍ୟସ୍ତ ପରିବାରର ବୋହୂ ।

ପିଲାଦିନୁ ରବୀନ୍ଦ୍ରଙ୍କର କବି ପ୍ରତିଭାର ଉନ୍ମେଷ ଘଟିଥିଲା । କବିଙ୍କର ଆଦ୍ୟ ରଚନା ସବୁ ତାଙ୍କ ପାରିବାରିକ ପତ୍ରିକାରେ ପ୍ରକାଶିତ ହୋଇଥିଲା । ତାଙ୍କ ବଡ଼ଭାଇ ସତ୍ୟେନ୍ଦ୍ରନାଥ ଠାକୁର ଇଂଲଣ୍ଡରେ ରହୁଥିବାବେଳେ କବି ସେଠାରେ ରହି ଇଂରାଜୀ ଓ ଲାଟିନ୍ ଭାଷାରେ ଦକ୍ଷତାର୍ଜନ କରିଥିଲେ । ସେ ଗୀତ, କବିତା, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ନାଟକ ଆଦି ବିଭିନ୍ନ କିସମର ସାହିତ୍ୟ ସଂରଚନା ଛାଡ଼ି ଯାଇଛନ୍ତି ।

କବି ରବୀନ୍ଦ୍ରଙ୍କ ପୂର୍ବପୁରୁଷ ନୀଳମଣି ଠାକୁର ଅଷ୍ଟାଦଶ ଶତକର ଶେଷ ଆଡ଼କୁ ବ୍ରିଟିଶ ସରକାରଙ୍କର ସିରସ୍ତାଦାର ହୋଇ କଟକ ଆସିଥିଲେ । ଖ୍ରୀ.ଅ ୧୮୪୦ରେ ରବୀନ୍ଦ୍ରଙ୍କ ପିତାମହ ପ୍ରିନ୍ସ ଦ୍ୱାରକାନାଥ ଠାକୁର କଟକ ଜିଲ୍ଲାର ପଣ୍ଡୁଆ ଜମିଦାରୀ (ଏବେ ପଣ୍ଡୁଆ

ହେଲା ଜଗତସିଂହପୁର ଜିଲ୍ଲା ଅନ୍ତର୍ଗତ) କିଣି ନିଜ ଅଧିକାରକୁ ନେଇଥିଲେ । ଓଡ଼ିଶାର ତତ୍କାଳୀନ ରାଜଧାନୀ କଟକର ତୁଳସୀପୁର ଅଞ୍ଚଳରେ ଦ୍ୱାରକାନାଥଙ୍କ ଭବ୍ୟ ପ୍ରାସାଦ ଥିଲା ଯାହାର ନାମ ଥିଲା ନିରଲା ଭବନ । ରବୀନ୍ଦ୍ରନାଥ ମଧ ସେଥିରେ ରହୁଥିବାର ଜଣାଯାଏ ।

ରବୀନ୍ଦ୍ରଙ୍କ ପିତା ମହର୍ଷି ଦେବେନ୍ଦ୍ରନାଥ ୧୮୫୧ ମସିହାରେ ଓଡ଼ିଶା ଆସି ପଣ୍ଡୁଆ ଜମିଦାରୀ ତଦାରଖ କରି ପୁରୀ ଭ୍ରମଣ ସାରି କଲିକତା ଫେରିଯାଇଥିଲେ । ସନ ୧୮୭୫, ୩୧ ଜୁଲାଇ 'ଉତ୍କଳ ଦୀପିକା'ରୁ ସୂଚନା ମିଳେ ଯେ ଦେବେନ୍ଦ୍ରନାଥ ଠାକୁରଙ୍କର ଅର୍ଥାନୁକୂଲ୍ୟରେ କଟକ କଲେଜ (ଆଜିର ରେଭେନ୍ସା କଲେଜ ବା ରେଭେନ୍ସା ବିଶ୍ୱବିଦ୍ୟାଳୟ, କଟକ)ରେ ସ୍ନାତକ ଶ୍ରେଣୀ ପ୍ରତିଷ୍ଠା ହୋଇଥିଲା । ତାଙ୍କ ଆତ୍ମଜୀବନୀରେ ପଣ୍ଡୁଆ ଜମିଦାରୀ ଏବଂ ଓଡ଼ିଶା ସମ୍ପର୍କରେ ସ୍ମୃତିଚାରଣ ହୋଇଥିବାର ସୂଚନା ମିଳେ । ଉତ୍ତରାଧିକାର ସୂତ୍ରରେ ରବୀନ୍ଦ୍ରନାଥ ହୋଇଥିଲେ ପଣ୍ଡୁଆ ଜମିଦାରୀର ମାଲିକ । ତା'ର ଦେଖାଶୁଣା ପାଇଁ ସେ ସସ୍ତ୍ରୀକ (୧୮୯୧ ଓ ୧୮୯୩ ମସିହାରେ) ଆସିଥିବାର ଜଣାଯାଏ । ସେ କାଳରେ ଜଳପଥରେ ଯାତ୍ରା ସହଜ ଥିଲା ।

କବି ଡଙ୍ଗାରେ, ତହିଁ ଉତ୍ତାରୁ ସବାରୀରେ ପଣ୍ଡୁଆକୁ ଯିବା-ଅସିବା କରୁଥିଲେ । ଅଦ୍ୟାବଧି ସେଠାରେ ଘର ଓ ଚଉଁରାର ଭଗ୍ନାବଶେଷ ଦେଖିବାକୁ ମିଳେ । କବି ସସ୍ତ୍ରୀକ ରହୁଥିବା ବେଳର ସେବାକାରୀମାନେ କବି ପତ୍ନୀଙ୍କ ଉଦାରପଣିଆର ଦୃଷ୍ଟାନ୍ତ ଦିଅନ୍ତି ।

ଓଡ଼ିଶାର ସାଗରତଟୀୟ ସୌନ୍ଦର୍ଯ୍ୟ, ଘନ ସବୁଜିମା କବି ରବୀନ୍ଦ୍ରଙ୍କ ରଚନାକୁ ପ୍ରଭାବିତ କରିଥିବା କଥା ଗବେଷକମାନେ କହନ୍ତି । ତାଙ୍କର ସୁପ୍ରସିଦ୍ଧ ଗୀତିନାଟ୍ୟ ଚିତ୍ରାଙ୍ଗଦା ଏଇ ଓଡ଼ିଶାରେ ବିରଚିତ ହୋଇଥିବାର ଜଣାଯାଏ । ସନ ୧୯୦୨ ମସିହାରେ କବି ରବୀନ୍ଦ୍ରନାଥ ପୁରୀରେ ଜମିକିଣି ପ୍ରାସାଦ ନିର୍ମାଣ କରିଥିଲେ । ଘରର ନାମ ରଖିଥିଲେ- ପାଥାରପୁରୀ । ପ୍ରକାଶ ଥାଉ କି ବଙ୍ଗଳାଭାଷାରେ ପାଥାର ଶବ୍ଦର ଅର୍ଥ ହେଲା ସମୁଦ୍ର । କବି ବେଳେ ବେଳେ ସେଇ ପାଥାରପୁରୀରେ ଆସି ରହୁଥିଲେ । ଏବେ ସେହି ପ୍ରାସାଦ ହେଲା ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟର ଛାତ୍ରାବାସ ।

ସନ ୧୯୩୬, ଏପ୍ରିଲ୍ ପହିଲା । ଓଡ଼ିଶା ହେଲା ସ୍ୱତନ୍ତ୍ର ପ୍ରଦେଶ । ଏହାର ପ୍ରଧାନମନ୍ତ୍ରୀ (ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ପଦ ସହ ସମାନ) ୧୯୩୯ ବେଳକୁ ଥିଲେ ବିଶ୍ୱନାଥ ଦାସ । ତାଙ୍କର ନିମନ୍ତ୍ରଣ କ୍ରମେ କବି ରବୀନ୍ଦ୍ରନାଥ ୧୯୩୯, ଏପ୍ରିଲ୍ ୧୯ ତାରିଖରେ ପୁରୀରେ ପହଞ୍ଚି ସେଠାକାର ସରକାରୀ ଭ୍ରମଣୀଗୃହରେ (Circuit House) ରହୁଥିଲେ ।

ପୁରୀର ଠାକୁରରାଜା ଗଜପତି ଶ୍ରୀ ଶ୍ରୀ ରାମଚନ୍ଦ୍ର ଦେବ ତା, ୨୮-ଏପ୍ରିଲ୍-

୧୯୩୯ରେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କୁ "ପରମଗୁରୁ" ଉପାଧିରେ ଭୂଷିତକରି ଶ୍ରୀଜଗନ୍ନାଥ ମନ୍ଦିରର ଅଖଣ୍ଡ ସେବା ଅଧିକାରପତ୍ର ଦାନ କରିଥିଲେ । ଗଜପତିଙ୍କ ପ୍ରଦତ୍ତ ସନନ୍ଦର ଝଲକ ନିମ୍ନରେ ପ୍ରଦତ୍ତ; ଯଥା:-

ଭାରତ କବିକୁଳ-ତିଳକ ବିଶ୍ୱବରେଣ୍ୟ ସୁଧୀପ୍ରବର ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କର ଅସାଧାରଣ କବି ପ୍ରତିଭା ସସାଗରା ପ୍ରାଚ୍ୟ-ପାଶ୍ଚାତ୍ୟ ଧରାପୃଷ୍ଠରେ ପ୍ରାଚୀନ ଆର୍ଯ୍ୟବିଭବ ମଣ୍ଡିତ ଭାରତବର୍ଷଙ୍କୁ ଦେଶୀୟ ସାହିତ୍ୟକଳା ଉତ୍କର୍ଷ ସାଧନଦ୍ୱାରା ଗୌରବମଣ୍ଡିତ କରିଥିବାରୁ ବିଶ୍ୱକବିଙ୍କୁ ଆମ୍ଭେ ଆନନ୍ଦିତ ହୋଇ ଆଜି ଏଇ ସର୍ବଧର୍ମ ସମନ୍ୱିତ ନୀଳାଚଳ ଧାମରେ ପରମଗୁରୁ ଉପାଧିରେ ଭୂଷିତ କରି ଶାଢ଼ୀ-ଶିରୋପା ଆଜ୍ଞା ଦେଲୁ । ଏ ପଦ ଅମଳ କରିବେ । କେହି ଅଟକ ନ କରିବେ ।    ॥ ଇତି ॥

**ପନ୍ଦରଅଙ୍କ, ବୈଶାଖ ପନ୍ଦରଦିନ ନବମୀ ଶୁକ୍ରବାର,**
**ସ୍ନ ୧୩୪୬ ସାଲ ଇଂ ତା ୨୮-୪-୧୯୩୯**

କବିଙ୍କର ସେଇ ରହଣିକାଳରେ ମଇ ୦୮, ୧୯୩୯ଦିନ ଓଡ଼ିଶାର ନାରୀସଂଘ ପକ୍ଷରୁ ତାଙ୍କୁ ସ୍ୱାଗତ କରାଯାଇଥିଲା । ତା'ପରଦିନ ଅର୍ଥାତ୍ ମଇ ୦୯ ତାରିଖରେ ତାଙ୍କର ୭୮ତମ ଜନ୍ମଦିନ ଅତି ଆଗ୍ରହ ଓ ଉତ୍ସାହର ସହିତ ପରିପାଳିତ କରାଯାଇଥିଲା । ପୁରୀର ସଂସ୍କୃତ ମହାବିଦ୍ୟାଳୟର ବିଦ୍ୱାନମଣ୍ଡଳୀ ବେଦମନ୍ତ୍ର ଗାନରେ କବିଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ସେତେବେଳେ ପୁରୀ ପୌରପାଳିକାର ସଭାପତି ଥିଲେ ଓକିଲ ତଥା ବିଶିଷ୍ଟ ଲେଖକ ଗୋପାଳଚନ୍ଦ୍ର ପ୍ରହରାଜ । ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ପ୍ରଣେତା ଭାବେ ସେ ବିଖ୍ୟାତ । ସେ ବିଶ୍ୱକବିଙ୍କୁ ଏକସେଟ୍ ପ୍ରୋକ୍ତ ଭାଷାକୋଷ ସହ ରୂପାର ସୂକ୍ଷ୍ମ କାରୁକାର୍ଯ୍ୟଭରା ତାରକସୀ ବାକ୍ସଟିଏ ଜନ୍ମଦିନର ଉପହାର ଦେଇଥିଲେ । ପଣ୍ଡିତ ରଘୁନାଥ ମିଶ୍ର (କବି ତଥା ରାଜନେତା ଗୋଦାବରୀଶ ମିଶ୍ର (ବାଣପୁର)ଙ୍କ ସୁପୁତ୍ର) ସଂସ୍କୃତରେ ପ୍ରସ୍ତୁତ ଏକ ମାନପତ୍ର ସମର୍ପଣ କରିଥିଲେ । ନାରୀନେତ୍ରୀ ସରଳାଦେବୀ ଓଡ଼ିଆ ଭାଷାରେ ଜନ୍ମଦିନର ଶୁଭେଚ୍ଛା ଜଣାଇଥିଲେ । ଏଥି ସହିତ ସେ'କାଳର ଦୁଇ ଉଦୀୟମାନ କବି, ଯଥା:- ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ (ପୁରୀ), ଶ୍ରୀ ଚନ୍ଦ୍ରଶେଖର ଦାସ (ଯାଜପୁର) ସ୍ୱରଚନା ସଭାରେ ଆବୃତ୍ତି କରିଥିଲେ । ସେ ଦୁହିଁଙ୍କର କବିତା ଭେଟି ରବୀନ୍ଦ୍ରନାଥଙ୍କୁ ଉଦ୍‌ବେଳିତ କରିଥିଲା । ଉତ୍ତରରେ ବିଶ୍ୱକବି ସେମାନଙ୍କୁ କବିତା ଜରିଆରେ ଆଶିଷ ପ୍ରଦାନ କରିଥିଲେ । ପୁନଶ୍ଚ ପ୍ରୋକ୍ତ କାଳିନ୍ଦୀଚରଣ ଓ ଚନ୍ଦ୍ରଶେଖର ବଙ୍ଗଳାଭାଷାରେ କେତେଗୋଟି ପଦ ରଚନା କରି ବିଶ୍ୱକବିଙ୍କୁ ଶୁଣାଇଥିଲେ । ତାଙ୍କର ମନ୍ତବ୍ୟ ଥିଲା- "ଓଡ଼ିଆ ଓ ବଙ୍ଗଳାଭାଷା ମଧ୍ୟରେ ସ୍ନେହବନ୍ଧନ ରହିଛି ।"

କବୀନ୍ଦ୍ର ରବୀନ୍ଦ୍ରନାଥ ଜନ୍ମଦିନର ସମ୍ବର୍ଦ୍ଧନା-ଉତ୍ତରରେ ସନ୍ତୋଷ ପ୍ରକାଶ କରି

କହିଥିଲେ- "ପୃଥିବୀର ନାନାଦେଶରେ ନାନାରୂପେ ମୁଁ ସମ୍ବର୍ଦ୍ଧିତ ହୋଇଛି; କିନ୍ତୁ ଓଡ଼ିଶାରେ ଆଜି ପାରମ୍ପରିକ ହିନ୍ଦୁ ପ୍ରଥାରେ ଯେଉଁଭଳି ଭାବରେ ମୋତେ ସ୍ୱାଗତ କରାଯାଇଛି ସେଥିରେ ମୁଁ ଅଭିଭୂତ । ଏହା ଅଭୂତପୂର୍ବ ।" ଏଥି ସହିତ ଇଂରାଜୀ ଭାଷାରେ ତାଙ୍କର ଅଭିବ୍ୟକ୍ତି ଥିଲା-

"I belong also to Orissa.I entertain good will, love, and affection for the people of Orissa."

ଏଇ ସବୁ ଅନୁଭୂତି-ଅଭିଜ୍ଞତାକୁ ରବୀନ୍ଦ୍ରନାଥ ତାଙ୍କର ପୂର୍ବତନ ସଚିବ ତଥା ଲେଖକ ଅମିୟ ଚକ୍ରବର୍ତ୍ତୀଙ୍କୁ ଜଣାଇଥିଲେ । ସେଥିରେ ସେ ଉଲ୍ଲେଖ କରିଥିଲେ କି ପୂର୍ବରୁ ଓଡ଼ିଶାର ଜନସାଧାରଣଙ୍କ ଶ୍ରଦ୍ଧା ଓ ଦକ୍ଷତା ସମ୍ପର୍କରେ ତାଙ୍କର ଯେଉଁ ଧାରଣା ଥିଲା ତାହା ତତ୍କାଳର ପ୍ରତ୍ୟକ୍ଷାନୁଭୂତିରେ ଦୃଢ଼ିଭୂତ ହୋଇଅଛି ।

କବି ସେଥର ପାଖାପାଖି ଏକମାସ ଓଡ଼ିଶାରେ (ପୁରୀରେ) ଅବସ୍ଥାନ କରିଥିଲେ । ସେଥି ଭିତରେ ସେ ଚାରିଗୋଟି ସ୍ମରଣୀୟ କବିତା ଲେଖିଥିଲେ । ସେଗୁଡିକ ହେଲା ।

(୧) ପ୍ରବାସୀ (୨) ଅତ୍ୟୁକ୍ତି

(୩) ଜନ୍ମଦିନ (୪) ଏପାରେ ସେ ପାରେ

ସେ ମଇମାସ ଦ୍ୱିତୀୟ ସପ୍ତାହରେ ତାଙ୍କର ପୁତୁରା ବଳେନ୍ଦ୍ରନାଥ ଠାକୁରଙ୍କ ସହ ମନ୍ଦିରମାଳିନୀ ଭୁବନେଶ୍ୱରର କେତେକ ଦର୍ଶନୀୟ ସ୍ଥାନ, ଖଣ୍ଡଗିରି ଗୁମ୍ଫା ଆଦି ଦେଖି କଲିକତା ଫେରିଥିଲେ । ଏହା ଥିଲା ତାଙ୍କର ଶେଷ ଓଡ଼ିଶା ଗସ୍ତ । ସନ ୧୯୪୧, ଜୁଲାଇରେ ତାଙ୍କର ଦେହାନ୍ତ ହୋଇଥିଲା ।

ଗୀତାଞ୍ଜଳିକୁ ରବୀନ୍ଦ୍ରନାଥଙ୍କର ଶ୍ରେଷ୍ଠକୃତି ଭାବେ ଗ୍ରହଣ କରାଯାଏ । ଭକ୍ତକବି ମଧୁସୂଦନ ରାଓଙ୍କର "କୁସୁମାଞ୍ଜଳି" ପ୍ରୋକ୍ତ ଗୀତାଞ୍ଜଳି ଦ୍ୱାରା ପ୍ରଭାବିତ ବୋଲି ଗବେଷକମାନେ ମତ ଦିଅନ୍ତି । ସେହିପରି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ରଚନା "ଜୀବନ ସଂଗୀତ"ରେ ମଧ୍ୟ ଗୀତାଞ୍ଜଳିର ପ୍ରେରଣା ଅନୁଭୂତ ହୁଏ । ସର୍ବୋପରି 'ଜନଗଣ-ମନ-ଅଧିନାୟକ...' ଗୀତରେ ଉତ୍କଳ ଶବ୍ଦର ପ୍ରୟୋଗରୁ ବିଶ୍ୱକବିଙ୍କର ଉତ୍କଳ-ପ୍ରୀତି ଆକଳିତ । କବି ରବୀନ୍ଦ୍ରନାଥଙ୍କୁ ଆମ୍ଭର ବିନମ୍ର ପ୍ରଣାମ ।

*୪୨୬, ସେକ୍ଟର-୨*
*ନୀଳାଦ୍ରିବିହାର, ଭୁବନେଶ୍ୱର-୨୧*
*ଫୋନ୍-୮୭୬୩୦୭୦୦୬୪*

# ନାରୀର ଭୂମିକା

ଶ୍ରୀମତୀ ବନଲତା ମିଶ୍ର (୧୯୩)

ପୁରୁଷ ହେଉ ବା ନାରୀ ହେଉ, ଗୋଟିଏର ଅନୁପସ୍ଥିତିରେ ସୃଷ୍ଟି ଅସମ୍ଭବ। ତ୍ରିଗୁଣାତ୍ମକ ଶକ୍ତିକୁ ଆଧାର ନକରିବା ପର୍ଯ୍ୟନ୍ତ ସୃଷ୍ଟି ହୋଇପାରିବ ନାହିଁ। ସୃଷ୍ଟିର ଆରମ୍ଭ ପୁରୁଷ ଓ ନାରୀର ସହଯୋଗିତାକୁ ନେଇ ଗତିଶୀଳ ହୋଇଛି, ସେଇ ପରିପ୍ରେକ୍ଷୀରେ ପୁରୁଷ ଏବଂ ନାରୀ ଉଭୟଙ୍କର ଭିତରେ ସେଇ ଏକ ଆତ୍ମା ବିରାଜିତ।

ଏପରି କ୍ଷେତ୍ରରେ କିଏ ବଡ଼ କିଏ ସାନ, କାହାର ଭୂମିକା କେତେ ପ୍ରଶ୍ନ ଉଠୁନାହିଁ। ସୃଷ୍ଟିକର୍ତ୍ତାଙ୍କର ଲୀଳାଖେଳାର ମାଧୁର୍ଯ୍ୟ ପାଇଁ ଉଭୟଙ୍କର ସ୍ଥିତି ଅପରିହାର୍ଯ୍ୟ। କାର୍ଯ୍ୟ ଓ କାରଣ, କାରଣ ଓ କାର୍ଯ୍ୟପରି ପୁରୁଷ ଓ ସ୍ତ୍ରୀର ଭୂମିକା ପରସ୍ପରର ପରିପୁରକ। କାର୍ଯ୍ୟ ଓ କାରଣ ଆସିବାମାନେ ଗୁଣାତ୍ମକ ନିର୍ଣ୍ଣୟ ଆପେ ଆପେ ଜଡ଼ିତ ହେବ।

ସୁକ୍ଷ୍ମାତିସୁକ୍ଷ୍ମ ଦୃଷ୍ଟିକୋଣରୁ ବିଚାର କଲେ ମନେହୁଏ ଯେ ବିଧି ଯେପରି ନାରୀକୁ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଦୁଃଖ ସହିବା ପାଇଁ ପଠାଇଛି। ଜନ୍ମ ହେବା ପୂର୍ବରୁ ସେମାନଙ୍କର ସ୍ୱାଭାବିକ ମୌଳିକ ଧର୍ମ ନିର୍ଦ୍ଧାରିତ ହୋଇସାରିଛି। ପୁରୁଷର ରୁକ୍ଷ ବଳିଷ୍ଠ ଅଙ୍ଗ ସୌଷ୍ଠଭ ତା' ପ୍ରତି ବିପଦର କାରଣ ହୋଇନଥାଏ। ମାତ୍ର କୋମଳାଙ୍ଗୀ ନାରୀର ସୁନ୍ଦର ଅଙ୍ଗରେଖା ତା'ର ବିପଦର କାରଣ ହୋଇଥାଏ। ନାରୀର ଠାଣି ଚାହାଣୀ ନମ୍ରତା ଠିକ୍ ଲାଜକୁଳି ଲତା ପରି। ଛୁଇଁଦେଲେ ଝାଉଁଳିପଡ଼ିବ, ତା'ର ସରଳ ଚାତୁରୀ ଶୋଭାକୁ ଦେଖି ପୁରୁଷ ସର୍ବଦା ଆକର୍ଷିତ ହୋଇଥାଏ। ତା'ମାନେ ନୁହେଁ ଯେ ତାକୁ ବଳାତ୍କାର କରିବା। ସଂଯତ ପୁରୁଷ ଓ ସଂଯତ ନାରୀ ଏ ଧରାକୁ 'ସ୍ୱର୍ଗରେ' ପରିଣତ କରିବାର ସାମର୍ଥ୍ୟ ଅର୍ଜନ କରିଥାଆନ୍ତି। ଆଜି ସଂଯତ ଭାବନା ପୁରୁଷନାରୀ ନିର୍ବିଶେଷରେ ଯୁବ ଗୋଷ୍ଠୀର ମନ ମଧ୍ୟରୁ ଏକପ୍ରକାର ଅନ୍ତର୍ନିତ ହୋଇଯାଇଛି।

ସତ୍ୟ ଯୁଗରେ ପୁରୁଷ ଓ ନାରୀର ତୁଳନାତ୍ମକ ବିଶ୍ଳେଷଣର ଆବଶ୍ୟକତା ନଥିଲା। ଯେହେତୁ ପ୍ରତ୍ୟେକର କାର୍ଯ୍ୟ ସତ୍ୟ ଉପରେ ଏବଂ ସକାରାତ୍ମକ କର୍ମ ଉପରେ ପର୍ଯ୍ୟବେକ୍ଷିତ ଥିଲା। ଯେ ନିନ୍ଦନୀୟ କର୍ମ କରୁଥିଲା, ସେ ଲୋକଲୋଚନରେ ଦଣ୍ଡିତ ହେଉଥିଲା। ଏପରିକି ଦେବତାମାନେ ନକାରାତ୍ମକ କର୍ମ କଲେ ପ୍ରତ୍ୟକ୍ଷ ବା ପରୋକ୍ଷରେ ଦଣ୍ଡିତ ହେଉଥିଲେ। "ଯତ୍ର ନାର୍ଯ୍ୟେଷୁପୂଜ୍ୟତେ, ତତ୍ରରମନ୍ତି ଦେବତା" ଉକ୍ତିଟି ଅକ୍ଷରେ ଅକ୍ଷରେ ପାଳିତ ହେଉଥିଲା। ତ୍ରେତୟା ଯୁଗରେ ବ୍ୟକ୍ତି ବିଶେଷକୁ ଗୁଣାତ୍ମକ ଦୃଷ୍ଟିରୁ ବିଚାର ନ କରି ପୁରୁଷ ବା ନାରୀ ବିଚାରରେ ନ୍ୟାୟ ଓ ଅନ୍ୟାୟ ନିର୍ଦ୍ଧାରଣ କରିବା ପରି କୁପ୍ରଥାର

ବୀଜ ବପନ ହୋଇଥିଲା । ସେଇଠୁ ମଣିଷ ମନରେ କପଟତା ପରି ନିନ୍ଦନୀୟ ଗୁଣମାନ ଉଙ୍କିମାରିଲା । "ପରମାତ୍ମା" ରାମ ରୂପରେ ଜନ୍ମନେଇ ନିଜେ କଷ୍ଟ ସହି, ମଣିଷର ଧର୍ମ କର୍ମ ସତ୍ୟ ଆଦର୍ଶ ଓ ମର୍ଯ୍ୟାଦା ଉପରେ ପର୍ଯ୍ୟବେକ୍ଷିତ ହେବାର ଉଦାହରଣ ସୃଷ୍ଟି କରିଥିଲେ । ପ୍ରଜାଙ୍କ ଖୁସି ପାଇଁ, ସେ ନିଜର ପ୍ରାଣପ୍ରିୟା ପତ୍ନୀ ସୀତାଙ୍କୁ ପରିତ୍ୟାଗ କରିଥିଲେ । ସତୀ ସୀତା ରାମଙ୍କୁ ଏଥିପାଇଁ କେବେବି ଦୋଷ ଦେଇନଥିଲେ । ସେ ସାରା ଜୀବନ ରାମଙ୍କ ପାଇଁ ତ୍ୟାଗ କରିଥିଲେ, କଷ୍ଟ ସହିଥିଲେ, ଏକଥା ସମସ୍ତେ ଜାଣନ୍ତି ।

ଦ୍ୱାପର ଯୁଗର ମହାଭାରତ କଥା କିଏ ବା ନ ଜାଣେ । ଯୁଗେ ଯୁଗେ 'ପ୍ରଭୁ'ଙ୍କ ଦ୍ୱାରା ସୃଷ୍ଟ ଜୀବଜଗତ ମଣିଷର ମହିମା ଗାନ ପାଇଁ ଅଭିପ୍ରେତ । ଏକଥା ମାନବ ଜାତି ସମ୍ପୂର୍ଣ୍ଣ ଭୁଲିଯାଇଛି । ସେଥିପାଇଁ ସମାଜରେ ନାରୀର ଏ ଦୟନୀୟ ପରିଣତି । ପ୍ରାକୃତିକ ସୌନ୍ଦର୍ଯ୍ୟର ସଂରକ୍ଷଣ ପରି ନାରୀର ମହନୀୟ ଗୁଣର ସଂରକ୍ଷଣ ପୁରୁଷ ଓ ନାରୀଙ୍କର ଦାୟିତ୍ୱ ।

'ସୃଷ୍ଟିକର୍ତ୍ତା ପ୍ରତ୍ୟେକ ପ୍ରାଣୀଙ୍କୁ ଆତ୍ମରକ୍ଷା ପାଇଁ କିଛିନା କିଛି ବିଶିଷ୍ଟ ଗୁଣ ଦେଇଛନ୍ତି । ପିମ୍ପୁଡ଼ିଠାରେ ଏମିତି ଶକ୍ତି ଅଛି ଯେ, ସେ ହାତୀ ଶୁଣ୍ଢରେ ପଶିଯିବା ପରେ ହାତୀ ଯନ୍ତ୍ରଣାରେ ଛଟପଟ ହୁଏ । ପିମ୍ପୁଡ଼ି ମଣିଷର କାନରେ ପଶିଗଲେ ସେ ଯନ୍ତ୍ରଣାରେ ଚିତ୍କାର କରେ ।

ନାରୀର ସତ୍ୟନିଷ୍ଠା ଓ ପରାକାଷ୍ଠା ତାକୁ ବିପଦରୁ ଉଦ୍ଧାର କରିବା ପାଇଁ ସହାୟକ ହୋଇଥାଏ । ପୁରୁଷ ତା' ପରାକାଷ୍ଠାକୁ ହତାଦର କରି ଆକ୍ରମଣ କରିଥାଏ ।

ବୁଦ୍ଧି ଓ ବିଚାର ଶକ୍ତିର ଉପଯୋଗ ପାଇଁ ଉଭୟେ ସ୍ୱାଧୀନ । ଉଭୟେ ଉଭୟଙ୍କର ପରିପୂରକ ହେବା ପାଇଁ ଚେଷ୍ଟା କଲେ ସମାଜ ବିଶୃଙ୍ଖଳିତ ହୁଅନ୍ତା ନାହିଁ । କାଳେ କାଳେ ନାରୀମନ ଭିତରେ ଗଠନମୂଳକ ମନୋବୃତ୍ତିଟିଏ ଲୁଚି ରହିଥାଏ । ପୁରୁଷ ଅପେକ୍ଷା ନାରୀର କଳାତ୍ମକ ଦୃଷ୍ଟିକୋଣ କମ୍ ନୁହେଁ । ସବୁବେଳେ ନାରୀ ତା'ର କ୍ଷମତା ପରିସରର ସଦୁପଯୋଗ କରିଆସିଛି । ମଣିଷ ଯେବେ ଠାରୁ ଦଳଗତ ଭାବରେ ବାସ କରିବାକୁ ପସନ୍ଦ କଲା, ସେବେଠାରୁ ନାରୀ ପୁରୁଷର ଇଚ୍ଛା ଅନିଚ୍ଛାକୁ ସମ୍ମାନ ଦେଇ ଆସିଛି । ପ୍ରତି ପଦକ୍ଷେପରେ ପୁରୁଷକୁ ସହଯୋଗ କରିଛି । ନାରୀ ସର୍ବଦା ପ୍ରତ୍ୟେକ୍ଷ କାର୍ଯ୍ୟରେ ନିଜକୁ ନିୟୋଜିତ କରେ, ପରୋକ୍ଷରେ ପରିବାରର ସମାଜର ରାଷ୍ଟ୍ରର ହିତ ସାଧନ କରିଥାଏ । ନାରୀର ଧୈର୍ଯ୍ୟଶୀଳତା, ସହିଷ୍ଣୁତା, ତ୍ୟାଗ ବଳରେ ପୁରୁଷର ଜୀବନଯାପନ ପ୍ରଣାଳୀ ପୁଷ୍ଟ ହୋଇଛି । ମୁଁ ଦେଖିଛି ଏବଂ ଅନୁଭବ କରିଛି, ସ୍ୱାଭାବିକ ଭାବରେ ଯେଉଁ ପରିବାରର ମା' ଶୃଙ୍ଖଳିତ, ବିଦୁଷୀ ନମ୍ର ବିଚାରଶୀଳ; ଆଧ୍ୟାତ୍ମବାଦରେ ରୁଚି ରଖିଥାଏ- ସେଇ ପରିବାରର ସନ୍ତାନ ତଦନୁରୂପ ବିଦ୍ୱାନ ନିରପେକ୍ଷ ବିଚାରଶୀଳ ଓ ଉଚ୍ଚଶିକ୍ଷିତ । ନାରୀର ଶିକ୍ଷାଗତ ଯୋଗ୍ୟତା ନଥିଲେ ବି ସନ୍ତାନକୁ ଚାରିତ୍ରିକ ଓ ସୃଙ୍ଖଳିତ ଜୀବନ ପାଇଁ ବିଶେଷ

ଧ୍ୟାନ ଦେଇଥାଏ । ସଂସ୍କାରଯୁକ୍ତ ନାରୀର ପ୍ରେରଣା ସନ୍ତାନସନ୍ତତିଙ୍କୁ ଭଲ ମଣିଷଟିଏ ହେବା ପାଇଁ ସାହାଯ୍ୟ କରିଥାଏ । ସେ ପରିବାରରର ସମସ୍ତଙ୍କର ସ୍ୱାସ୍ଥ୍ୟ ରକ୍ଷା ପ୍ରତି ବିଶେଷ ଧ୍ୟାନ ଦେଇଥାଏ ।

ସନ୍ତାନ ଜନ୍ମ ହେବା ଠାରୁ ବୟପ୍ରାପ୍ତ ଓ ଶିକ୍ଷା ସମାପ୍ତ ହେବା ପର୍ଯ୍ୟନ୍ତ ସମସ୍ତ ଦାୟିତ୍ୱ ମା' ଉପରେ ନ୍ୟସ୍ତ ଥାଏ । ଘରର ମୁରବି ତଥା ପୁରୁଷ ଅର୍ଥ ଉପାର୍ଜନ ପାଇଁ ଅଧିକାଂଶ ସମୟ ବାହାରେ ବିତାଉଥିବାରୁ ସନ୍ତାନର ସମସ୍ତ ଦାୟିତ୍ୱ ମା' ବୁଝେ । ପୁରୁଷ ଓ ସ୍ତ୍ରୀ ଉଭୟେ ଅର୍ଥ ଉପାର୍ଜନ କରୁଥିଲେ ମଧ୍ୟ ଘରର ଯାବତୀୟ ଦାୟିତ୍ୱ ନାରୀ ବହନ କରିଥାଏଁ ।

ଉଚ୍ଚଶିକ୍ଷିତା ତଥା ବୁଦ୍ଧିମତୀ ନାରୀ ବିପଥଗାମୀ ହେବା ଦ୍ୱାରା ତା'ର ପ୍ରଭାବ ସନ୍ତାନସନ୍ତତିଙ୍କ ଉପରେ ପଡ଼ିଥାଏ । ପରିବାର ସମାଜ, ରାଷ୍ଟ୍ର ଧ୍ୱଂସ ମୁଖକୁ ଗତିକରେ ।

ସଭ୍ୟତାର ଅଗ୍ରଗତି ଫଳରେ ନାରୀକୁ ସ୍ୱାଧୀନତା ମିଳିଛି । ତାହା କିନ୍ତୁ ନାରୀ ଶସକ୍ତିକରଣ ପାଇଁ ଯଥେଷ୍ଟ ନୁହେଁ । ଯେ ପର୍ଯ୍ୟନ୍ତ ନାରୀର ଆତ୍ମସମ୍ମାନ ବାଧାପ୍ରାପ୍ତ ହେଉଥିବ, ସେ ପର୍ଯ୍ୟନ୍ତ ନାରୀ ମନର ହୀନମନ୍ୟତା ତାକୁ ଦୁର୍ବଳ କରିଦେଉଥିବ ।

ନାରୀ ନିଜର ସ୍ୱାଧୀନତା ସୁଯୋଗର ସଦୁପଯୋଗ କରି ଗତ କେତେ ଦଶନ୍ଧି ଧରି ପ୍ରତ୍ୟେକ କ୍ଷେତ୍ରରେ ପୁରୁଷର ସମକକ୍ଷ ହୋଇପାରିଛି । ପୌରାଣିକ ଯୁଗ ତଥା ଇତିହାସର ପର୍ଯ୍ୟବେକ୍ଷଣ କଲେ ଜଣାଯାଏ ଯେ, ଆମ ଦେଶର ଅନେକ ନାରୀ ସମାଜ ତଥା ଦେଶ ପାଇଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିବାର ଦେଖାଯାଏ । ବର୍ତ୍ତମାନ ଦେଖାଯାଉଛି ଯେ ଶିକ୍ଷା ଶାସନ ପରି ଅନେକ କ୍ଷେତ୍ରରେ ନାରୀ ପୁରୁଷ ଠାରୁ ଆଗେଇଯାଇଛି ।

ସାଧାରଣତଃ ଦେଖାଯାଏ ଯେ ଝିଅମାନେ ଶାନ୍ତ ସ୍ୱଭାବର ହୋଇଥାନ୍ତି । ମା' ବାପାଙ୍କ କଥା ମାନନ୍ତି । ପୁଅମାନଙ୍କ ସହ ତାଳଦେଇ ମଧ୍ୟବିତ୍ତ ପରିବାରର ଝିଅମାନେ ନିଜ ପରିଶ୍ରମ ଓ ଚରିତ୍ରବତ୍ତାବଳରେ ସାଙ୍ଗଠନିକ ଦକ୍ଷତା ହାସଲ କରୁଛନ୍ତି । ଏହା ସହ୍ୟ କରିନପାରି ନାରୀକୁ ଅବଳା ଦୁର୍ବଳା ପ୍ରମାଣ କରିବା ପାଇଁ ପୁରୁଷ ଯେପରି ବଦ୍ଧପରିକର ହୋଇଛି ।

ସମାଜରେ ବଳାତ୍କାର ପରି ଲଜ୍ୟାଜନକ ଘଟଣା ବଢ଼ିଚାଲିଛି । ପ୍ରକୃତି ରୂପିଣୀ ନାରୀକୁ ଅସମ୍ମାନ କରିବାର ଅଧିକାର ପୁରୁଷର ନାହିଁ । ନାରୀ କେମିତି ଚାଲିବ କେମିତି କଥା କହିବ କିପରି ପୋଷାକ ପିନ୍ଧିବ, କେତେବେଳ ପର୍ଯ୍ୟନ୍ତ ବାହାରେ ବୁଲିବ ଏସବୁ ତା'ର ରୁଚି ଉପରେ ନର୍ଭର କରେ । ଶାସନତନ୍ତ୍ରରେ ସମ୍ବିଧାନରେ ବିନା ବିଚାରରେ ବଳାତ୍କାର ପାଇଁ କଠୋର ଆଇନ ପ୍ରଣୟନ ହେବା ନିହାତି ଜରୁରୀ । ମୃତ୍ୟୁଦଣ୍ଡ ସଦୃଶ ଦଣ୍ଡବିଧାନ ନକରିବା ପର୍ଯ୍ୟନ୍ତ ବଳାତ୍କାରୀଙ୍କ ଦୌରାତ୍ମ୍ୟ କମିବ ନାହିଁ ।

ନାରୀ କୌଣସି ମହତ ଉଦ୍ଦେଶ୍ୟରେ ପରିପୂର୍ତ୍ତି ପାଇଁ କାର୍ଯ୍ୟ କରୁଥିବାବେଳେ ପୁରୁଷଠାରୁ ସାହାଯ୍ୟ ଲୋଡ଼େ । କିନ୍ତୁ ଅନେକ କ୍ଷେତ୍ରରେ ନିରାଶ ହୋଇଥାଏ । ଗରିବ ଝିଅଟିଏ ନିଜ ଚେଷ୍ଟାରେ ସୁଶିକ୍ଷିତା ହେଲେ ପୁରୁଷ ସମାଜର ଚକ୍ଷୁଶୂଳର କାରଣ ହୋଇଥାଏ । ସମାଜର ଗୋଟିଏ ମୁଖ୍ୟ ଅଙ୍ଗକୁ ନିର୍ବୋଧ ପୁରୁଷ ଏହିପରି ଖିନ୍‌ଭିନ୍ କରିଦେଉଛି ।

ଅନେକ କ୍ଷେତ୍ରରେ ନାରୀ ହିଁ ନାରୀର ଶତ୍ରୁ ସାଜିଛି । କେତେକ ସ୍ୱେଚ୍ଛାଚାରୀ ଉଚ୍ଛୃଙ୍ଖଳ ଉଦ୍ଧତ ନାରୀଙ୍କ ଯୋଗୁ ସମ୍ପୂର୍ଣ୍ଣ ନାରୀ ଜାତି ଦୁଃଖ ଭୋଗ କରୁଛନ୍ତି । ନିରୀହ କଳିକା ସବୁ ଫୁଟିବା ଆଗରୁ ପଦ ଦଳିତ ହେଉଛନ୍ତି । "ନାରୀ ସଶକ୍ତିକରଣ" କେବଳ ସଭାସମିତିରେ ସୀମିତ ହେଲେ କିଛି ଲାଭ ନାହିଁ । ତା'ର ସାର୍ଥକତା ପ୍ରତ୍ୟକ୍ଷ ଭାବରେ ପ୍ରତିପାଦିତ କରିବା ପାଇଁ ଯୁଦ୍ଧକାଳୀନ ଭିତ୍ତିରେ ନାରୀ ଜାତିର ସମୂହ ଜାଗରଣ ନିହାତି ଜରୁରୀ । ଆମର ସଂସ୍କୃତି ପରମ୍ପରା ଅନୁସାରେ ଉତ୍ତମ ଗୃହିଣୀ ତ୍ୟାଗର ପ୍ରତିମୂର୍ତ୍ତି ହୋଇଥାଏ । କିନ୍ତୁ ସେ ଜୀବନ ଓ ମୃତ୍ୟୁ ଭିତରେ କିପରି ପେଶି ହେଉଥାଏ, ତାହା କେହି ଲକ୍ଷ୍ୟ କରନ୍ତି ନାହିଁ ।

ନାରୀ ଯେତେ କ୍ଷମତାଶାଳୀ ଜ୍ଞାନୀ ଗୁଣୀ ହୋଇଥିଲେ ବି ଅଫିସ୍‌ରେ ରାସ୍ତାରେ ସବୁଠାରେ ନିଜକୁ ଅସୁରକ୍ଷିତ ମନେକରେ । ଘରେ ବାହାରେ ସବୁଠାରେ ଡରି ଡରି ବଞ୍ଚୁଥାଏ । ଯେକୌଣସି ପ୍ରକାରେ ଆତ୍ମରକ୍ଷାର କୌଶଳ ଶିଖିପାରିଲେ, ତାକୁ ଆଉ ଡରି ଡରି ବଞ୍ଚିବାକୁ ପଡ଼ିବ ନାହିଁ । ପରିବାରର ସମସ୍ତଙ୍କର ଯତ୍ନ ନେବା ପରି, 'ନାରୀ' ନିଜର ଉତ୍ତମ ସ୍ୱାସ୍ଥ୍ୟ ପାଇଁ ବ୍ୟାୟାମ କରିବ, ଯୋଗ ଅଭ୍ୟାସ କରିବ ସନ୍ତୁଳିତ ଆହାର ଗ୍ରହଣ କରିବ ଜୁଡ୍ରୋ କରାଟେ କୁଂଫୁଂ ପରି ଆତ୍ମରକ୍ଷାର କୌଶଳ ଶିକ୍ଷା ଦ୍ୱାରା ନିଜକୁ ରକ୍ଷା କରିପାରିବ । ତେବେ ଯାଇ ସେ କିଛିକାଂଶରେ ନିଜ ସ୍ୱାଧୀନତାର ମାନ ରକ୍ଷାକରି ପାରିବ । ସେଥିପାଇଁ ତା'ର ସମୂହ ଜାଗରଣ ନିହାତି ଜରୁରୀ ।

ଅନେକ ଦିନ ହେଲା ଦେଶରେ ଏକ ନୂତନ ସମସ୍ୟା ଦେଖାଦେଇଛି । ନାରୀ ପୁରୁଷ ଏକତ୍ର ଅନେକ ସମୟ 'ଆଇ.ଟି' ପରି କ୍ଷେତ୍ରରେ କାମ କରୁଛନ୍ତି । ଉଭୟେ ଉଭୟଙ୍କର ସମକକ୍ଷ ହେଉଥିବାରୁ ଏହି ଯୁବଗୋଷ୍ଠୀ ସଂଯମ, ତ୍ୟାଗ ଓ ସହିଷ୍ଣୁତା ପରି ସଦ୍‌ଗୁଣ ଠାରୁ ଦୂରେଇଯାଉଛନ୍ତି ।

ଆଜି ଅଧିକାଂଶ ପରିବାରର ପୁରୁଷ ଓ ସ୍ତ୍ରୀ ଉଭୟ ଅର୍ଥ ଉପାର୍ଜନ କରୁଛନ୍ତି । କେହି କାହାର ମତକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । ଶିକ୍ଷିତ ଗୋଷ୍ଠୀରେ ଛାଡ଼ପତ୍ର ଏକ ସାଧାରଣ ଘଟଣା ହୋଇଯାଇଛି । ଏହା ସମାଜ ଓ ଦେଶ ପାଇଁ ଶୁଭ ସଙ୍କେତ ନୁହେଁ ।

ଯୁଗେ ଯୁଗେ ନାରୀର ତ୍ୟାଗ ଓ ସହିଷ୍ଣୁତାର ସ୍ତୁପ ଉପରେ ପାଦ ରଖି ପୁରୁଷ ଜାତି ସଭ୍ୟତାର ଉତ୍କର୍ଷରେ ପହଞ୍ଚିଛି । ନାରୀ ଓ ପୁରୁଷ ଉଭୟଙ୍କ ଭିତରେ ବୁଝାମଣା ରହିଲେ ସୁଖୀ ପରିବାର ଗଠନ ହୋଇପାରିବ ।

ନାରୀ ନିଜର ଧର୍ମ ଭୁଲିଯିବା ଉଚିତ ନୁହେଁ । ଏତିକି ମନେ ରଖିବା ଉଚିତ ଯେ ସେ ହେଉଛି ପରିବାର ସମାଜ ଓ ଦେଶର ମେରୁଦଣ୍ଡ । ସମାଜର ଉନ୍ନତି ଦେଶର ଅଗ୍ରଗତି ପାଇଁ ନାରୀର ଜନ୍ମ । ଅନ୍ୟାୟର ପ୍ରତିରୋଧ ପାଇଁ ନାରୀ ଜାତି ଅଣ୍ଟାଭିଡ଼ି ଦେଶକୁ ରକ୍ଷା କରିବାର ଉଦାହରଣର ଅଭାବ ନାହିଁ । ନାରୀ ନିଜ ପୁଅର ଦୋଷ ନ ଘୋଡ଼ାଇ ତା'ର ଚରିତ୍ର ସୁଧାରିବାରେ ସହାୟକ ହେବା ପ୍ରଥମ ମାର୍ଗ ।

ପୁରୁଷ ଜାତିର ଅଧୋପତନ ପାଇଁ ନାରୀ ପ୍ରତ୍ୟକ୍ଷ ତଥା ପରୋକ୍ଷରେ ଦାୟୀ, ଏକଥାକୁ ଏଡାଇ ଦେଇ ହେବ ନାହିଁ । ନାରୀ ଜାତିକୁ ମୋର ଏତିକି ନିବେଦନ ଯେ ସେ ସୁପ୍ତ ନରହି ଜାଗ୍ରତ ହେଉ । ପିତାମାତା ପୁତ୍ର ଓ କନ୍ୟା ପ୍ରତି ସମଭାବାପନ୍ନ ହେବା ଉଚିତ । ଏହା ଦ୍ୱାରା କନ୍ୟାର ମନୋବଳ ବୃଦ୍ଧି ପାଇବ । ପୁତ୍ର କୌଣସି ଅସତ୍ କର୍ମ କରିବା ପୂର୍ବରୁ ହୁଏତ ଥରକ ପାଇଁ ଭାବିବ ଯେ ମୁଁ ଏପରି କର୍ମ କରିବା ଉଚିତ ନୁହେଁ । ପୁରୁଷକୁ ସତପଥରେ ପରିଚାଳିତ କରାଇବାର ଦାୟିତ୍ୱ ନାରୀ ଉପରେ ନ୍ୟସ୍ତ ।

କନ୍ୟା ଭୃଣ ହତ୍ୟା ଘଟଣା ଜଣାଇ ଦେଉଛି ଯେ ଭାରତର ପ୍ରତି ନାଗରିକ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ଏଥିପାଇଁ ଦାୟୀ । ପୁତ୍ର ପରି କନ୍ୟା ଏ ସମାଜର ଏକ ଅଙ୍ଗ । ଏପରି କ୍ଷେତ୍ରରେ କନ୍ୟା ସନ୍ତାନଙ୍କର ସଂଖ୍ୟା ଦିନକୁ ଦିନ କମିବାରେ ଲାଗିଛି । ତେଣୁ ଏପରି ଦୁଃସହ ପରିସ୍ଥିତି ଉପୁଜିଛି । ଭୃଣ ହତ୍ୟା ପାଇଁ ଅନେକ କ୍ଷେତ୍ରରେ ନାରୀକୁ ବାଧ କରାଯାଏ ।

ଭୃଣ ହତ୍ୟା ମହାପାପ ପରି ଉକ୍ତିଟିକୁ ଆଜି ସମସ୍ତେ ଭୁଲିଯାଇଛନ୍ତି ।

ଆମ ହିନ୍ଦୁ ଧର୍ମରେ ବିଶ୍ୱାସ ଯେ ଅନ୍ତିମକାଳରେ ପୁତ୍ର ପିତାର କୁଳ ଉଦ୍ଧାର କରିବ । ଏହା ଏକ ପ୍ରାଚୀନ ବିଶ୍ୱାସ । ଏଣୁ ପୁତ୍ର ପାଇଁ ବାପା ମା'ଙ୍କର ଅସୀମ ଦୁର୍ବଳତା । ସେହି ଦୁର୍ବଳତା ମନରୁ ଦୂର କରିବାକୁ ହେବ । ଆଜି ପୁଅ ଝିଅର ଆସନ ସମାନ । ନୂଆ ଯୁଗର ନୂଆ ଆହ୍ୱାନକୁ ସାକାର କରିବାକୁ ହେବ ।

*କ୍ୱାଟର ନଂ-ସି-୩/୮*

*କୋଏଲ ନଗର, ରାଉରକେଲା*

# ବନ୍ଧୁତା

ଯୋଗୀନ୍ଦ୍ରନାଥ ସାହୁ (୫୬୮)

ଅବନ୍ଧୁ ଜୀବନ ଅସୂର୍ଯ୍ୟ ମହୀ ।
ଦେହଧରି କିଏ ପାରିବ ରହି ।

ବାସ୍ତବରେ ସୂର୍ଯ୍ୟ ନଥିଲେ ପୃଥିବୀର ଅସ୍ତିତ୍ୱ ନଥାନ୍ତା । ସେଥିପାଇଁ ସୂର୍ଯ୍ୟଙ୍କୁ ସକଳ ଶକ୍ତିର ଆଧାର ବୋଲି କୁହାଯାଏ । ପ୍ରାଣୀ ଓ ଉଦ୍ଭିଦ ଜଗତ, ଜଡ଼ ଚେତନ ସମସ୍ତଙ୍କର ବଞ୍ଚିବା ସମ୍ଭବ ହୋଇଛି ସୂର୍ଯ୍ୟଙ୍କ ଯୋଗୁଁ । ସୂର୍ଯ୍ୟ ଯେପରି ସମଗ୍ର ଜୀବଜଗତ ପାଇଁ ଲୋଡା, ସେହିପରି ମଣିଷ ଜୀବନରେ ସବୁ କ୍ଷେତ୍ରରେ ବନ୍ଧୁଟିଏ ଲୋଡ଼ା । ବରଷା ନହେଲେ ନଈ ଶୁଖିଯାଏ ସିନା ଉଭେଇଯାଏନା । ସାଥୀଟିଏ ନଥିଲେ ମଣିଷ ନିସଙ୍ଗ ହୋଇ ବଞ୍ଚିପାରେ ସତ, ମାତ୍ର ସେ ବଞ୍ଚିବାରେ, କିଛିମାନେ ନଥାଏ । ସେଥିପାଇଁ କୁହାଯାଇଛି- 'ପୃଥିବୀରୁ କେବେ ଶୁଖିଯାଏ ନାହିଁ ଭଲ ପାଇବାର ନଈ- ସେଥିପାଇଁ ବୋଧେ ଏତେ ଦୁଃଖ ପରେ ବଞ୍ଚିବାକୁ ଇଚ୍ଛା ଭାଇ ।'

ମଣିଷ ଶିଶୁଟି ଜନ୍ମ ହେବାପରେ ସ୍ନେହ, ଭଲ ପାଇବା ଖୋଜେ । ଶେଯରେ ଥାଇ ବି ସାଥୀଟିଏ ଖୋଜେ । ପ୍ରଥମେ ମାଆ ଏବଂ ପରେ 'ବାପା' ଶିଶୁଟିର ସାଙ୍ଗ ବନିଯାନ୍ତି । କ୍ରମେ ଧୂଳିଘର ଖେଳିବାକୁ ମା' କୋଳ ଛାଡ଼ି ଦାଣ୍ଡକୁ ଓହ୍ଲାଇ ଆସେ । ସମବୟସର ପୁଅ/ଝିଅମାନେ ତା'ର ସାଥୀ / ବନ୍ଧୁ ପାଲଟିଯାଆନ୍ତି । ଟିକେ ବଡ଼ ହୋଇଗଲେ ଝିଅମାନେ ପୁଅମାନଙ୍କ ସହ ମିଶିବାକୁ ଲାଜ କରନ୍ତି । ସେଇଠୁ ଆରମ୍ଭ ହୁଏ ଦଳଗତ ମନୋଭାବ । କୈଶୋରର ସାଥୀ ଯୌବନରେ ବଦଳି ଯାଆନ୍ତି । ଯୌବନରେ ପ୍ରତ୍ୟେକ ଜଣେ ଜଣେ ବିପରୀତ ଲିଙ୍ଗର ଜୀବନସାଥୀ ଖୋଜନ୍ତି । ଭଲ ପାଇବା ଦ୍ୱାରା ହେଉ ବା ବିବାହ ବନ୍ଧନ ଦ୍ୱାରା ଜୀବନସାଥୀ ନିର୍ବାଚିତ ହୋଇଯାନ୍ତି । ଯୌବନ ପରେ ଆସେ ବାର୍ଦ୍ଧକ୍ୟ । ଏ ସମୟରେ ପୁଅ/ଝିଅ ଏବଂ ପରେ ପରେ ନାତି/ନାତୁଣୀ ଆଶାବାଡି ବା ସାଥୀ ପାଲଟିଯାନ୍ତି । କେତେକ ବାର୍ଦ୍ଧକ୍ୟରେ ସଂସାର ଜଞ୍ଜାଳ ଛାଡିଦେବା ଶ୍ରୀହରିଙ୍କ ନାମ ଭଜନ କୀର୍ତ୍ତନରେ ସମୟ କଟାନ୍ତି । ପରଂବ୍ରହ୍ମ ଭଗବାନଙ୍କୁ ଜୀବନର ସର୍ବଶେଷ ସାଥୀ ଭାବେ ବାଛି ନିଅନ୍ତି । ଏହିପରି ଜୀବନର ସକଳ କ୍ଷେତ୍ରରେ ବନ୍ଧୁତା ଯେ ଅପରିହାର୍ଯ୍ୟ ଏହା ନିଃସନ୍ଦେହ । ଏଥିପାଇଁ ତ ଦେବତାମାନେ ବି ସ୍ୱର୍ଗରୁ ଧୂଳିଧରଣୀକୁ ଓହ୍ଲାଇ ଆସନ୍ତି ଟିକେ ପ୍ରେମ, ସ୍ନେହ ସାଗରରେ ଅବଗାହନ କରିବାକୁ । Alexzander Shelkark କହିଛନ୍ତି-

"Society, friendship and love
Divinely bestowed on man"

ଯାହାର ଓଡ଼ିଆ ମର୍ମ ହେଉଛି:- କାହିଁ ବନ୍ଧୁତା କାହିଁ ପ୍ରେମ ସୁନ୍ଦର
ଯା'ର ପ୍ରାପତ ଲାଗି ଦେବତା ନର ।

ସ୍ୱର୍ଗରେ ମର୍ତ୍ତ୍ୟପରି ବନ୍ଧୁତା ଖୋଜିଲେ ମିଳେନା । ସାଂସାରିକ ପ୍ରେମ ଓ ବନ୍ଧୁତା ଏତେ ନିବିଡ ଯେ ମୋକ୍ଷ କାମନା ଏଠାରେ ତୁଚ୍ଛ ମନେ ହୁଏ । ବିଶେଷକରି ଜୀବ ଯେତେବେଳେ ପରମାତ୍ମାଙ୍କ ସହ ବ୍ରହ୍ମଲୀନ ହୋଇଯାଏ, ସେତେବେଳେ ପ୍ରେମଭାବ ବା ରାଧାଭାବ ଆଉ ସମ୍ଭବ ହୋଇପାରେନା । ଏଠାରେ କେବଳ ଦେହଧାରୀମାନଙ୍କ ପକ୍ଷେ କୃଷ୍ଣପ୍ରେମ ବା କୃଷ୍ଣଙ୍କ ସହିତ ବନ୍ଧୁତା ସମ୍ଭବ ହୋଇପାରିବ । ଏଣୁ କୃଷ୍ଣଭକ୍ତମାନେ ରାଧାଭାବ ସମ୍ପନ୍ନ ହୋଇ ସଦା ଦେହ ଧାରଣ କରି ରହିବାକୁ ବାଞ୍ଛା କରନ୍ତି । ନିରକ୍ଷର ବ୍ରଜାଙ୍ଗନାମାନେ ରାଧାକୃଷ୍ଣ ପ୍ରେମକୁ 'ମୋକ୍ଷପ୍ରାପ୍ତି' ଅପେକ୍ଷା ଅଧିକ ଶ୍ରେୟମନେ କରୁଥିଲେ । ଠିକ୍ ଯେମିତି ଦାସ୍ୟ ପ୍ରେମରେ ବିଭୋର 'ହନୁମାନଜୀ' ମୋକ୍ଷ ଇଚ୍ଛା କରୁନଥିଲେ ।

ଏବେ କିନ୍ତୁ ପ୍ରେମ ନିସ୍ୱାର୍ଥପରତାକୁ ଭୁଲି ସ୍ୱାର୍ଥ ପ୍ରଣୋଦିତ ହୋଇଯାଇଛି । ସ୍ୱାର୍ଥ ଲାଭର ଏକ ଉଦ୍ଭଟ ଅଙ୍କକଷାରୁ ପର ଆପଣା ସ୍ଥିର ହୋଇଛି; ୪ଟି ସନ୍ତାନର ଜନନୀ/ ଜନକ ହୋଇ ମଧ୍ୟ ପ୍ରିୟତମ / ପ୍ରିୟତମାମାନେ ପରକୁ ଆପଣେଇ ରାତି ଅଧରେ ଫେରାର ହୋଇଯାଉଛନ୍ତି । ଏଠାରେ ସାଂସାରିକ ବନ୍ଧନକୁ ତୁଚ୍ଛ ମନେ କରି ଦୈହିକ ପ୍ରେମ ଉପରେ ଗୁରୁତ୍ୱ ଦିଆଯାଉଥିବାରୁ ବନ୍ଧନର ପବିତ୍ରତା ଧୂଳିସାତ ହେଉଛି । କାମୁକ ପୁରୁଷ/ନାରୀ ନିକଟରେ ମୋହାନ୍ଧତା ହିଁ ସାମାଜିକ ବନ୍ଧନର ଅବକ୍ଷୟର କାରଣ ।

ପାଣି ଗଳୁନଥିବା ବନ୍ଧୁତା ଏବେ ବୈରତାର ଉତ୍ତାଳ ତରଙ୍ଗପୂର୍ଣ୍ଣ ସମୁଦ୍ରରେ ନିରୁଦ୍ଦିଷ୍ଟ ହୋଇଯାଇଛି କେବଳ ନୀଚ ସ୍ୱାର୍ଥ ପାଇଁ । ସ୍ୱାର୍ଥର ମହାମନ୍ତ୍ରରେ ଉଚ୍ଚାଟିତ ହୋଇ ଏବେର ବନ୍ଧୁତା ଅବକ୍ଷୟମୁଖୀ । ସ୍ୱାର୍ଥ ପାଇଁ ପିତାପୁତ୍ରର ସମ୍ପର୍କ । ମାଆଝିଅର ସମ୍ପର୍କ । ଶାଶୁବୋହୂର ସମ୍ପର୍କ । ଭାଇ ଭାଇର ସମ୍ପର୍କ ଯେଉଁଠି କଳୁଷିତ ସେଠି ବାହାର ଲୋକଙ୍କ ସହ ବଂଧୁତାର ସ୍ଥାୟିତ୍ୱ ଆଶା କରିବା ବୃଥା । ଦୈନିକ ପ୍ରେମ ପାଇଁ, ଅର୍ଥ ପାଇଁ, ସ୍ୱାର୍ଥ ପାଇଁ ମଣିଷ ପିଶାଚ ହୋଇ ଆତ୍ମୀୟମାନଙ୍କ ବକ୍ଷରେ ଛୁରୀକା ଘାତ ପାଇଁ ପଛାଉ ନାହିଁ ।

ଏବେ ବନ୍ଧୁତା ଗଢ଼ିବା ବା ଭାଙ୍ଗିବା ଏକ ସହଜ ବ୍ୟାପାର ହୋଇଯାଇଛି । ସାମାନ୍ୟ କଥାରେ ବନ୍ଧୁତା କଟି ଯାଉଛି, ସାମାନ୍ୟ ସ୍ୱାର୍ଥ ପାଇଁ ବନ୍ଧୁତା ଯୋଡି ହୋଇଯାଉଛି । ସ୍ୱାର୍ଥ ଥିଲେ, ଧନର ପ୍ରାଚୁର୍ଯ୍ୟଥିଲେ ବନ୍ଧୁ ବାନ୍ଧବ ମାଡିଆସନ୍ତି ସମୁଦ୍ର ଲହଡି ପରି । ଯେପରି ଗଛରେ ପତ୍ର ଫୁଲ ଫଳ ଥିଲେ ପକ୍ଷୀମାନେ ନାନା ଦିଗରୁ ଆସି ବୃକ୍ଷ ସହ ବନ୍ଧୁତା ପାଶରେ ଆବଦ୍ଧ ହୁଅନ୍ତି । ପତ୍ରଝଡା ଥୁଣ୍ଟା ଗଛ ସଦା ଅନାଦୃତ । 'ଆବେ ପରଶୁ, ଯା'ବେ ପରଶୁ- ବାହୁ ପରଶୁରାମ- ପଇସା କ୍ୟା ନକରେ କାମ ।' ଏମାନଙ୍କୁ

ଫେୟାରୱେ୍ୱଦର ଫ୍ରେଣ୍ଡ କୁହାଯାଏ । ଏଭଳି ବନ୍ଧୁ

Appear in the prosperity

Disappear in the adversity.

ସମ୍ପଦ ବେଳେ ସର୍ବେ ସଖା । ବିପଦେ ନ ଦିଅନ୍ତି ଦେଖା । ପ୍ରକୃତିବନ୍ଧୁ ଯିଏ ସେ ଭୀଷଣ ବିପାକ ସମୟରେ କରଛଡା ଦିଏ ନାହିଁ । ଆବଶ୍ୟକ ସମୟର ବନ୍ଧୁ ହିଁ ପ୍ରକୃତ ବନ୍ଧୁ । A Friend in need is a friend indeed.

ସେଥିପାଇଁ ଚାଣକ୍ୟ ବାସ୍ତବ ବନ୍ଧୁ କିଏ ଚିହ୍ନାଇ ଦେଇ କହିଛନ୍ତି-

ଉତ୍ସବେ ବ୍ୟସନେ ଚୈବ ଦୁର୍ଭିକ୍ଷେ ଶତ୍ରୁ ବିଗ୍ରହେ

ରାଜଦ୍ୱାରେ ଶ୍ମଶାନେ ଚ ଯ ତିଷ୍ଠତି ସଂ ବାଂଧବଃ ।

ସମ୍ପଦକାଳେ, ବିପଦକାଳେ, ଦୁର୍ଭିକ୍ଷବେଳେ, ରାଜଦ୍ୱାରେ ଦଣ୍ଡିତ ହେଉଥିବା ବେଳେ, ମଡ଼ାସାଙ୍ଗିଆ ବେଳେ ପ୍ରକୃତ ବନ୍ଧୁ ଯିଏ ସେ ବିନା ଡାକରାରେ ପହଞ୍ଚିଯାଏ । ଏଭଳି ବନ୍ଧୁ ଭାଗ୍ୟରେ ଥିଲେ ମିଳେ । ଭାଗବତରେ କୁହାଯାଇଛି- 'ବାଳକ ବନ୍ଧୁ ପିତାମାତା । ନୟନ ବନ୍ଧୁ ଲୋମ ପତା ।' ଆଖିକୁ ବିପଦ ଆସିଲେ ସ୍ୱତଃ ଆଖିପତା ବୁଜି ହୋଇଯାଏ- ଅସହାୟ ଶିଶୁର ଆପଦର ଆହା, ବିପଦର ସାହା ତା'ର ବାପା ଆଉ ମାଆ । କିନ୍ତୁ ଆପଣା ସ୍ୱାର୍ଥ ପାଇଁ ପରହାତରେ ନିଜ ଛୁଆକୁ ଟେକିନେବା ବାସ୍ତବ ମାତୃତ୍ୱ ଅବା ପିତୃତ୍ୱ ନୁହେଁ ।

ତ୍ୟାଗ ତିତିକ୍ଷା, ପ୍ରିୟାପ୍ରୀତିର ଅପୂର୍ବ ମିଳନରେ ବନ୍ଧୁତା ପ୍ରତିଷ୍ଠିତ । ତ୍ୟାଗ ଆଉ ପ୍ରେମର ବନ୍ଧନ ଯେଉଁଠି ଶିଥିଳ ସେଠି କି ବନ୍ଧୁତ୍ୱ ? ଚୈତନ୍ୟ ମହାପ୍ରଭୁ ରଘୁନାଥ ପଣ୍ଡିତ (ଜଣେ ବନ୍ଧୁ)ଙ୍କ ସହ ନୌଯାତ୍ରା କଲାବେଳେ ନିଜର ରଚନାରୁ ପଢ଼ି ଶୁଣାଉଥିଲେ । ସେ ରଚନା ଗୁଡ଼ିକ ଏତେ ଉଚ୍ଚକୋଟୀର ଥିଲା ଯେ ରଘୁନାଥ କାନ୍ଦି ପକାଇଲେ । ନିଜର ନିମ୍ନମାନର ରଚନାକୁ ଫିଙ୍ଗିଦେଲେ ଗଙ୍ଗା ଗର୍ଭକୁ । ଏହା ହିଁ ବାସ୍ତବ ବନ୍ଧୁପଣିଆ ଆଜିକାଲି ନିମନ୍ତ୍ରଣରେ ଯଦି ନାଁଟିକେ ଉପର ତଳ ହୋଇଗଲା ତେବେ କଥା ସରିଲା ।

ବନ୍ଧୁତାର ଲକ୍ଷଣ ଆଜି ବୁଝନ୍ତି କେତେଜଣ ? ଦେବା, ନେବା, ଗୋପନ କଥା କହିବା, ପଚାରିବା, ଖାଇବା ଖୁଆଇବା ଇତ୍ୟାଦି ବନ୍ଧୁତାର ଷଡବିଧ ଲକ୍ଷଣ-

ଦଦାତି, ପ୍ରତିଗୃହ୍ନାତି, ପୃଚ୍ଛତି ଭୁଙ୍କ୍ତେ ଭୋଜୟତେ ଚୈବ ଷଡ଼ବିଧ ପ୍ରୀତି ଲକ୍ଷଣମ୍ ।

କିନ୍ତୁ ଏବେ ବେପାର ଓ ରାଜନୀତିରେ ଦେବା, ଖାଇବା ଗୋହି ଜାଣିବା ବନ୍ଧୁତାର ଫାଇଦା ସୂତ୍ର ଭାବେ ପରିଲକ୍ଷିତ । ବାସ୍ତବ ପ୍ରେମ ବନ୍ଧୁତା ଯଦି ଶିଖିବାର ଅଛି ତେବେ 'ଭ୍ରମର' ଭଳି ଇତର ପ୍ରାଣୀଙ୍କ ଠାରୁ ଶିଖିବା ଉଚିତ । ପ୍ରେମିକା ପଦ୍ମିନୀ ଠାରୁ ମଧୁ ସଂଗ୍ରହ ଅବସରରେ ସୂର୍ଯ୍ୟାସ୍ତ ହୋଇଗଲେ ପଦ୍ମ ବୁଜିହୋଇଯାଏ- ଭ୍ରମରବନ୍ଦୀ ହୋଇଯାଏ ।

ପଦାକୁ ଆସିପାରେନା । ଶ୍ୱାସରୁଦ୍ଧ ହୋଇ ପ୍ରାଣ ତ୍ୟାଗ କରେ ଅଥଚ ପ୍ରେମିକା ଶରୀରକୁ ବିକ୍ଷତ କରି ପଦାକୁ କାହାରି ଆସେନା । ବରଂ ନିଜ ପ୍ରାଣ ଠାରୁ ବନ୍ଧୁର ପ୍ରାଣକୁ ଶ୍ରେୟ ମନେକରେ । ଏହା ହିଁ ବାସ୍ତବ ବନ୍ଧୁତ୍ୱ ।

କବିବର ରାଧାନାଥ 'ଚନ୍ଦ୍ରଭାଗା' କାବ୍ୟରେ ଏହାର ସୁନ୍ଦର ଅନୁବାଦ କରି କହିଛନ୍ତି-

ଦାରୁଭେଦକ୍ଷମ ଭ୍ରମର ପଶି କମଳ କୋଳେ
ପାଶୋରେ ଆପଣା ବିକ୍ରମ ପ୍ରେମ ମୋହନ ଭୋଳେ ।

ଜାରାଶବର ଶରାଘାତରେ କୃଷ୍ଣଙ୍କର ମହା ପ୍ରୟାଣ ପରେ ସଖା ଅର୍ଜୁନଙ୍କର ଅବସ୍ଥା ଶୋଚନୀୟ ହୋଇପଡିଲା-ବନ୍ଧୁ ବିୟୋଗ ଜନିତ ଦୁଃଖରେ । ଯେଉଁ ଯାଦବଗଣ କୁଳନାରୀମାନଙ୍କ ଦାୟିତ୍ୱ ନେଇଥିଲେ ସେମାନେ ଉଖୁଡାରେ ଜନ୍ଦା ଲାଗିଲା ପରି ଆଭିରୀଦଳ ନାରୀମାନଙ୍କୁ ଝାମ୍ପି ନେଇଗଲେ, ଅର୍ଜୁନଙ୍କ ପିଠିରେ ବିଧା ଗୋଇଠା ବର୍ଷାକରି । ଗାଣ୍ଡିବ ଧନୁକୁ ମଥାରେ ଧରି ଅର୍ଜୁନ ଫେରିଲେ । କୃଷ୍ଣଙ୍କ ବିନା ସୂର୍ଯ୍ୟହୀନ ପୃଥିବୀ ପରି ପାଣ୍ଡବଙ୍କ ଜୀବନ ଲାଗିଲା । ସେମାନେ ସ୍ୱଦେହରେ ହିମାଳୟ ବାଟେ ସ୍ୱର୍ଗଯାତ୍ରା କଲେ । କୃଷ୍ଣ ଭଳି ବନ୍ଧୁଙ୍କୁ ଛାଡି ମୁହୂର୍ତ୍ତେ ମାତ୍ର ପୃଥିବୀରେ ରହିବା ଉଚିତ ମନେ କଲେ ନାହିଁ ପାଣ୍ଡବମାନେ । ଏଇତ ବନ୍ଧୁ ପଣିଆ ! ସେଥିପାଇଁ ଇଂରେଜ କବି କହିଛନ୍ତି-

Friendship is a nobler thing.
of friendship it is good to sing.

'ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ' କବିତାରେ ବନ୍ଧୁ ବିଚ୍ଛେଦରେ ଗୋପବନ୍ଧୁ ଦାସ କହିଛନ୍ତି-

ଏ ଜୀବନେ ପ୍ରେମ ନୁହେଁ ଅବସାନ
ଅନ୍ୟ ସ୍ଥାନେ ପୁଣି ହେବତ ଦେଖା
ଶୁଦ୍ଧ ନେତ୍ରେ ତହିଁ ଦେଖିବ ନୟନ
ପ୍ରେମରସାଣିତ ଅମୃତ ଲେଖା ।

ପ୍ରକୃତ ପ୍ରେମିକା, ପ୍ରେମିକର ସହସ୍ରଭର୍ତ୍ସନା, କିମ୍ବା ଶତ ସ୍ନିଗ୍ଧସୁମନ ହାସ ସବୁକୁ ସମାନ ଦୃଷ୍ଟିରେ ଦେଖେ । ଚାତକ ପକ୍ଷୀ ସ୍ୱାତୀ ନକ୍ଷତ୍ରରେ ଜଳକୁ ଚାହିଁଥାଏ । ଅନ୍ୟ ଜଳକୁ ଉପେକ୍ଷା କରି ।

ପବି ପାହନ ଦାମିନି ଗରଜି
ଝାରି ଝକୋରି ଖରି ଖିଝି
ଦୋଷ ନ ପ୍ରିୟତମ ରୋଷଲଖି
ତୁଳସୀ ରାଗ ହି ଇଝି ।

ଚାତକର ପ୍ରେମାସ୍ପଦ ପରୀକ୍ଷା ପାଇଁ ମେଘ ଗର୍ଜନ କରେ, ଗାଳିଦିଏ, ଅପମାନିତ କରେ ଚମକେଇଦିଏ, ଚିଡାଏ, କରକାପାତ କରେ, ବିଜୁଳି ମାରେ ପରନ୍ତୁ ଚାତକ ମେଘର ସେ ଦୁର୍ବ୍ୟବହାରକୁ ସହିଯାଏ । ଏଥିରେ ସେ କ୍ରୋଧ ନକରି ଆହୁରି ଅଧିକ ପ୍ରସନ୍ନ ହୁଏ । ଠିକ୍ ସେହିପରି ପ୍ରକୃତ ଭକ୍ତ ପ୍ରେମାଲିଙ୍ଗନ ଅଥବା ପଦାଘାତ, ଅଥବା ଅନନ୍ତ କାଳ କଷ୍ଟ ଦେଲେ ବି ସବୁ ବ୍ୟବହାରରେ ସେ ପ୍ରସନ୍ନ ଥାଏ ।

ଶ୍ରୀଚୈତନ୍ୟ ଶିକ୍ଷାମୃତରେ ଏହା କୁହାଯାଇଛି-

"ଆଶ୍ଳିଷ୍ୟ ବା ପାଦରତାଂ ପିନଷ୍ଟୁ ମାମଦର୍ଶନାନ୍ମର୍ମହତାଂ

ଯଥା ତଥା ବା ବିଦିଧାତୁ ଲଂପଟୋ ମତ୍ ପ୍ରାଣାନାଥାନ୍ତୁ ଏବ ନା ପରଃ ।"

ଶେଷରେ ବନ୍ଧୁତା ବିଷୟରେ ମହାକବି କାଳିଦାସଙ୍କ ଉକ୍ତିକୁ ଉଦ୍ଧାର କରୁଛି ।

ନ ବୈରାଗ୍ୟାତ୍ ପରଂ ଭାଗ୍ୟ

ନ ବୋଧାତ୍ ପର ସଖା

ନ ହରେର ପରଂ ସ୍ତାତା

ନ ସଂସାରାତ୍ ପରରିପୁ ।

ଅର୍ଥାତ୍ ବୈରାଗ୍ୟ ଠାରୁ ଭାଗ୍ୟ ନାହିଁ, ବୋଧଶକ୍ତି ଠାରୁ ସଖା ନାହିଁ, ହରିଙ୍କ ଠାରୁ ତ୍ରାଣ କର୍ତ୍ତା କେହି ନାହିଁ, ସଂସାର ଠାରୁ ବଡ଼ ଶତ୍ରୁ କେହି ନାହିଁ ।

*ଅବସରପ୍ରାପ୍ତ ପ୍ରଧାନଶିକ୍ଷକ*
*ଧବଳଗିରି, ଯାଜପୁର ରୋଡ*
*ପିନ-୭୫୫୦୧୯*
*ମୋ-୯୪୩୭୭୪୨୭୩)*

# ବିଶ୍ୱ ପୁସ୍ତକ ଦିବସ

**ଫକୀର ଚରଣ ପାଢ଼ୀ (୧୫୩)**

ମୁଦ୍ରାଯନ୍ତ୍ରର ଉଦ୍ଭାବନ ପରେ ପୁସ୍ତକ ପ୍ରଣୟନ ଓ ମୁଦ୍ରଣ ଶିଳ୍ପର ବିକାଶଧାରା ଅଦ୍ୟାବଧି ଅବ୍ୟାହତ ରହିଛି । ମୁଦ୍ରାଯନ୍ତ୍ରର ଉଦ୍ଭାବକ ଜନ୍ ଗୁଟେନ୍‌ବର୍ଗ ପ୍ରଥମେ ଯେଉଁ ପୁସ୍ତକଟିକୁ ତାଙ୍କ ଛାପାଖାନାରେ ଛାପିଥିଲେ, ତାହା ଥିଲା ବାଇବେଲ । ଏମିତି ଦେଖିଲେ ତ ବିଭିନ୍ନ ଭାଷାରେ ପ୍ରାଥମିକ ପର୍ଯ୍ୟାୟରେ ଯେଉଁ ପୁସ୍ତକ ସବୁ ଛପା ହେଉଥିଲା, ସେଗୁଡ଼ିକ ମଧ୍ୟ ଥିଲା ଧର୍ମ ପୁସ୍ତକ ତଥା ପୁରାଣଶାସ୍ତ୍ର । ଆଜିକାଲି ପୁରାଣଶାସ୍ତ୍ର ସହିତ ଅନ୍ୟାନ୍ୟ ବହୁ ପ୍ରକାରର ପୁସ୍ତକ ମଧ୍ୟ ଲେଖାଯାଇ ଛପାଗଲାଣି, ଯଥା-ଉପନ୍ୟାସ, ଗଳ୍ପ, ନାଟକ, କାବ୍ୟ କବିତା, ପ୍ରବନ୍ଧ, ସମାଲୋଚନା, ରମ୍ୟରଚନା, ଜୀବନୀ ଇତ୍ୟାଦି । ପାଠକମାନଙ୍କ ସୁବିଧା ପାଇଁ 'ନେଟ୍'ରେ ମଧ୍ୟ ବହି ସବୁ ଛଡ଼ାଗଲାଣି । ଅଧୁନା ଇଣ୍ଟରନେଟ୍ ଓ କମ୍ପ୍ୟୁଟର ବ୍ୟବହାର କ୍ରମଶଃ ବଢୁଥିଲେ ମଧ୍ୟ ମୁଦ୍ରିତ ପୁସ୍ତକର ଯେ ଏକ ସ୍ୱତନ୍ତ୍ର ସ୍ଥାନ ରହିଛି, ଏଥିରେ ଦ୍ୱିମତ ନାହିଁ ।

ମାନବସମାଜର ଜୀବନଶୈଳୀ ପରିବର୍ତ୍ତିତ ହୋଇଆସୁଅଛି । ତଦନୁଯାୟୀ ଅତ୍ୟାଧୁନିକ ଜୀବନଶୈଳୀ ଆଜିର ମନୁଷ୍ୟକୁ ବହୁ ବ୍ୟସ୍ତତାରେ ଗତି କରବାକୁ ବାଧ କରୁଛି । ଫଳରେ ମଣିଷ ବହୁ ସମୟରେ ମାନସିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ଜୀବନ କାଟୁଛି । ଏଥିରେ ତାକୁ ନା ମିଳୁଛି ଶାନ୍ତି ନା ମିଳୁଛି ସୁଖ ! ଯଦି ସେ ପୁସ୍ତକକୁ ନିଜର ଅନ୍ତରଙ୍ଗ ସାଥୀ ରୂପେ ଆପଣେଇ ନେଇପାରନ୍ତା, ତେବେ ସେ କିଛି ସମୟ ପର୍ଯ୍ୟନ୍ତ ସୁଖ, ଶାନ୍ତି ଲାଭ କରିପାରନ୍ତା ! କାରଣ ଶାନ୍ତ ବାତାବରଣ ମଧ୍ୟରେ ଏକାଗ୍ରତାର ସହ ପୁସ୍ତକ ପଠନ ମାନସିକ ଉତ୍ତେଜନାକୁ ବହୁ ପରିମାଣରେ ହ୍ରାସ କରିଦେଇଥାଏ ।

ଇଂରାଜୀରେ ଗୋଟିଏ ଉକ୍ତି ଅଛି- 'Book is a living man' ଅର୍ଥାତ୍ ପୁସ୍ତକ ହେଉଛି ଏକ ଜୀବନ୍ତ ମନୁଷ୍ୟ । ପୁସ୍ତକରେ ସ୍ଥାନିତ ବଳିଷ୍ଠ ଚରିତ୍ରମାନେ ତ କିଛି କଥାବାର୍ତ୍ତା କରନ୍ତି, କିଛି ପରାମର୍ଶ ପ୍ରଦାନ କରନ୍ତି, ଠିକ୍ ବାଟରେ ଯିବା ପାଇଁ ମାର୍ଗଦର୍ଶନ କରିବା ସହିତ ହିତ ସାଧନ ମଧ୍ୟ କରିଥାଆନ୍ତି । ପୁସ୍ତକର ମନ ଓ ମସ୍ତିଷ୍କ ଉପରେ ଗଭୀର ପ୍ରଭାବ ଥାଏ । ତାହା ଜୀବନକୁ ମଧ୍ୟ ପରିବର୍ତ୍ତନ କରିଦେଇଥାଏ । ବହୁ ବିଶିଷ୍ଟ ବ୍ୟକ୍ତି ପ୍ରଚୁର ପୁସ୍ତକ ଅଧ୍ୟୟନ କରି ନିଜକୁ ସୁପ୍ରତିଷ୍ଠିତ କରିପାରିଛନ୍ତି ଏବଂ ସଫଳ ହୋଇପାରିଛନ୍ତି । ଇତିହାସରେ ଏଭଳି ଦୃଷ୍ଟାନ୍ତ ବିରଳ ନୁହେଁ ।

ଅନ୍ୟ ଏକ ଉକ୍ତି ମଧ୍ୟ ଇଂରାଜୀରେ ଅଛି- 'Books are the friends of the friendless' ଅର୍ଥାତ୍ ପୁସ୍ତକ ବନ୍ଧୁହୀନ ଲୋକର ବନ୍ଧୁ ସଦୃଶ । ବାସ୍ତବିକ ଉକ୍ତ ଉକ୍ତିର ସତ୍ୟତା ରହିଛି । ସାଙ୍ଗରେ ଜଣେ ବନ୍ଧୁ ଥିଲେ ବାର୍ତ୍ତାଳାପ ମଧ୍ୟରେ ସମୟ କଟିଯାଏ, ବାଟ ବି ସରିଯାଏ । ଠିକ୍ ସେମିତି ଅନେକ ଯାତ୍ରୀ ପୁସ୍ତକକୁ ବନ୍ଧୁ କରିଥାନ୍ତି । କିଛି ବହି କିଣି ସାଙ୍ଗରେ ନେଇଯାଇଥାନ୍ତି । ଫଳରେ ଯାତ୍ରା ଆଉ କ୍ଳାନ୍ତିକର ହୁଏ ନାହିଁ । ସମୟ ଅତିକ୍ରାନ୍ତ ହୋଇଯାଏ, ପଥ ବି ଶେଷ ହୋଇଯାଏ । କିଛି ଜ୍ଞାନ ଲାଭ ହୁଏ ଓ କିଛି ପ୍ରେରଣା ତଥା ଆନନ୍ଦ ମିଳେ । ମୋ' ଜୀବନରୁ ଗୋଟିଏ ଉଦାହରଣ ଏଠି ଦେଇପାରେ । ମୋର ଜଣେ ଶିକ୍ଷକ ପରିଣତ ବୟସରେ ମଧ୍ୟ ତିନି ତିନିଟା ବିଷୟରେ ସ୍ନାତକୋତ୍ତର ପରୀକ୍ଷା ଦେଇ ପାଶ୍ କରିଥିଲେ, ଯଦିବା ତାହା ତାଙ୍କ ପାଇଁ ଜରୁରୀ ନଥିଲା । କେବଳ ଅଧ୍ୟୟନ ପାଇଁ ସେ ଏହା କରୁଥିଲେ । ଥରେ ସେ କହିଲେ "I will die with the books" ଅଧିକାଂଶ ସମୟରେ ତାଙ୍କ ହାତରେ ଖଣ୍ଡେ ବହି ଥିବାର ଦେଖିବାକୁ ମିଳୁଥିଲା । ପ୍ରକୃତରେ କେବଳ ବନ୍ଧୁହୀନ ଲୋକଙ୍କ ପାଇଁ ନୁହେଁ, ବନ୍ଧୁ ଥିବା ଲୋକଙ୍କ ପାଇଁ ମଧ୍ୟ ପୁସ୍ତକ ଜଣେ ବନ୍ଧୁ, ଦାର୍ଶନିକ ଓ ପଥପ୍ରଦର୍ଶକ ରୂପେ କାର୍ଯ୍ୟ କରିଥାଏ ।

ମାନବସମାଜ ପ୍ରତି ପୁସ୍ତକ ହେଉଛି ଏକ ଅନୁପମ ଉପହାର । ଆଉ 'ବିଶ୍ୱ ପୁସ୍ତକ ଦିବସ' ଉପଲକ୍ଷେ ମନେପଡ଼ନ୍ତି ଉଇଲିୟମ ସେକ୍ସପିଅର । ସେ ୧୫୬୪ ଖ୍ରୀଷ୍ଟାବ୍ଦ, ଅପ୍ରେଲ ମାସ, ୨୩ ତାରିଖରେ ଇଂଲଣ୍ଡରେ ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ସେତେବେଳେର ଜଣେ ପ୍ରସିଦ୍ଧ ନାଟ୍ୟକାର ଓ ପ୍ରଖ୍ୟାତ କବି । ଇଂରେଜୀ ଭାଷାକୁ ସେ ଏକ ନୂତନ ଜୀବନୀଶକ୍ତି ପ୍ରଦାନ କରିଥିଲେ ତାଙ୍କର ବଳିଷ୍ଠ ଲେଖନୀ ମାଧ୍ୟମରେ । ସେ ନୂଆ ନୂଆ ଶବ୍ଦମାନ ସୃଷ୍ଟିକରି ଇଂରେଜି ଭାଷାର ଶ୍ରୀବୃଦ୍ଧି ସାଧନ କରିଥିଲେ । ବିଭିନ୍ନ ଦିଗରୁ ସେ ଇଂରାଜୀ ଭାଷାକୁ ସମୃଦ୍ଧ ଓ ଋଦ୍ଧିମନ୍ତ କରିଥିଲେ । ତାଙ୍କର ଚରିତ୍ର ଚିତ୍ରଣରେ ଥିଲା ବିଶେଷ ପାରଦର୍ଶିତା । ତାଙ୍କ ସୃଷ୍ଟ ପାତ୍ରପାତ୍ରୀ ଥିଲେ ଜୀବନ୍ତ । ସବୁ ଚରିତ୍ରରେ ନାଟକୀୟ ଉତ୍କଣ୍ଠା, ଅନୁଭବ ଓ ବୁଝାମଣା ଭରି ରହିଥିଲା ତାଙ୍କ ରଚିତ ନାଟକ ଗୁଡ଼ିକରେ । ସେ ୩୭ ଖଣ୍ଡ ନାଟକ, ୧୫୪ଟି ସନେଟ୍ ଓ ୨ଟି କବିତା ଗ୍ରନ୍ଥ ରଚନା କରିଥିଲେ । 'ରୋମିଓ ଆଣ୍ଡ ଜୁଲିଏଟ୍', 'ଜୁଲିୟସ ସିଜର', 'ହାମଲେଟ୍', 'ଓଥେଲୋ', 'ମ୍ୟାକ୍‌ବେଥ୍', 'ଦି ଟେମ୍ପେଷ୍ଟ' ହେଉଛି ତାଙ୍କ ରଚିତ କେତୋଟି ଚିରସ୍ମରଣୀୟ ନାଟକ ।

ସେକ୍ସପିୟର ୧୬୧୬ ଖ୍ରୀଷ୍ଟାବ୍ଦରେ ମାନବଲୀଳା ସମ୍ବରଣ କରିଥିଲେ । ତାଙ୍କର ଶକ୍ତିଶାଳୀ ଲେଖନୀ ମାଧ୍ୟମରେ ସେ ସମଗ୍ର ବିଶ୍ୱ ସାହିତ୍ୟକୁ ଗଭୀର ଭାବରେ ପ୍ରଭାବିତ

କରିଥିଲେ । ଏପରିକି ଇତିହାସର ଧାରାକୁ ବଦଳାଇଦେବାରେ ମଧ୍ୟ ସେ ସମର୍ଥ ହୋଇପାରିଥିଲେ । ତାଙ୍କର ଚିର ଅମ୍ଳାନ ସ୍ମୃତିରେ ତାଙ୍କ ଜନ୍ମ ଦିବସକୁ 'ବିଶ୍ୱପୁସ୍ତକ ଦିବସ' ରୂପେ ପାଳନ କରାଯାଇଆସୁଅଛି ।

କେବଳ ଜ୍ଞାନ ଲାଭ ପାଇଁ ଯେ ପୁସ୍ତକ ଅଧ୍ୟୟନ କରାଯାଏ ସେ କଥା ନୁହେଁ, ନିଜକୁ ଜଣେ ଉତ୍ତମ ନାଗରିକ ରୂପେ ଗଢ଼ିତୋଳିବା ପାଇଁ ମଧ୍ୟ ପୁସ୍ତକ ଅଧ୍ୟନ ଏକାନ୍ତ ଅପରିହାର୍ଯ୍ୟ । ପାଠପଢ଼ା ଆରମ୍ଭ ଠାରୁ ପରିସମାପ୍ତି ପର୍ଯ୍ୟନ୍ତ ପୁସ୍ତକ ଅଧ୍ୟୟନ ମଧ୍ୟ ଦେଇ ଯିବାକୁ ହୋଇଥାଏ । ପୁସ୍ତକ ଅଧ୍ୟୟନ ପାଇଁ ଏଇ ଛାତ୍ରଜୀବନ ହେଉଛି ଏକ ପ୍ରକୃଷ୍ଟ ସମୟ । କାରଣ ଏଇ ଅବସ୍ଥାରେ କୌଣସି ବାହ୍ୟ ଚାପ ନଥାଏ । ପୁନଶ୍ଚ ବହୁ ପ୍ରକାରର ପୁସ୍ତକ ଏହି ଅବସରରେ ପଢ଼ିବା ପାଇଁ ସୁଯୋଗ ମିଳିଥାଏ । ଫଳରେ ଏହି ସମୟରୁ ହିଁ ଦୃଢ଼ ବିଚାରଧାରା ଗଠନର ଭିତ୍ତିଭୂମି ପଡ଼ିଥାଏ । ସୁନ୍ଦର ସୁସ୍ଥ ପରିବାର, ସମାଜ ଓ ରାଷ୍ଟ୍ର ନିର୍ମାଣରେ ମଧ୍ୟ ପୁସ୍ତକ ଅଧ୍ୟୟନ ସହାୟକ ହୋଇଥାଏ । ପୁଣି ପୁସ୍ତକ ହେଉଛି ବିଶ୍ୱ ବାତାୟନ । ପୁସ୍ତକ ପଠନ ମାଧ୍ୟମରେ ସମଗ୍ର ବିଶ୍ୱକୁ ଜାଣିହୁଏ ।

ଆଉ ଏକ ଉକ୍ତି ଅଛି ଇଂରାଜୀରେ 'Books are the food of the youth' ଅର୍ଥାତ୍ ପୁସ୍ତକ ହେଉଛି ଯୌବନର ଖାଦ୍ୟ । ପୁନଶ୍ଚ ଯୌବନକୁ ଜୀବନର ସ୍ୱର୍ଣ୍ଣକାଳ କୁହାଯାଏ । ଏହି ସମୟରେ ଶରୀରରେ ବିପୁଳ ଶକ୍ତି ଭରି ରହିଥାଏ । ପ୍ରବଳ ମାନସିକ ଉତ୍ସାହ ମଧ୍ୟ ଥାଏ । ସବୁ ପ୍ରକାର ସାଧନା ଏହି ସମୟରେ ହିଁ କରାଯାଇଥାଏ । ପୁସ୍ତକ ଅଧ୍ୟୟନ ଭଳି ଏକ ମାନସିକ କ୍ରିୟା ସମ୍ପାଦନ ପାଇଁ ଯୁବମାନସ ଏକାନ୍ତ ପ୍ରୟୋଜନ । କାରଣ ବିପୁଳ ପୁସ୍ତକର ବ୍ୟାପକ ଓ ଗଭୀର ଅଧ୍ୟୟନ ଏବଂ ତା'ର ପ୍ରୟୋଗ ଓ ପରୀକ୍ଷା ପାଇଁ ଯୌବନାବସ୍ଥା ବେଶ୍ ସମର୍ଥ ।

ଉଦର କ୍ଷୁଧା ମେଣ୍ଟାଇବା ପାଇଁ ଯେପରି ଖାଦ୍ୟର ଆବଶ୍ୟକତା ରହିଛି, ଠିକ୍ ସେପରି ମନର କ୍ଷୁଧା ମେଣ୍ଟାଇବା ପାଇଁ ପୁସ୍ତକର ମଧ୍ୟ ପ୍ରୟୋଜନ ରହିଛି । ସୁତରାଂ ମାନସିକ କ୍ଷୁଧାକୁ ଶାନ୍ତ କରିବା ପାଇଁ ପ୍ରଚୁର ପୁସ୍ତକ ଅଧ୍ୟୟନ କରିବା ଚାହିଁ । ପୁସ୍ତକ ଅଧ୍ୟୟନ ଆମ ଭିତରେ ଉତ୍ତମ ଚରିତ୍ର ଗଠନ କରେ, ଦେଶ ପ୍ରେମ ଜାଗ୍ରତ କରେ ଓ ସକଳ ସଦ୍‌ଗୁଣ ଉଦ୍ରେକ କରିଥାଏ । ବ୍ୟାପକ ପଠନପାଠନ ଫଳରେ ମସ୍ତିଷ୍କକୁ ଉର୍ଜା ମିଳିଥାଏ । ଏହି ଉର୍ଜା ମସ୍ତିଷ୍କକୁ ସବଳ କରିଥାଏ । ସବଳ ମସ୍ତିଷ୍କ ଯେ କୌଣସି ନୀତିଗତ ତଥା ବିଚାରସମ୍ମତ ବଳିଷ୍ଠ ସିଦ୍ଧାନ୍ତ ନେବାରେ ସମର୍ଥ ହୋଇଥାଏ ।

ଲେଖକମାନେ ବିଭିନ୍ନ ବିଷୟବସ୍ତୁକୁ ନେଇ ବିଭିନ୍ନ ପ୍ରକାର ପୁସ୍ତକ ରଚନା

କରିଥାନ୍ତି । ପ୍ରକାଶକମାନେ ଲେଖକମାନଙ୍କର ପୁସ୍ତକକୁ ପ୍ରକାଶ କରିଥାନ୍ତି । ପ୍ରକାଶିତ ପୁସ୍ତକର ବିକ୍ରିବଟା ପାଇଁ ସେମାନେ ଏହାକୁ ବିଭିନ୍ନ ମାଧ୍ୟମରେ ବଜାରକୁ ଛାଡ଼ନ୍ତି । ଅତଏବ ପୁସ୍ତକ ପ୍ରକାଶନ ମୁଖ୍ୟତଃ ଏକ ବ୍ୟବସାୟ । ଏହା ଏକ ବ୍ୟବସାୟ ହୋଇଥିବାରୁ କେତେକ ପ୍ରକାଶକ ନିମ୍ନମାନର ଓ ଅଶ୍ଳୀଳ ପୁସ୍ତକ ମଧ୍ୟ ପ୍ରକାଶ କରନ୍ତି ଗୁଡ଼ାଏ ବିକ୍ରୀ ହେଇଯିବା ଆଶାରେ । ଏଭଳି ପୁସ୍ତକ ଛାତ୍ର ସମାଜ ଓ ଯୁବଗୋଷ୍ଠୀଙ୍କୁ ବିପଥଗାମୀ କରାଇଥାଏ । ପ୍ରତ୍ୟକ୍ଷ ବା ପରୋକ୍ଷରେ ଏହା ସମାଜ ଓ ରାଷ୍ଟ୍ରର କ୍ଷତିସାଧନ କରିଥାଏ । ସୁତରାଂ ପୁସ୍ତକ କିଣିବା ବେଳେ ଦେଖିଚାହିଁ ଉଚ୍ଚମାନର ପୁସ୍ତକ କିଣିବାକୁ ହୁଏ । ସେଥିପାଇଁ ଇଁରାଜୀରେ ଉକ୍ତିଟିଏ ଅଛି- 'If a book is worth reading it is worth buying' ଅର୍ଥାତ୍ ପୁସ୍ତକଟି ପଠନଯୋଗ୍ୟ ହୋଇଥିଲେ ତାହା କିଣ ।

ବିଶ୍ୱ ପୁସ୍ତକ ଦିବସ ସମସ୍ତଙ୍କ ମନରେ ପୁସ୍ତକର ପଠନପାଠନ ପାଇଁ ଆଗ୍ରହ, ଉତ୍ସାହ ଓ ପ୍ରେରଣା ପ୍ରଦାନ କରୁ, ଏହା ହିଁ ଆଶା କରାଯାଏ ।

*ବକଡ଼ାବେଡ଼ା*
*ଡାବୁଗାଁ, ନବରଙ୍ଗପୁର*
*ପିନ୍-୭୬୪୦୭୨*

# 'ମାମୁଁ' ଉପନ୍ୟାସରେ ନାରୀ ଚରିତ୍ର

ପ୍ରୀତିଲତା ପଣ୍ଡା (୩୧୬)

ବ୍ୟାସକବି ଫକୀରମୋହନଙ୍କ ଜନ୍ମ ୧୮୪୩ ମସିହା ଜାନୁଆରୀ ମାସ ୧୩ ତାରିଖ, ମକର ସଂକ୍ରାନ୍ତି ତିଥିରେ । ମାତାଙ୍କ ନାମ ତୁଳସୀ ଦେବୀ ଏବଂ ପିତାଙ୍କ ନାମ ଲକ୍ଷ୍ମଣ ଚରଣ ସେନାପତି । ତାଙ୍କ ରଚିତ ଅନେକ ଉପନ୍ୟାସ ମଧ୍ୟରୁ ମାମୁଁ ଉପନ୍ୟାସ ଏକ ସାମାଜିକ ଉପନ୍ୟାସ । ଉପନ୍ୟାସର ଚରିତ୍ରମାନଙ୍କ ମଧ୍ୟରୁ କିଛି ତତ୍‌କାଳୀନ ସହର ସଭ୍ୟତା ସହିତ ମିଶି ଯାଇଥିବାର ଉଲ୍ଲେଖ କରି ସେହି ଅନୁଯାୟୀ ସେ କଥାବସ୍ତୁକୁ ଗତିଶୀଳ କରାଇଛନ୍ତି । ଏଠାରେ ଉପନ୍ୟାସର ନାରୀ ଚରିତ୍ରମାନଙ୍କ ସମ୍ବନ୍ଧରେ ସମ୍ୟକ ଆଲୋକପାତ କରିବାର ପ୍ରୟାସ କରୁଛି ।

**୧-ସରସ୍ୱତୀ ଦେଇ:-** ଉପନ୍ୟାସର ନାୟିକା ନ ହେଲେ ମଧ୍ୟ ସେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି । ସେ ହିଁ ସୂତ୍ରଧର, ପରିଚାଳିକା ଏବଂ ସମସ୍ୟାର ସମାଧାନ କର୍ତ୍ତ୍ରୀ ମହିୟସୀ ମହିଳା । ମୋହରୀର ଦାଶରଥି ଦାସଙ୍କ ସମ୍ପର୍କୀୟା ଶାଳୀ, ବିଧବା ମହିଳା ସେ । ଅଥଚ ଦାଶରଥି ଦାସଙ୍କ ପରିବାରର ସୁଖ-ଦୁଃଖ, ହାନି-ଲାଭ, ଘଟଣା-ଅଘଟଣ ସହିତ ଅଙ୍ଗାଙ୍ଗୀ ଭାବରେ ଜଡିତ ହୋଇପଡିଛନ୍ତି ସେ । ତାଙ୍କର ପରାମର୍ଶ ବିନା ପରିବାର ଚଳୁ ନଥିଲା କହିଲେ ଅତ୍ୟୁକ୍ତି ହେବନି । ଏପରିକି ଉପନ୍ୟାସର ନାୟିକା ଚାନ୍ଦମଣି ତାଙ୍କରି ହେପାଜତରେ ବାପଘରେ ଏବଂ ବିବାହ ପରେ ଶାଶୁଘରେ ମଧ୍ୟ ଚଳିଆସୁଥିଲେ । ସରସ୍ୱତୀ ଦେଇ ଥିଲେ ଅତ୍ୟନ୍ତ ଧାର୍ମିକା, ସ୍ପଷ୍ଟବାଦିନୀ, ଉଦାରମନା, କଷ୍ଟ ସହିଷ୍ଣୁ ଏବଂ ସମସ୍ତ ପ୍ରକାର ପରିସ୍ଥିତିରେ ଧୈର୍ଯ୍ୟହରା ନ ହୋଇ ସ୍ଥିର, ଦୃଢ଼ ଚିତ୍ତରେ କାର୍ଯ୍ୟକରି ବିପଦର ସମ୍ମୁଖୀନ ହେଉଥିବା ମହିଳା । ଦାଶରଥି ବଂଶର ସମ୍ମାନାର୍ଥେ ସବୁ କିଛି ଦେଇ ଚାଲିଥିଲେ ସେ । ସେପରି ମହିୟସୀ ମହିଳା ଆଜିର ସମାଜରେ ବିରଳ, ସେ ଥିଲେ ଅନନ୍ୟା । ନାରୀ ସମାଜର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

**୨. ଚାନ୍ଦମଣି:-** ମୋହରୀର ଦାଶରଥି ଦାସଙ୍କର ସୁପୁତ୍ରୀ, ଅତ୍ୟନ୍ତ ସୁନ୍ଦରୀ, ଗୁଣବତୀ, ଖଳନାୟକ ନଟବର ଦାସଙ୍କ ଭଗିନୀ ଏବଂ ଗଡ ନରିପୁରର ପ୍ରଖ୍ୟାତ ଜମିଦାର, ଦୟାଳୁ ସ୍ନେହୀ, ପରୋପକାରୀ, ଧାର୍ମିକ ଶ୍ରୀ ଶ୍ରୀ ଶ୍ରୀ ଉଦିତମଲ୍ଲ ଉତ୍ତରରାୟଙ୍କର ଧର୍ମପତ୍ନୀ । ସ୍ନେହଶୀଳା, ଅତ୍ୟନ୍ତ ପତିପରାୟଣା ମହିଳା । କୌଣସି କଥା ବା ନିର୍ଣ୍ଣୟ ନେବାରେ ତରବର ନ ହୋଇ ସ୍ଥିର ଚିତ୍ତରେ ନିଜର ବିଚାରବୁଦ୍ଧି ପ୍ରୟୋଗ କରିବାର ବିଶେଷ କ୍ଷମତା ସମ୍ପନ୍ନ ମହିଳା ସେ । ଅକାଳ ବୈଧବ୍ୟ ତାଙ୍କର ସୁଖର ଦାମ୍ପତ୍ୟ ଜୀବନ ସହିତେ

ଭବିଷ୍ୟତ ପାରିବାରିକ ଜୀବନକୁ ମଧ ଛାରଖାର କରି ପକାଇଥିଲା ଖଳ ବୁଦ୍ଧି ସମ୍ପନ୍ନ ଭ୍ରାତା ନଟବରଙ୍କ କୁଟ ଚକ୍ରାନ୍ତର ଶିକାର ହୋଇ । ଅବଶ୍ୟ ଶେଷ ପର୍ଯ୍ୟାୟରେ ସେ ଏଥିରୁ ମୁକ୍ତି ପାଇ ପାରିଥିଲେ ଈଶ୍ୱରଙ୍କ ଅଶେଷ କୃପା ଏବଂ ତାଙ୍କର ଧୈର୍ଯ୍ୟଶକ୍ତି ବଳରୁ । ସେପରି ମହିଳା ବାସ୍ତବିକ ସମଗ୍ର ନାରୀ ଜାତିର ନମସ୍ୟା ।

**୩-ଚିତ୍ରକଳା:-** ଉପନ୍ୟାସର ମୁଖ୍ୟ ଖଳନାୟିକା ହେଲେ କଳା ଓରଫ ଚିତ୍ରା । ସେ ଜଣେ ସହରୀ, ଦୁଷ୍ଟା, ବାରବନୀତା ଯୁବତୀ । ନିଜର ସୌନ୍ଦର୍ଯ୍ୟ, ମୋହିନୀ ଶକ୍ତି ଓ ବାକ୍ ଚାତୁରୀ ବଳରେ ନାଜର ନଟବର ଦାସଙ୍କୁ ମୋହିତ କରି ରଖିବା ସହିତ ତାଙ୍କ ପରିବାର ଉପରେ ସମ୍ପୂର୍ଣ୍ଣ ପ୍ରଭାବ ବିସ୍ତାର କରି ଚାଲିଥିଲେ ଏବଂ ନଟବରଙ୍କୁ ସମସ୍ତ ପ୍ରକାର ନୀତିହୀନ କାର୍ଯ୍ୟ କରିବା ପାଇଁ ପରାମର୍ଶ ଦେଇ ନିଜର ସ୍ୱାର୍ଥ ହାସଲ କରୁଥିଲେ । ଏପରିକି ନଟବରଙ୍କ ସିନ୍ଦୁକରୁ ଟଙ୍କା ଚୋରୀର ଉପାୟ ତାଙ୍କ ପତ୍ନୀଙ୍କ ଗହଣା ଚୋରୀ, ଭଣଜା ନରୁବାବୁଙ୍କ ନଟବରଙ୍କ ବସାରୁ ତଡିବାର ଉପାୟମାନ ତାଙ୍କ ପ୍ରରୋଚିତ ଥିଲା । ସେ ଥିଲା ଉପନ୍ୟାସରେ ବର୍ଣ୍ଣିତ ସମସ୍ତ ମନୁଷ୍ୟକୃତ ଅଘଟଣର ସୂତ୍ରଧର; ଅମଙ୍ଗଳକାରକ । ଶେଷରେ ବିଚାରାଳୟରେ ଦୋଷୀ ସାବ୍ୟସ୍ତ ହୋଇ ପାଞ୍ଚ ବର୍ଷ ଜେଲ୍ ଭୋଗିଥିଲା ।

**୪-ବିଶାଖା ଦେବୀ:-** ପାର୍ଶ୍ୱ ଖଳନାୟିକା ବିଶାଖା ଦେବୀ ହେଉଛନ୍ତି ନାଜର ନଟବର ଦାସଙ୍କର ଧର୍ମପତ୍ନୀ । ଜଣେ ଗାଉଁଲୀ ଝିଅ । କିନ୍ତୁ ସହରରେ ନାଜରଙ୍କ ସହିତ ରହି ନିଜକୁ ବେଶ୍ ବୁଦ୍ଧିମତୀ ବୋଲି ଭାବୁଥିଲେ । ନାଜରଙ୍କ ସମସ୍ତ ପ୍ରକାରର କୁକର୍ମକୁ ସେ ଅତି ଦୃଢ଼ତାର ସହ ସମର୍ଥନ କରୁଥିଲେ । ତାଙ୍କର ଏକମାତ୍ର ଇଚ୍ଛା ଥିଲା ଯେନ ତେନ ପ୍ରକାରେଣ ଅର୍ଥ ସଞ୍ଚୟ । ଅଳଙ୍କାର ପ୍ରତି ଥିଲା ତାଙ୍କର ଅହେତୁକ ମମତା । ସନ୍ତାନହୀନା ଥିଲେ ମଧ ପିତୃହୀନ, ନାବାଳକ ଭଣଜା ନରୁବାବୁଙ୍କ ପ୍ରତି ସେ ଆଦୌ ଦୟାଶୀଳା ନଥିଲେ । ତାଙ୍କରି ଅମାନୁଷିକ ବ୍ୟବହାର ଯୋଗୁ ବାଳକ ନରୁବାବୁ (ଭାବୀ ଜମିଦାର) ଶେଷରେ ମାମୁଁଙ୍କ ବସାରୁ ପଳାଇ ଯିବାକୁ ବାଧ ହୋଇଥିଲେ । ଏପରି ମହିଳା ମଧ ଆଜିର ସମାଜରେ ବିରଳ ନୁହେଁ ।

**୫- ବିଶାଖାଙ୍କ ମାଆ:-** ସେ ଜଣେ ନିହାତି ଗରିବ ଘରର ବୋହୂ । ଝିଅ ପାଖକୁ ସହରକୁ ଆସି ଝିଅ, ଜ୍ୱାଇଁଙ୍କର ଧନ, ସମ୍ପତ୍ତି ଦେଖି ତାଙ୍କର ଆଖି ଖୋସି ହୋଇଯାଏ । ଝିଅ କିପରି ଆହୁରି ଶୀଘ୍ର ଅଧିକ ଧନୀ ହେବ ସେଇ ପରାମର୍ଶ ତାକୁ ଦିଅନ୍ତି । ନିର୍ବୋଧତା ଯୋଗୁ ଚିତ୍ରକଳାର ମାୟା ଜାଲରେ ଅତି ସହଜରେ ଧରା ଦେଇ ତାଙ୍କରି ପରାମର୍ଶକୁ ବିନା ଆପତ୍ତିରେ ଶିରୋଧାର୍ଯ୍ୟ କରି ଚଳନ୍ତି । ପରିଣାମ ସ୍ୱରୂପ ନିଜର ତଥା ଝିଅର ସମସ୍ତ ଗହଣା ଚିତ୍ରକଳା କୌଶଳ କରି ହସ୍ତଗତ କରିନିଏ ।

୬- **ନାକଫୋଡିଆ ମାଆ:-** ସେ ଜଣେ ସହରୀ ବୟସ୍କା ମହିଳା, ସହରର ଘର ଘର ବୁଲି ସହରୀ ମହିଳାଙ୍କର ମୁଣ୍ଡ କୁଣ୍ଡାଇ ବେଶ ପରିପାଟୀ କରିବା ତା'ର ପେଷା । ତା' ସହିତ ଖଳନାୟିକା ଚିତ୍ରା ସହିତ ସର୍ବଦା ମନୋମାଳିନ୍ୟ ଏବଂ କଳି କଜିଆ, ଏପରିକି ପିଟାପିଟି ମଧ୍ୟ ହେଉଥାଏ । ସେ ହିଁ କେବଳ ଚିତ୍ରକଳାର ଦୁର୍ଗୁଣମାନ ବଖାଣି ଥାଏ ।

୭- **ଗେହ୍ଲେଇ:** ଗେହ୍ଲେଇ ମଧ୍ୟ ଜଣେ ମଫସଲି ବିଧବା, ଅତ୍ୟନ୍ତ ନୀତିନିଷ୍ଠା, ସଚ୍ଚରିତ୍ରା ମହିଳା । ଫକୀରମୋହନ ସହରୀ ଦୁଶ୍ଚରିତ୍ରା ଚିତ୍ରକଳା ସହିତ ଏହି ମଫସଲି ଗେହ୍ଲେଇର ଚରିତ୍ରକୁ ସମ୍ଭବତଃ ପାଠକ/ପାଠିକାମାନଙ୍କ ପାଖରେ ଏକ ତୁଳନାତ୍ମକ ଢଙ୍ଗରେ ଉପସ୍ଥାପନା କରିବା ପାଇଁ ସୃଷ୍ଟି କରିଛନ୍ତି ।

୮- **ମେନକା ଦେଈ:-** ମୋହରୀର ଦାଶରଥି ଦାସଙ୍କ ଧର୍ମପତ୍ନୀ ମେନକା ଦେଈ ଥିଲେ ରୋଗିଣା । ଅତ୍ୟନ୍ତ ସରଳ ମନା । ଧାର୍ମିକ ମଫସଲି ମହିଳା । ରୋଗ ଯନ୍ତ୍ରଣାରୁ ଉପଶମ ପାଇଁ ସେ ଅଫିମ ସେବନ କରୁଥିଲେ ଏବଂ ବଡପୁଅ ବାନାମ୍ବରଙ୍କ ଆଶ୍ରୟରେ ନିଜ ଗାଁରେ ରହୁଥିଲେ ।

*ଅଗରପଡ଼ା, ଭଦ୍ରକ*

*ମୋ: ୯୦୪୦୫୮୮୬୬୦*

# 'ବୟସ୍କ'-ଏକ ଅନୁଭବ

## କବି ଗୌରବ ଶ୍ରୀ ପ୍ରଭାକର ଦାସ (୩୧୪)

'ବୟସ୍କ'– ଏଇ ଶବ୍ଦଟା ଉଚ୍ଚାରଣ କଲାବେଳେ କାହିଁକି କେଜାଣି ମନ ଭିତରେ ଅଜାଣତରେ ଏକ ଭୟ ମିଶ୍ରିତ ଶିହରଣ ଖେଳିଯାଏ, ଠିକ୍ ସୂର୍ଯ୍ୟାସ୍ତ ପୂର୍ବରୁ ଜଙ୍ଗଲିଆ ରାସ୍ତାରେ ଏକାକୀ ଯାଉଥିବା ବାଟୋଇର ମାନସିକ ସ୍ଥିତିଭଳି । ତେବେ ଏହାର ପଶ୍ଚିମାକାଶଟା ସବୁବେଳେ ମେଘମୁକ୍ତ, ନୀଳରଙ୍ଗ ନ ହୋଇ ପ୍ରାତଃ ମେଘୁଆ ଅଥବା କାଳବୈଶାଖିର ଝଡ଼ଝଞ୍ଜାରେ ଭରି ରହିଥିବାର ଦେଖାଯାଏ । ଆମ ସମାଜରେ ସାଧାରଣତଃ ତିନୋଟି ଲୋକ ରହିଥାନ୍ତି, ଯଥା-ଧନୀକ ଓ ଉଚ୍ଚ ଚାକିରିଆ, ମଧ୍ୟବିତ୍ତ ଏବଂ ଗରିବ ଖଟିଖିଆ, ଦିନ ମଜୁରିଆ ଶ୍ରେଣୀର । ପ୍ରଥମେ ଏଇ 'ବୟସ୍କ' ଶବ୍ଦଟିକୁ ନେଇ ଧନୀକ ବର୍ଗଙ୍କ ପାଖରେ ପହଞ୍ଚାଯାଉ । ଏହା ସାଧାରଣତଃ ଷାଠିଏ ବର୍ଷ ପରର ଜୀବନାବସ୍ଥାକୁ ବୁଝାପଡ଼େ । ଚାକିରିଆମାନେ ମଧ୍ୟ ଏ ଷାଠିଏ ବର୍ଷ ବୟସରେ ଏବେ ସେବା ନିବୃତ୍ତ ହେଉଛନ୍ତି । (ଆଗରୁ ୫୫ ଓ ପରେ ୫୮ ବର୍ଷ ବୟସରେ ଅବସର ନେଉଥିଲେ) । ଉଚ୍ଚବେତନ ଭୋଗୀ କର୍ମଚାରୀ, ବ୍ୟବସାୟୀ, ବେଶୀ ଜମିଥିବା ମାଲିକ, ଶିଳ୍ପପତିମାନଙ୍କୁ ଏଇ ପରିସୀମା ମଧ୍ୟକୁ ଆଣି ସେମାନଙ୍କ ପାଇଁ ଏଇ ଶବ୍ଦଟି କେତେ ଶୁଭଙ୍କର ତାହା ବିଚାର କରାଯାଉ । ସେମାନଙ୍କ ପାଖରେ ଅର୍ଥର ପ୍ରାଚୁର୍ଯ୍ୟ ଥାଇପାରେ, ଅନେକେ ଟଙ୍କାର ବିଛଣାରେ ଶୋଇଥାଇପାରନ୍ତି, କିନ୍ତୁ ମୁଁ ଯାହା ଜାଣିଛି, ଅନୁଭବ କରିଛି, ଏମାନଙ୍କର ପାରିବାରିକ ଜୀବନରେ ଶାନ୍ତି ଖୁବ୍ କମ୍ ଲୋକଙ୍କୁ ମିଳିଥାଏ । ବିଶେଷ କରି ଯେଉଁମାନେ ବିପତ୍ନୀକ ଜୀବନ ଅତିବାହିତ କରୁଥାନ୍ତି, ପରିବାରର ଅନ୍ୟ ସଦସ୍ୟ, ସଦସ୍ୟା ଯଥା- ପୁତ୍ର, ପୁତ୍ରବଧୂ, ନାତି, ନାତୁଣୀ (ଏଠାରେ କନ୍ୟାମାନଙ୍କ କଥା ଉଲ୍ଲେଖ କରୁନି, କାରଣ ସେତେବେଳକୁ ସେମାନେ ପରଘରୀ ହୋଇସାରିଥାନ୍ତି) ମାନଙ୍କର ଏଇ ଅତିକ୍ରାନ୍ତ ବୟସ୍କଙ୍କ ପ୍ରତି ବିଶେଷ ସହାନୁଭୂତି, ସହୃଦୟତା, ସହାୟତା, ସହଯୋଗ ମନୋବୃତ୍ତି ନଥିବାର ଅନେକ କ୍ଷେତ୍ରରେ ପରିଲକ୍ଷିତ ହୋଇଥାଏ । ଯଦି ପୁଅମାନେ ଚାକିରୀ କିମ୍ବା ବ୍ୟବସାୟରେ ରହି ବାହାରେ ରହୁଥାନ୍ତି ଏବଂ ବାପା/ମା'ମାନେ ଗାଁରେ, ମଫସଲରେ ରହି ସମୟ ଅତିବାହିତ କରୁଥାନ୍ତି ତେବେ ତ କଥା ସରିଲା । ପୁଅମାନେ ଅନେକ ସମୟରେ ବାପାମାନଙ୍କୁ ବାଧ କରିଥାନ୍ତି ଗାଁରେ ଥିବା ପୈତୃକ ସମ୍ପତ୍ତି ଯଥା ଜମିବାଡ଼ି, ଘରଡିହ, ବାରିବଗିଚାଦିକୁ ବିକ୍ରି କରିଦେଇ ସହରରେ ଯାଇ ସେମାନଙ୍କ ପାଖରେ ରହିବାକୁ, ଯାହାକି ବୃଦ୍ଧ ପିତାମାତାଙ୍କ ପକ୍ଷରେ ଗ୍ରହଣୀୟ ହୋଇନଥାଏ । ଫଳରେ ଭୀଷଣ ମାନସିକ ଚାପ ଓ ଅଶାନ୍ତିରେ ସେମାନେ କାଳାତିପାତ କରିଥାନ୍ତି ଏବଂ ଏମାନଙ୍କ ମଧ୍ୟରୁ ବେଳେବେଳେ କେହି ହୃଦଘାତରେ ପ୍ରାଣ ହରାଇ ବସିଥାନ୍ତି, କିମ୍ବା ପକ୍ଷାଘାତରେ ପୀଡ଼ିତ ହୋଇ ସାରା ଜୀବନ କଷ୍ଟ ପାଇଥାନ୍ତି । ଅନ୍ୟ କେହି ଘର ଛାଡ଼ି "ଜରାନିବାସ" କିମ୍ବା ଆଶ୍ରମରେ ଯାଇ ଅବଶିଷ୍ଟ ଜୀବନ ବିତେଇଥାନ୍ତି । ଅନ୍ୟ କିଛି ବୟସ୍କ ଧନୀ, ସମ୍ଭ୍ରାନ୍ତ ବ୍ୟକ୍ତି ଏଇ ପ୍ରକାର ମାନସିକ ନିର୍ଯ୍ୟାତନାରୁ ସାମୟିକ ମୁକ୍ତି ପାଇଁ ଏ ବୟସରେ ମଦ୍ୟପାନ ମଧ୍ୟ କରୁଥିବାର ନଜିର

ଅଛି । ଅନ୍ୟ କିଛି ବ୍ୟକ୍ତି ପରିବାରର ତାଡ଼ନାରୁ ମୁକ୍ତି ପାଇଁ ନିଜର ବହୁତଳ ପ୍ରାସାଦ ଛାଡ଼ି ଏକାକୀ କିମ୍ବା ସପତ୍ନୀକ ଭଡ଼ାଘରେ ମଧ୍ୟ ରହିଥାନ୍ତି । ଏମିତିକି ଅନେକ ସମୟରେ ନିଜର ସ୍ତ୍ରୀ ମଧ୍ୟ ପୁଅ, ବୋହୂଙ୍କ ପକ୍ଷ ସମର୍ଥନ କରି ନିଜ ସ୍ୱାମୀ ପ୍ରତି ହତାଦର, ଅବିଚାର କରୁଥିବାର ପରିଦୃଷ୍ଟ ହୁଏ । ବିଚରା ବୃଦ୍ଧ ସ୍ୱାମୀ ନିରୁପାୟ ହୋଇପଡ଼େ, ଆଖିରୁ ଲୁହ ପୋଛି ଚୁପ୍ ରହେ, କିମ୍ବା ଆତ୍ମହତ୍ୟା କରେ ।

ଏବେ ଦ୍ୱିତୀୟ ବର୍ଗ (ମଧ୍ୟବିତ୍ତ ଶ୍ରେଣୀୟ) ବୟସ୍କଙ୍କ ବିଷୟ ତର୍ଜମା କରାଯାଉ । ସେମାନଙ୍କ ଅବସ୍ଥା ପ୍ରଥମ ବର୍ଗଙ୍କ ଠାରୁ ଆହୁରି ଦୟନୀୟ । ଛୋଟ ଶାଢ଼ୀରେ ମୁଣ୍ଡ ଲୁଚାଇଲେ ଗୋଡ଼ ଦିଶେ, ଗୋଡ଼ ଢ଼ାଙ୍କିଲେ ମୁଣ୍ଡ ଖୋଲା ରହେ- ନୀତିରେ ଏମାନେ ଯଦି ଚାକିରୀ କରିଥାନ୍ତି ପେନ୍‌ସନ୍ ପଇସା ବ୍ୟତୀତ ଅନ୍ୟ ରୋଜଗାର ନଥାଏ, କିମ୍ବା ଅଳ୍ପ ଜମିଜମା, ଛୋଟ ବ୍ୟବସାୟୀ ହୋଇଥିଲେ, ଏ ବୟସରେ ଆଉ ବିଲ କ୍ଷେତକୁ ଯିବା କିମ୍ବା ବେପାର ବୁଝାବୁଝା କରିବା ସମ୍ଭବ ହୁଏନି । ଏ ସବୁର ଦାୟିତ୍ୱ ପ୍ରାୟତଃ ପୁଅମାନଙ୍କ ହାତରେ ଛାଡ଼ି ଦେଇଥାନ୍ତି । ଅର୍ଥାତ୍ ପୁଅମାନେ ସେତେବେଳେ ପରିବାରର ମୁଖ୍ୟ ଭାବେ ଗଣା ହୋଇଯାନ୍ତି । ସେମାନଙ୍କ ଦୟାରେ ଚଳିବାକୁ ପଡ଼ିଥାଏ ଏଇ ରୋଜଗାର ଅକ୍ଷମ ବୃଦ୍ଧ ବାପା, ମା'ଙ୍କୁ ପୁଅ ବୋହୂମାନେ ଅନେକ ସମୟରେ ଭୁଲିଯାନ୍ତି- "ତଳ ବରଡ଼ା ଖସୁଛି, ଉପର ବରଡ଼ା ହସୁଛି ଆଉ ମଝି ବରଡ଼ା କହୁଛି-ମୋ ଦିନକାଳ ଆସୁଛି ।" ବୋହୂମଧ୍ୟ ଦିନେ ଶାଶୁ ହେବ, ପୁଅ ମଧ୍ୟ ଦିନେ ବାପା ହେବ- ଏଇଟା ତାଙ୍କ ମନ-ଦରଜା ପାଖକୁ କେବେ ବି ଆସେନି । ଅଧିକାର, ପ୍ରତିପତ୍ତି, କ୍ଷମତା ଏମାନଙ୍କୁ ଅନ୍ଧକରି ଦେଇଥାଏ । ଯଦି ଦୁର୍ଭାଗ୍ୟ ବଶତଃ ଏଇ ବୁଢ଼ାବାପା, ମାଆମାନେ କୌଣସି ରୋଗରେ ପଡ଼ିଲେ ତେବେ ତ ଅବସ୍ଥା ସାଂଘାତିକ । ଅବଶ୍ୟ ସବୁ ପୁଅ, ବୋହୂ ଏପରି ସ୍ୱଭାବର ନୁହଁନ୍ତି । ବିଶେଷତଃ ପୁଅ, ବୋହୂମାନେ ଯଦି ଚାକିରିଆ ହୋଇଥାନ୍ତି, ତେବେତ ପ୍ରଥମରୁ ଏମାନଙ୍କ ସେବା ଆଶା କରିବା ସ୍ୱପ୍ନ ଥାଏ । କଥାରେ ଅଛି- "ବୈକୁଣ୍ଠ ସମାନ ଆହା ଅଟେ ସେଇଘର-ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।" ନିରନ୍ତର ସ୍ନେହ, ଶ୍ରଦ୍ଧା, ଭକ୍ତି ତ ଦୂରର କଥା, ଏସବୁ ସାମାଜିକତା, ନୈତିକତା ଠାରୁ ଅନେକ ଦୂରରେ ରହିଯାଇଥାନ୍ତି ସେମାନେ । ରୋଜଗାର ନାହିଁ ତ ଭକ୍ତି, ଶ୍ରଦ୍ଧା, ସ୍ନେହ, ସମ୍ମାନ- ନାହିଁ, ଏଇ ଶାଶ୍ୱତଗୁଣାବଳୀକୁ ଏବର ସମାଜରେ କେବଳ ଅର୍ଥ ବାନ୍ଧି ରଖିଛି । ଆଜିର ସାମାଜିକ ଜୀବନରେ "ପୈସା କ୍ୟା ନ କରେ କାମ୍, ଆବେ ପର୍ଶୁ, ଯା'ବେ ପର୍ଶୁ, ବାବୁ ପର୍ଶୁରାମ," ଏଥିପାଇଁ ଘରେ ପ୍ରାୟତଃ ପାଟିତୁଣ୍ଡ, ଅଶାନ୍ତି ଲାଗି ରହେ । କେହି କେହି ହତଭାଗ୍ୟଙ୍କର ଅତିକ୍ରାନ୍ତ ବୟସରେ ଧୈର୍ଯ୍ୟଚ୍ୟୁତି ଘଟେ, ପୁଅ-ବୋହୂଙ୍କ କଟୁକ୍ତି ଅତ୍ୟାଚାରରେ ବ୍ୟତିବ୍ୟସ୍ତ ହୋଇ ଆତ୍ମହତ୍ୟା କରିଥାନ୍ତି । ଏ ସମାଜରେ ସେମାନଙ୍କ ପକ୍ଷେ ଜରା ନିବାସରେ ରହିବା ସମ୍ଭବ ହୁଏନି । ଅନେକ ମଧ୍ୟଘର, ପରିବାର ଛାଡ଼ି ଯିବାକୁ ଇଚ୍ଛା ନକରି ଏମିତି ଦୁର୍ବିସହ ଜୀବନକୁ ବାଧ୍ୟ ହୋଇ ବରଣ କରିନେଇଥାନ୍ତି ମରିବା ପର୍ଯ୍ୟନ୍ତ, ଜୀବନ ଯୁଦ୍ଧରେ ପରାଜୟ ସ୍ୱୀକାର କରି । ଖୁବ୍ କମ୍ ଲୋକ ଘର ଛାଡ଼ି ସନ୍ୟାସୀ/ ସନ୍ୟାସିନୀ ହୋଇ ମଠ, ଆଶ୍ରମରେ ରହିଯାନ୍ତି । ତେବେ ବେଶୀ ଭାଗ ବ୍ୟକ୍ତି ସେଇ ପରିବାର ଭିତରେ ଅଶାନ୍ତିର ନିଆଁ ଭିତରେ ସିଝି ସିଝି ଜୀବନ ବିତାଇଥାନ୍ତି ।

ଏବେ ଶେଷବର୍ଗ- ଗରିବ, ଖଟିଖିଆ, ଦିନ ମଜୁରିଆ 'ବୟସ୍କ'ଙ୍କ କଥା ଆଲୋଚନାକୁ ଆସୁ । ସେମାନଙ୍କର ପାରିବାରିକ ସ୍ଥିତି ପ୍ରଥମରୁ ଯାହାଥାଏ, ପରବର୍ତ୍ତୀ ସମୟରେ ସେହିପରି ରହିଥାଏ, ଅଥବା ଆହୁରି ଦୟନୀୟ ହୋଇପଡେ । ଜୀବନର ପ୍ରାରମ୍ଭରୁ କେହି କାହାରି ଉପରେ ପ୍ରାୟତଃ ନିର୍ଭର ନକରି ନିଜ ନିଜର ରୋଜଗାରରେ ଚଳିଥାନ୍ତି । ବୟସ ବଢ଼ିଲେ ମଧ ସେହି ଅଭ୍ୟାସ ଥାଏ ଅଥବା ଆହୁରି ହୀନ, କଦର୍ଯ୍ୟ ହୋଇଯାଏ । କାରଣ ପ୍ରଥମରୁ ହିଁ ପୁଅ, ବୋହୂମାନେ, ଅଧିକାଂଶ କ୍ଷେତ୍ରରେ, ବାପା-ମାଙ୍କ ଠାରୁ ପୃଥକ ହୋଇ ରହିଥାନ୍ତି । ସୁତରାଂ ବୁଢା ବୟସରେ ବାପା-ମା ଯୁବକ ପୁଅର ସହାନୁଭୂତି, ସାହାଯ୍ୟ, ଅନୁକମ୍ପା ଆଶା କରିବାଟାକୁ ବୃଥା ଭାବିଥାନ୍ତି । ଅବଶ୍ୟ କିଛି ଲୋକଙ୍କ ଭାଗ୍ୟରେ ପରିବାରର ସେବା ପ୍ରାପ୍ତ ହୋଇଥାଏ । ଅନେକ ଅକର୍ମଣ୍ୟାବସ୍ଥାରେ ଇତସ୍ତତଃ ବୁଲି ଭିକ୍ଷାବୃତ୍ତି କରୁଥିବାର ଦୃଷ୍ଟିକୁ ଆସେ ଏବଂ ରାସ୍ତାକଡ଼ରେ ଜୀବନ ବିତାଉଥିବାର ମଧ ଉଦାହରଣ ଅଛି ।

କଥାରେ ଅଛି, "ସମ୍ପଦକାଳେ ସର୍ବେ ସଖା"- ସେ ପୁଅ ହେଉ, ଝିଅ ହେଉ ଜ୍ଞାତି, କୁଟୁମ୍ବ, ବନ୍ଧୁ, ପରିଜନ ଯେ କେହି ହୁଅନ୍ତୁ-ଏକଥା ଧ୍ରୁବ ସତ୍ୟ- ଆଲୋ ମଉସା ଜଡ଼ ପଇସା । ପାଖରେ ପଇସା ନଥିଲେ, ଅଥବା ରୋଜଗାରକ୍ଷମ ନଥିଲେ କେହି ପଚାରିବେନି । ଆଉ ଧନୀକ ବର୍ଗଙ୍କ କ୍ଷେତ୍ରରେ ନିଜର ଗର୍ବ, ଆଧିପତ୍ୟ, ସ୍ୱେଚ୍ଛାଚାରିତା ସେମାନଙ୍କୁ ବୃଦ୍ଧ ପିତା-ମାତାଙ୍କ ଠାରୁ ଦୂରେଇ ରଖେ । ସୁତରାଂ ଅତିକ୍ରାନ୍ତ ବୟସର ଜୀବନ-ଏବର ସମାଜରେ ସବୁ ପରିସରରେ ଯେ ଯନ୍ତଣା ଦାୟକ, ଦୁର୍ବିସହ, ମାନସିକ ବେଦନାକ୍ଲିଷ୍ଟ ହୋଇପଡ଼ିଛି ତାହା ପ୍ରାୟ ସବୁ ବର୍ଗର ବ୍ୟକ୍ତି ଅଳ୍ପ ବହୁତ ଅନୁଭବ କରୁଥିବେ । କେହି କେହି ଏହାକୁ ଅନ୍ୟମାନଙ୍କ ଆଗରେ ପ୍ରକାଶ କରି ସାମୟିକ ଆଶ୍ୱସ୍ତି, ଶାନ୍ତି ପାଉଥିବା ବେଳେ ଅନ୍ୟ କେହି ତଥାକଥିତ ସ୍ୱମର୍ଯ୍ୟାଦା ଜଗି ନୀରବରେ ଆଖିଲୁହ ଓଠରେ ପିଇ ଜୀବନର ଶେଷ ପର୍ଯ୍ୟନ୍ତ ରହିଯାନ୍ତି । ଅଥବା ଅନ୍ୟମାନଙ୍କ ଆଗରେ ମିଛିମିଛିକା ହସଟେ ହସିଦେଇ, 'ସବୁଭଲ' କହି ବାଟକାଟି ଚାଲିଯାନ୍ତି ।

ସାମାଜିକ ସ୍ତରରେ, ଆମର ଯୁବପିଢ଼ୀଙ୍କର ମାନସିକତାର ପରିବର୍ତ୍ତନ ନ ହେବାଯାଏ 'ବୟସ୍କ' ଶବ୍ଦଟି ଯେ ବୟସ୍କମାନଙ୍କ ହୃତପିଣ୍ଡର ସ୍ପନ୍ଦନକୁ ଅଧିକରୁ ଅଧିକ ଦ୍ରୁତତର କରି ଚାଲିଥିବ- ଏଥିରେ ସନ୍ଦେହର ଅବକାଶ ନାହିଁ । ତଥାପି "ଆଶା- ବୈତରଣୀ", ଏକ ଉଜ୍ଜ୍ୱଳ ପ୍ରଭାତର ଆଶା ରଖି, ଏକ ସକାରାତ୍ମକ ଭାବନା ସହ ରହୁଛି ।

*ଧାନ ଶିମୁଳିଆ, ଜଳେଶ୍ୱର*

*ବାଲେଶ୍ୱର-୭୫୬୦୮୪*

# ସ୍ୱର୍ଣ୍ଣିମ ଓଡ଼ିଶା ପାଇଁ ଅନୁଚିନ୍ତା

ଡ. ଯଦୁମଣି ସାହୁ (୫୯୦)

ପୁଣ୍ୟଭୂମି ଓଡ଼ିଶାରେ ପ୍ରଭୁ ଜଗନ୍ନାଥ ସ୍ୱୟଂ ବାସ କରନ୍ତି । କିମ୍ବଦନ୍ତୀ କହେ, ଭଗବାନ ଶ୍ରୀକୃଷ୍ଣ ଦେହତ୍ୟାଗ କରିବା ପରେ ତାଙ୍କ ଅର୍ଦ୍ଧଦଗ୍ଧ ଶରୀର ଦାରୁ ରୂପରେ ସମୁଦ୍ରରେ ଭାସିଭାସି ଶ୍ରୀକ୍ଷେତ୍ର ବେଳାଭୂମିରେ ଲାଗିଥିଲା । ରାଜା ଇନ୍ଦ୍ରଦ୍ୟୁମ୍ନ ତାହା ଉଦ୍ଧାର କରି ସେଥିରେ ଜଗନ୍ନାଥଙ୍କ ବିଗ୍ରହ ଗଢ଼ି ପୂଜା ଆରମ୍ଭ କରିଥିଲେ । ଭାରତ ବର୍ଷର ପୂର୍ବ ଉପକୂଳରେ ଅବସ୍ଥିତ ଏହି ରାଜ୍ୟର ନାମ ଓଡ଼ିଶା । ଅତୀତରେ ଉଡ୍ର, ଉତ୍କଳ, କଳିଙ୍ଗ, ତୋଷାଳି, କୋଶଳ ଏବଂ କଙ୍ଗୋଦ ନାମରେ ଖଣ୍ଡ ବିଖଣ୍ଡିତ ଭାବେ ପରିଚିତ ହେବା ପରେ ୧ ୯୩୬ ମସିହା ଏପ୍ରିଲ ପହିଲାରୁ ଏହା ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଲାଭ କରିଛି । ୨୦୩୬ ମସିହାରେ ଓଡ଼ିଶା ରାଜ୍ୟ ଗଠନର ଶତବର୍ଷିକୀ ପାଳନ ହେବାକୁ ଯାଉଛି ।

ପ୍ରତ୍ୟେକ ବର୍ଷ ଏପ୍ରିଲ୍ ପହିଲା ଆସିଲେ ଆମର ପ୍ରତିଷ୍ଠା, ସ୍ୱାଭିମାନ ସଫଳତା ଆଉ ସ୍ୱପ୍ନ ବିଷୟରେ ଅନେକ ଆଲୋଚନା ପର୍ଯ୍ୟାଲୋଚନା ଚାଲେ । ବେଳେ ବେଳେ ଆତ୍ମ ପ୍ରଶଂସାରେ ଆମେ ଉତ୍‌ଫୁଲିତ ହୋଇପଡୁ । ବାସ୍ତବତା କିନ୍ତୁ ଆଲୋଚନାର ବର୍ଣ୍ଣନା ଠାରୁ ଅଲଗା । ଭାଷା, ସଂସ୍କୃତି, ଐତିହ୍ୟ ଠାରୁ ଆରମ୍ଭ କରି ଆମର ଜନଜୀବନ ଆଦି ସଙ୍କଟରେ । ଦେଶ ସ୍ୱାଧୀନ ହେବାର ୭୦ ବର୍ଷ ପରେ କୌଣସି ଓଡ଼ିଆ ଭାରତର ରାଷ୍ଟ୍ରପତି କିମ୍ବା ପ୍ରଧାନମନ୍ତ୍ରୀ ହେବାର ସୌଭାଗ୍ୟ ପାଇପାରିନାହାନ୍ତି । ଓଡ଼ିଶା ରାଜ୍ୟ ପଶ୍ଚିମବଙ୍ଗରୁ ପ୍ରଣବ ମୁଖାର୍ଜୀ, ବିହାରରୁ ଡଃ ରାଜେନ୍ଦ୍ର ପ୍ରସାଦ, ମଧ୍ୟ ପ୍ରଦେଶରୁ ଶଙ୍କର ଦୟାଳ ଶର୍ମା ଏବଂ ଆନ୍ଧ୍ରପ୍ରଦେଶରୁ ନୀଲମ ସଂଜୀବ ରେଡ୍‌ଡୀ, ଭି.ଭି. ଗିରି ଆଉ ପି.ଭି. ନରସିଂହ ରାଓ ଏପଦରୁ ଅଧିକାରୀ ହୋଇପାରିଛନ୍ତି । ଦେଶର ସର୍ବୋଚ୍ଚ ବେସାମରିକ ସମ୍ମାନ 'ଭାରତରତ୍ନ' ୪୫ଜଣଙ୍କୁ ପ୍ରଦାନ କରାଯାଇଥିବାବେଳେ ଓଡ଼ିଶାରୁ ଏପର୍ଯ୍ୟନ୍ତ କେହି ଯୋଗ୍ୟ ବିବେଚିତ ହୋଇପାରିନାହାନ୍ତି । ଇଂରେଜମାନଙ୍କ ଭାରତ ଅଭିଯାନରେ ଭାରତର ଶେଷ ସ୍ୱାଧୀନ ଦୁର୍ଗ ଓଡ଼ିଶା ୧୮୦୩ ମସିହାରେ ସେମାନଙ୍କର ଶାସନାଧୀନ ହେଲା । ଆମେ ଏଥିପାଇଁ ଏକ ବୀର ଜାତି ବୋଲି ଗର୍ବ କରୁ ମାତ୍ର ଦେଶରେ ବିହାର, ମରାଠା, ରାଜପୁତ, ପଞ୍ଜାବ ପ୍ରଭୃତି ରାଜ୍ୟ ନାମରେ ସାମରିକ ରେଜିମେଣ୍ଟ୍ ଥିବାବେଳେ ଓଡ଼ିଆଙ୍କ ନାଁରେ କୌଣସି ରେଜିମେଣ୍ଟ ନାହିଁ । ଆମର କୌଣସି ବିଶ୍ୱସ୍ତରୀୟ ସହର ନାହିଁ । ୧୬୯୮ ମସିହାରେ ଇଷ୍ଟଇଣ୍ଡିଆ କମ୍ପାନୀ କଲିକତା ମହାନଗରୀ ପ୍ରତିଷ୍ଠା କଲାବେଳକୁ ଓଡ଼ିଶାର ହରିପୁରଠାରେ କେବଳ ଗୋଟିଏ ବାଣିଜ୍ୟ କୋଠି ସ୍ଥାପନ

କରିଥିଲେ ।

ଇତିହାସ ପୃଷ୍ଠା ଲେଉଟାଇଲେ ଆମର ସଫଳତା ଅପେକ୍ଷା ବିଫଳତାର ମାତ୍ରା ଅଧିକ ଦେଖିବାକୁ ମିଳେ । ଖ୍ରୀଷ୍ଟପୂର୍ବ ୨୬୧ର କଳିଙ୍ଗ ଯୁଦ୍ଧ ପରେ ମଗଧ ସମ୍ରାଟ ଚଣ୍ଡାଶୋକ ଧର୍ମାଶୋକର ବିଜୟ ଟିକା ପିନ୍ଧିଲେ ସତ କିନ୍ତୁ ଲକ୍ଷ ଲକ୍ଷ ଓଡ଼ିଆ ମା' ଭଉଣୀଙ୍କ ମଥାରୁ ସିନ୍ଦୁ ଟିକା ସବୁଦିନ ପାଇଁ ପୋଛି ଦେଇଥିଲେ । ଖ୍ରୀଷ୍ଟପୂର୍ବ ୧୭୧ କଳିଙ୍ଗ ସମ୍ରାଟ ଖାରବେଳ ଗଙ୍ଗାଠାରୁ ଗୋଦାବରୀ ଯାଏଁ ରାଜ୍ୟ ଜୟ କରିଥିଲେ ସତ ଏବେ କିନ୍ତୁ ଷଢ଼େଇକଳା, ଖରସୁଆଁ, ସୀମାଚଳମ୍ ପ୍ରଭୃତି ଅଞ୍ଚଳ ଓଡ଼ିଶା ସୀମାର ବାହାରେ । ବ୍ରିଟିଶ ଶାସନ କାଳରେ ଚରମ ଅବହେଳାର ପରିଣତି ସ୍ୱରୂପ ୧୮୬୬ର ନଅଙ୍କ ଦୁର୍ଭିକ୍ଷରେ ଲକ୍ଷ ଲକ୍ଷ ଓଡ଼ିଆ ପୋକମାଛି ଭଳି ମରିଗଲେ । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ଆଫଗାନ ଶାସକମାନେ ୨୪ ବର୍ଷ, ମୋଗଲମାନେ ୧୫୯ ବର୍ଷ, ମରହଟ୍ଟାମାନେ ୫୨ ବର୍ଷ ଏବଂ ଇଂରେଜମାନେ ୧୩୩ ବର୍ଷ ସମୁଦାୟ ୩୬୮ ବର୍ଷ ଆମକୁ ପରାଧୀନ କରି ରଖିଥିଲେ ।

ସ୍ୱତନ୍ତ୍ର ପ୍ରଦେଶ ଗଠନ ପରେ ଓଡ଼ିଶା ୧୫ଜଣ ବରପୁତ୍ର ମୁଖ୍ୟମନ୍ତ୍ରୀ ଭାବେ ଆମକୁ ରାଜନୈତିକ ନେତୃତ୍ୱ ଦେଇଛନ୍ତି । ସେମାନେ ହେଲେ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓ, ବିଶ୍ୱନାଥ ଦାସ, ଡ. ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ବିଜୟାନନ୍ଦ ପଟ୍ଟନାୟକ, ବୀରେନମିତ୍ର, ସଦାଶିବ ତ୍ରିପାଠୀ, ରାଜେନ୍ଦ୍ର ନାରାୟଣ ସିଂହଦେଓ, ନନ୍ଦିନୀ ଶତପଥୀ, ବିନାୟକ ଆଚାର୍ଯ୍ୟ, ନୀଳମଣି ରାଉତରାୟ, ଜାନକୀ ବଲ୍ଲଭ ପଟ୍ଟନାୟକ, ହେମାନନ୍ଦ ବିଶ୍ୱାଳ, ଗିରିଧର ଗମାଙ୍ଗ ଏବଂ ନବୀନ ପଟ୍ଟନାୟକ । ଦୀର୍ଘ ସମୟ ଦାୟିତ୍ୱ ମଧ୍ୟରେ ନବୀନ ପଟ୍ଟନାୟକ ରହିଛନ୍ତି ୧୭ବର୍ଷ, ଜାନକୀ ବଲ୍ଲଭ ପଟ୍ଟନାୟକ ୧୩ବର୍ଷ ୫ମାସ, ଡ. ହରେକୃଷ୍ଣ ମହତାବ ୧୦ବର୍ଷ ୪ ମାସ ୨୫ଦିନ ଏବଂ ବିଜୁ ପଟ୍ଟନାୟକ ୭ବର୍ଷ ୩ମାସ ୧୯ ଦିନ । ମହାଭାରତ ଯୁଗରୁ ଓଡ଼ିଆ ଶାସକମାନଙ୍କର ରାଜନୈତିକ ଦୂରଦୃଷ୍ଟି ଅଭାବ ଥିବା ଲକ୍ଷ୍ୟ କରାଯାଏ । ମହାଭାରତ ଯୁଦ୍ଧରେ କଳିଙ୍ଗ ସମ୍ରାଟ ଶତାୟୁ କୌରବ ପକ୍ଷରେ ରହି ଭୀମଙ୍କ ସଙ୍ଗେ ଯୁଦ୍ଧ କରି ନିହତ ହୋଇଥିବାର ଜଣାଯାଏ । ସ୍ୱାଧୀନତା ପରଠାରୁ ଆମର ସବୁବେଳେ ଅଭିଯୋଗ ଯେ କେନ୍ଦ୍ର ଆମକୁ ଅବହେଳା କରୁଛି । ଭାରତୀୟ ସଂଘୀୟ ବ୍ୟବସ୍ଥାରେ ସମ୍ବିଧାନର ନିୟମ ଅନୁଯାୟୀ ରାଜ୍ୟର ଆର୍ଥିକ ପ୍ରାପ୍ୟ ଯାହା ପାଇବା କଥା ତାହାତ ନିଶ୍ଚୟ ପାଇବା । ଅଧିକ ପାଇବାକୁ ଆଶା କଲେ ଦାତାର ମନ ଆଉ ହୃଦୟକୁ ଜିଣିବାକୁ ହେବ । ଆମର ବଡ଼ ଦୋଷ ହେଲା ବେଳେବେଳେ ଆମେ ମହାଭାରତୀୟ ସ୍ରୋତରେ ନମିଶି ଅଲଗା ବାଟ ଦେଖୁ । ଆମ ରାଜ୍ୟର ଶାସକମାନଙ୍କର କେନ୍ଦ୍ର ପ୍ରତି ଅସହଯୋଗ ମନୋବୃତ୍ତି ଦ୍ୱାରା ରାଜ୍ୟର ସ୍ୱାର୍ଥରକ୍ଷା ପରିବର୍ତ୍ତେ

ସ୍ୱାର୍ଥହାନି ହେଉଥିବା ମନେ ହୁଏ । ଏଣୁ ରାଜ୍ୟ ରାଜନୀତିରେ ସେଇ ଦୂରଦୃଷ୍ଟିର ଅଭାବ ଏବେ ମଧ୍ୟ ପରିଲକ୍ଷିତ ହୁଏ ।

୬୩୯ ଖ୍ରୀଷ୍ଟାବ୍ଦରେ ଚୀନ ପରିବ୍ରାଜକ ହୁଏନ-ସା କଳିଙ୍ଗର ଲୋକମାନଙ୍କ ସମ୍ପର୍କରେ ସୁଚିନ୍ତିତ ମତ ପ୍ରକାଶ କରିଛନ୍ତି । "ଏହାର ଲୋକମାନେ ଥିଲେ ରୁକ୍ଷ ଏବଂ ଅଦମ୍ୟ । ସେମାନେ ଦେଖିବାକୁ ସୁନ୍ଦର ଥିଲେ ଏବଂ ଧର୍ମ ବିଶ୍ୱାସ ସେମାନଙ୍କ ମଧ୍ୟରେ ଭରି ରହିଥିଲା । ସେମାନେ ଶୀଘ୍ର ଏବଂ ସ୍ପଷ୍ଟ ରୂପେ କଥା କହିପାରୁଥିଲେ । ସେମାନେ ମଧ୍ୟ ଭାରତର ଲୋକମାନଙ୍କ ଠାରୁ ବ୍ୟବହାରରେ ପୃଥକ୍ ଥିଲେ । ଉତ୍ତର ଲୋକମାନେ ଦୀର୍ଘକାୟ, କୃଷ୍ଣବର୍ଣ୍ଣ ଏବଂ ହିଂସାପରାୟଣ ଥିଲେ । ଏବେ କିନ୍ତୁ ଦୃଶ୍ୟପଟ୍ଟ ଅଲଗା । ଯୁଆଡ଼େ ଦେଖିବ ଖାଲି ମାଳମାଳ ବଡ଼ପେଟଧାରୀ ମୋଟା ମୋଟା ମଣିଷ । ସମାଜରେ ପରିଶ୍ରମ କାତରତା, ମଦ, ଫାଷ୍ଟଫୁଡର ପ୍ରଭାବ ବୃଦ୍ଧି ପାଉଥିବାରୁ ଓଡ଼ିଆ ଯୁବକର ଚିତ୍ର ଆଜି ବଦଳି ଯାଉଛି । ବେରୋଜଗାର ସେମାନଙ୍କୁ ଲକ୍ଷ୍ୟଭ୍ରଷ୍ଟ କରିଦେଉଛି । ଶିକ୍ଷା, କଳା, କ୍ରୀଡ଼ା ପ୍ରତି ଆଗ୍ରହ ନାହିଁ । ଶସ୍ତା, ଆଦର୍ଶହୀନ ରାଜନୀତିର ଶିକାର ହେବାର କୁଣ୍ଠାବୋଧ ନାହିଁ । ଏପ୍ରକାରର ପରିସ୍ଥିତିରେ ପ୍ରଶ୍ନ ଉଠେ ଜଣେ ସଚ୍ଚୋଟ, ସାହାସୀ, ତ୍ୟାଗୀ, ଜ୍ଞାନୀ, ଭଦ୍ର ପ୍ରଜାବତ୍ସଳ ନେତୃତ୍ୱ ଓଡ଼ିଶା କେବେ ଓ କାହାଠାରୁ ପାଇପାରିବ ?

ଓଡ଼ିଆ ଆମର ମାତୃଭାଷା । ଆଜି ଶିକ୍ଷାର ପ୍ରସାର ଫଳରେ ସମସ୍ତ ମା' ପ୍ରାୟ ଶିକ୍ଷିତା ଏବଂ ସେମାନଙ୍କ ମଧ୍ୟରୁ ଅନେକ ଉଚ୍ଚଶିକ୍ଷିତା । ଇତିହାସର ବାଧ୍ୟବାଧକତା ହେଉ ବା ଆବଶ୍ୟକତା ଦୃଷ୍ଟିରୁ ହେଉ ହିନ୍ଦୀ ଏବଂ ଇଂରାଜୀର ଯଥେଷ୍ଟ ପ୍ରଭାବ ଆମ ଉପରେ ରହିଛି । ଭଲ ଇଂରାଜୀ କହିପାରୁଥିବା ପିଲାଟିର ନିଯୁକ୍ତି କ୍ଷେତ୍ରରେ ପ୍ରଥମ ଚାହିଦା ରହୁଛି ଏବଂ ନିଜ ବୃତ୍ତିରେ ଅଧିକ ସଫଳ ହେଉଥିବା ଦେଖାଯାଉଛି । ଆନ୍ତର୍ଜାତିକ ସ୍ତରରେ ନିଜକୁ ପ୍ରକାଶ କରିବା ପାଇଁ ଇଂଗ୍ରାଜୀ ଏକ ସହଜ ମାଧ୍ୟମ । ହିନ୍ଦୀ ଆମର ରାଷ୍ଟ୍ରଭାଷା ଯାହାକୁ ଅଧିକାଂଶ ଭାରତୀୟ ବୁଝନ୍ତି । ଓଡ଼ିଶା ବାହାରେ ପାଦ ଦେଲେ ହିନ୍ଦୀ ଏବଂ ଇଂରାଜୀର ଗୁରୁତ୍ୱ କେତେ ତାହା ବୁଝି ହୁଏ । ଏଣୁ ହିନ୍ଦୀ ଏବଂ ଇଂରାଜୀ ପ୍ରତି ଆଦର କିଛି ଦୋଷାବହ ନୁହେଁ । କିନ୍ତୁ ଓଡ଼ିଆ ଶିଖିବା ପାଇଁ ଆମେ ବିମୁଖ ହେଲେ ଆମର ମାତୃଭାଷା ସବୁଦିନ ପାଇଁ ଲୋପ ପାଇଯିବ । ଶିକ୍ଷାନୁଷ୍ଠାନରେ କୌଣସି ଭାଷାକୁ ବାଧ୍ୟତାମୂଳକ କରିବା ବିଷୟରେ ଭାରତର ସୁପ୍ରିମ କୋର୍ଟ ରାୟ ଦେଇଥିଲେ ହେଁ ଆମକୁ ମାତୃଭାଷାର ସୁରକ୍ଷା ପାଇଁ ଚିନ୍ତା କରିବାକୁ ପଡ଼ିବ । ଏଣୁ ତ୍ରିଭାଷୀ ଶିକ୍ଷା ପ୍ରତି ଗଭୀର ଆନ୍ତରିକତା ରହିଲେ ଆମର ମାତୃଭାଷା ବଞ୍ଚିବା ସହିତ ହିନ୍ଦୀ, ଇଂରାଜୀରେ ପଟୁତା ଲାଭ କରି ବିଶ୍ୱ ମାନବ ଭାବେ ଆମେ ମୁଣ୍ଡଟେକି ଚାଲିପାରିବା ।

କଥାରେ ଅଛି ଓଡ଼ିଶାରେ ବାର ଦିନେ ତେର ପର୍ବ । ପର୍ବ ଅନୁଯାୟୀ ମଧ୍ୟ ଖାଦ୍ୟ

ବ୍ୟବସ୍ଥା କାହିଁ କେଉଁ ଯୁଗରୁ ଚଳି ଆସିଛି । ଘାଣ୍ଟତରକାରୀ, ଡାଲମା, ମାଛ ମହୁର, ଛେନାପୋଡ଼, ଚୁଡ଼ାଘସା ଆଦି ନାନା ପ୍ରକାର ପିଠାପଣା ଓଡ଼ିଆ ଘରର ନିଜସ୍ୱ ଖାଦ୍ୟ । ଏସବୁ ଧୀରେ ଧୀରେ କମି କମି ଆସୁଛି । ସକାଳ ଜଳଖିଆରେ ମାଡ୍ରାସି ଦୋସା, ଇଡ଼ଲି, ସମ୍ବର ତ ଉପର ବେଳା ଚାଉମିନ୍, ପିଜା ବର୍ଗର । ରାତ୍ର ଭୋଜନରେ ପଞ୍ଜାବୀ ରୁଟି ତଡ଼କା ସାଙ୍ଗକୁ ମୋଗଲାଇ ବଟର ଚିକେନ୍ ଏବେ ଓଡ଼ିଆ ଘରେ ନିତିଦିନିଆ ଖାଦ୍ୟ ହୋଇଗଲାଣି । ସହର ଯାଗାରେ ଆଉ ଧୋତି ପିନ୍ଧା ଲୋକ ଦେଖିବାକୁ ମିଳୁ ନାହାନ୍ତି । ସମୟ ସ୍ରୋତରେ ସଂସ୍କୃତି ପରମ୍ପରା ତ ନିଶ୍ଚୟ ପ୍ରଭାବିତ ହେବ, ତଥାପି ଆମର ଖାଦ୍ୟ ଏବଂ ପୋଷାକ ବଞ୍ଚି ରହିବା ପାଇଁ ଆମେ ଆଶା କରିବା । ପ୍ରତ୍ୟେକ ଓଡ଼ିଆ ଝିଅବୋହୁ ଖଣ୍ଡିଏ ସମ୍ବଲପୁରୀ ପାଟଶାଢ଼ୀ ପାଖରେ ରଖନ୍ତୁ ଏବଂ ସମୟ ସୁଯୋଗ ଦେଖି ପିନ୍ଧନ୍ତୁ । ପର୍ବ ଅନୁଯାୟୀ ଓଡ଼ିଆ ଘରର ସୁସ୍ୱାଦୁ ଖାଦ୍ୟ ପ୍ରସ୍ତୁତ କରିବାକୁ ଭୁଲନ୍ତୁ ନାହିଁ । ପ୍ରତ୍ୟେକ ଓଡ଼ିଆ ପ୍ରତିଦିନ ଅନ୍ତତଃ ଓଡ଼ିଆ ଖବର କାଗଜଟିଏ ପଢ଼ନ୍ତୁ ଏବଂ ରେଡ଼ିଓରୁ ଓଡ଼ିଆ ସମ୍ବାଦ ଏବଂ ଗୀତ ଶୁଣନ୍ତୁ ।

ଓଡ଼ିଶା ଏକ ଗରିବ ରାଜ୍ୟ । ଗରିବ ହୋଇ ରହିବା ଆମର ଦେହସୁହା ହୋଇଗଲାଣି । କାଗଜ କଲମରେ ମୁଣ୍ଡପିଛା ଆୟ ଯେତେ ଦେଖେଇଲେ ସୁଦ୍ଧା ବାସ୍ତବତା କିନ୍ତୁ ଭିନ୍ନ । ପିଲାକୁ ଛେଉଣ୍ଡ କରି ବିକ୍ରି କରିବା, ଭୋକରେ ମରିବା, ବେରୋଜଗାର ହେବା, ଭିକ୍ଷାବୃତ୍ତି କରିବା ଆଜି ସୁଦ୍ଧା ଲୋପ ପାଇନାହିଁ । ଆମକୁ ଗରିବ କହିଲେ ଆମକୁ ଯେତେ ବାଧୁନି ବେଶି ବାଧୁଛି ସେହିମାନଙ୍କୁ ଆମକୁ ଯେଉଁମାନେ ଗରିବ କରି ରଖିଛନ୍ତି । ଲୋକମାନେ ଗରିବ ରହିଲେ ରାଜନୀତି କରିବା ସୁବିଧାଜନକ । ଅଭାବ, ଆତୁରତା ସହିତ ଖେଳିବା ସହଜ । ଆମେ କ'ଣ ସତରେ କୃଷିରେ ଆତ୍ମନିର୍ଭରଶୀଳ ? ଯଦି ଏହା ଠିକ୍ ତାହାହେଲେ ଫୁଲ ଠାରୁ ତେଲ ପର୍ଯ୍ୟନ୍ତ କଦଳୀ ଠାରୁ କମଳା ପର୍ଯ୍ୟନ୍ତ ଆମେ ବାହାର ରାଜ୍ୟ ଉପରେ କାହିଁକି ନିର୍ଭର କରୁଛେ ? ଆଜି ରାଜ୍ୟର ସବୁ ଡାକ୍ତରଖାନାରେ ଡାକ୍ତର ଅଛନ୍ତି ନା ପ୍ରତି ସ୍କୁଲରେ ଶିକ୍ଷକ ଅଛନ୍ତି । ପ୍ରକୃତି ଆମକୁ ସବୁ ଦେଇଛି । ସୁଦୀର୍ଘ ବେଳାଭୂମି, ସୁଉଚ୍ଚ ପର୍ବତମାଳା, ଘଞ୍ଚ ଅରଣ୍ୟାନୀ, ସ୍ରୋତସ୍ୱିନୀ ନଦନଦୀ, ପ୍ରଚୁର ଖଣିଜ ସମ୍ପଦ । ଏଣୁ ଦାରିଦ୍ର୍ୟର କାରଣ କ'ଣ ନିଜେ ଆତ୍ମସମୀକ୍ଷା କରିବା ଆବଶ୍ୟକ । ୨୦୩୬ରେ ପାଦ ଦେବାର ବହୁ ଆଗରୁ ଜନସାଧାରଣଙ୍କୁ ସମସ୍ତ ମୌଳିକ ସୁବିଧା ଯୋଗାଇ ଦେଲେ ଆମ ସ୍ୱାଭିମାନକୁ କିଛି ଆଶ୍ୱସ୍ତି ମିଳନ୍ତା । ରାଜକୋଷର ଅପବ୍ୟୟ, ଦୁର୍ନୀତି, ଠକାମି, ନିରୀହମାନଙ୍କୁ ହତ୍ୟା ବନ୍ଦ ହେବା ଅତ୍ୟନ୍ତ ଜରୁରୀ । ଆମ ପ୍ରତିଷ୍ଠାର ପରିଚୟ ଏଇଆ ଯେ ଅଧିକାଂଶ ଭାରତୀୟ ଓଡ଼ିଶାକୁ ଜାଣନ୍ତି ନାହିଁ । କେବଳ ପୁରୀ କହିଲେ କିଛି ଲୋକ ବୁଝନ୍ତି ।

ରାଜ୍ୟ ସ୍ଥାପନାର ଶତବାର୍ଷିକୀ ପାଳନ ପୂର୍ବରୁ ନିମ୍ନରେ କେତେକ ଅନୁଚିନ୍ତା

ଉପସ୍ଥାପନା କରାଯାଇଛି । ଆମର କେବଳ ବିଧାନସଭା ରହିଛି ଯାହାର ସଭ୍ୟ ସଂଖ୍ୟା ୧୪୭ ଏବଂ ଏହା ଏକ ରାଜନୈତିକ ଗୃହ ହୋଇରହିଛି । ଆମର ଦ୍ୱିତୀୟ ସଦନ ବା ବିଧାନ ପରିଷଦ ନାହିଁ । ସମାଜରେ ରାଜନୀତି ବ୍ୟତୀତ ଓଡ଼ିଶାର ବିକାଶରେ ଅନ୍ୟାନ୍ୟ କ୍ଷେତ୍ରର ବୁଦ୍ଧିଜୀବୀମାନଙ୍କର ଅବଦାନ ରହିଛି । ସେମାନଙ୍କର ଅବଦାନକୁ ସାମ୍ବିଧାନିକ ସ୍ୱୀକୃତି ଦେବା ପାଇଁ ବିଧାନ ପରିଷଦର ବ୍ୟବସ୍ଥା ରାଜ୍ୟ ପାଇଁ ସହାୟକ ହେବ । ଓଡ଼ିଶାର ଐତିହ୍ୟକୁ ସମୃଦ୍ଧ କରିବାକୁ ହେଲେ ଜଣେ କିମ୍ବା ଦୁଇଜଣ ବରପୁତ୍ରଙ୍କ ସ୍ମୃତି ରକ୍ଷା ପାଇଁ ଚେଷ୍ଟା ନ କରି ଏକ ଶତବାର୍ଷିକୀ ସଂଗ୍ରହାଳୟ ନିର୍ମାଣ ହେଲେ ସେଠାରେ ରାଜନୀତି ଠାରୁ ଆରମ୍ଭ କରି ଅମର ଶହୀଦ୍, ସ୍ୱାଧୀନତା ସଂଗ୍ରାମୀ, ସମାଜ ସେବୀ, ଐତିହାସିକ, ଶିକ୍ଷାବିଦ୍, ବୈଜ୍ଞାନିକ, ଚିକିତ୍ସକ, ସାହିତ୍ୟିକ, ସାମ୍ବାଦିକ, ଚିତ୍ରଶିଳ୍ପୀ, ଭାସ୍କର୍ଯ୍ୟଶିଳ୍ପୀ, ନୃତ୍ୟଶିଳ୍ପୀ, ସଂଗୀତ ଶିଳ୍ପୀ, ଅଭିନେତା, କ୍ରିଡାବିତ୍ ପ୍ରଭୃତି ସବୁ କ୍ଷେତ୍ରର ବରପୁତ୍ରମାନଙ୍କର ସ୍ମୃତି ସାଇତା ହୋଇ ରଖାଯାଇପାରିବ । ନଦୀ ଜଳର ଅବାଧ ଅପଚୟ ରୋକିବା ପାଇଁ ବଡ଼ବଡ଼ ନଦୀବନ୍ଧ ନିର୍ମାଣ କଲେ ଆମେ କୃଷି ଏବଂ ଶକ୍ତିରେ ଆତ୍ମନିର୍ଭରଶୀଳ ହୋଇପାରିବା । ଉଭୟ ଭାରି ଶିଳ୍ପ ଏବଂ କୁଟୀର ଶିଳ୍ପ ଉପରେ ଗୁରୁତ୍ୱ ରଖିଲେ ଆମେ ନିଯୁକ୍ତି ସୃଷ୍ଟି କରିପାରିବା । ଓଡ଼ିଶାର ପ୍ରାଚୀନ କଳା ଭାସ୍କର୍ଯ୍ୟର ସୁରକ୍ଷା ପାଇଁ ଏକ ଭିନ୍ନ ସୂର୍ଯ୍ୟମନ୍ଦିର ନିର୍ମାଣ ଆବଶ୍ୟକତା ରହିଛି । ପର୍ଯ୍ୟଟନ ଦୃଷ୍ଟିରୁ ଓଡ଼ିଶାକୁ ସରସ ସୁନ୍ଦର କରି ଗଢ଼ି ତୋଳିବାକୁ ହେବ ।-ସିଙ୍ଗାପୁର ଓ ଦୁବାଇ ଭଳି ଛୋଟ ଛୋଟ ରାଜ୍ୟ ପର୍ଯ୍ୟଟନରୁ ଆଜି ପ୍ରାଚୁର୍ଯ୍ୟ ଲାଭ କରିପାରିଛନ୍ତି ।

ଓଡ଼ିଆ ଏକ ସ୍ୱତନ୍ତ୍ର ଜାତି । ଆମେ କୌଣସି ପ୍ରକାରେ ପଞ୍ଜାବି ବା ତାମିଲ ହୋଇପାରିବା ନାହିଁ । ସଂସ୍କୃତି, ଶାରିରୀକ ଗଠନର ପାର୍ଥକ୍ୟ ଆମ ମଧ୍ୟରେ ନିଶ୍ଚିତ ରହିବ । ଗୋଟିଏ ମା'ର ସନ୍ତାନମାନଙ୍କ ମଧ୍ୟରେ ଭିନ୍ନତା ପରିପ୍ରକାଶ ହେଲାଭଳି ଆମେ ଭାରତମାତାର କେବଳ ଏକ ଭିନ୍ନ ସନ୍ତାନ । ଗତକାଲି ଯେଉଁମାନେ ଥିଲେ ଆଜି ସେମାନେ ନାହାନ୍ତି । ଆଜି ଯିଏ ଅଛି ଆସନ୍ତାକାଲି ସେ ନଥିବେ । କିନ୍ତୁ ଆମ ରାଜ୍ୟ ସବୁଦିନ ପାଇଁ ରହିଥିବ ଏବଂ ଆମର ଉତ୍ତର ପୁରୁଷମାନଙ୍କର ପ୍ରତିପୋଷଣ କରିଚାଲିଥିବ । ଏଣୁ ପ୍ରତ୍ୟେକ ଓଡ଼ିଶାବାସୀ ଏକ ସୁନାର ଓଡ଼ିଶା ନିର୍ମାଣ ପାଇଁ ଆଗେଇ ଆସିଲେ ଉତ୍କଳ ଜନନୀର ହୃତ ଗୌରବ ଫେରିଆସିବ ।

*ଅଧାପକ, ସୁଶିଳା ଆପାର୍ଟମେଣ୍ଟ*

*ନୀଳକଣ୍ଠନଗର, ଭୁବନେଶ୍ୱର-୧୨*

# 'କୁଜିବର ପତ୍ର' ଏବଂ ସାଧୁସୁନ୍ଦର ଦାସ

କୁସୁମଲତା ମହାନ୍ତି (୯୮)

ଅନେକ ମଣିଷ ଅଛନ୍ତି ଯେଉଁମାନେ ନିଜକୁ ସାଧୁ, ସନ୍ଥ ସନ୍ନ୍ୟାସୀ ଅଥବା ବାବା ଭାବରେ ପ୍ରଚାର କରି ନିଜର ଅଲୌକିକ ଶକ୍ତି ବିଷୟରେ ଲୋକଙ୍କ ମନରେ ବିଶ୍ୱାସ ଜନ୍ମାଇ ନାନାପ୍ରକାର ସୁବିଧା ସୁଯୋଗ ପାଉଛନ୍ତି । କିନ୍ତୁ ଏହି ମଣିଷମାନେ ବାସ୍ତବରେ ମନୁଷ୍ୟ ସମାଜକୁ ଦିଗ୍‌ଦର୍ଶନ ଦେଇପାରନ୍ତି ନାହିଁ । ଭାବିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ ଯେ, ଆଜିକୁ ଶହ ଶହ ବର୍ଷ ତଳେ ଯେଉଁ ସାଧୁ ସନ୍ନ୍ୟାସୀମାନେ ସମାଜର ଉପକାର ପାଇଁ ନିଜକୁ ସମ୍ପୂର୍ଣ୍ଣ ଭାବରେ ନିୟୋଜିତ କରି ଈଶ୍ୱରଙ୍କ ଶ୍ରୀଚରଣରେ ନିଜେ ମଧ ସମର୍ପିତ ହୋଇଥିଲେ, ଆଜି ସେଭଳି ମହାମନିଷୀ ତଥା ସାଧୁସନ୍ଥ ଖୁବ ବିରଳ ।

ଏହିଭଳି ଜଣେ ମହାମନିଷୀ ଥିଲେ ବାବା ସାଧୁସୁନ୍ଦର ଦାସ । ସେ କେବଳ ସାଧୁ ନଥିଲେ, ସେ ଥିଲେ ଦେଶ ଜାତି ଓ ମାତୃଭାଷାର ରକ୍ଷକ । ଆଜିକୁ ତିନିଶହ ବର୍ଷ ତଳେ ବାବା ସାଧୁସୁନ୍ଦର 'କୁଜିବର ପତ୍ର' ନାମକ ଏକ ଓଡ଼ିଆ ସାହିତ୍ୟ ପତ୍ରିକାର ସମ୍ପାଦନା କରୁଥିଲେ ଏବଂ ପତ୍ରିକାଟି ପ୍ରକାଶ କରୁଥିଲେ ।

ଇତିହାସକାରମାନେ 'ଉତ୍କଳ ଦୀପିକା' ପାଇଁ ଗୌରୀଶଙ୍କରଙ୍କୁ ପ୍ରଥମ ଓଡ଼ିଆ ସମ୍ବାଦପତ୍ରର ଜନକ ଭାବରେ ଗ୍ରହଣ କରିଛନ୍ତି । କିନ୍ତୁ ବାସ୍ତବରେ ଉତ୍କଳ ଦିପୀକାର ବହୁବର୍ଷ ପୂର୍ବରୁ 'କୁଜିବର ପତ୍ର' ସମ୍ବାଦପତ୍ର ପ୍ରକାଶ ପାଇଥିଲା । ଏହାହିଁ ବାସ୍ତବରେ ପ୍ରଥମ ଓଡ଼ିଆ ସମ୍ବାଦପତ୍ର ଥିଲା । ସାଧୁସୁନ୍ଦର ଜଣେ ଆଧାତ୍ମିକ ଚେତନାବାଦୀ ଈଶ୍ୱରପ୍ରେମୀ ମହାମାନବ ଥିଲେ । ଜଣେ ବିପ୍ଳବୀ, ସାଧକ, ତପସ୍ୱୀ ଏବଂ ସମାଜ ସଂସ୍କାରକ ରୂପେ ଥିଲା ତାଙ୍କର ଅନ୍ୟ ପରିଚୟ । ଲୋକପ୍ରିୟ ସାଧୁ ସୁନ୍ଦର ଦାସଙ୍କର କୁଜିବର ମଠ ଏବଂ କୁଜିବର ସମ୍ବାଦପତ୍ର ତତ୍‌କାଳୀନ ସମାଜର ପଥ ପ୍ରଦର୍ଶକ ଥିଲା ।

ସେ କଟକ ଜିଲ୍ଲାର କୁମାରପୁର ଗ୍ରାମରେ ୧୭୨୦ ମସିହାରେ ଜନ୍ମ ଗ୍ରହଣ କରିଥିଲେ । କିନ୍ତୁ କେତେକ ଗବେଷକ କହନ୍ତି ସେ ୧୭୭୫ରେ ଜନ୍ମ ହୋଇଥିଲେ । ଏହି କଥା ଏବେ ମଧ ବିତର୍କ ବଳୟ ଭିତରେ ରହିଛି । ପିଲାଟି ଦିନୁ ସାଧୁ ସୁନ୍ଦର କୌଣସି ଅନ୍ୟାୟ ଓ ଅନୈତିକ କାର୍ଯ୍ୟ ଦେଖିଲେ ବିଦ୍ରୋହ କରୁଥିଲେ । ତାଙ୍କ ମନରେ ଜାତିଗତ ଭେଦଭାବ ନଥିଲା । ପିଲାଦିନୁ ସେ ନିରୋଳାରେ ବସି ଧ୍ୟାନ କରିବାକୁ ଭଲ ପାଉଥିଲେ । ସାଧୁ ସୁନ୍ଦର ଦାସ ପିଲାଦିନେ ସଂସ୍କୃତ ଟୋଲ୍ ଶିକ୍ଷା ଶେଷ କରି ଆଠଗଡ଼ ରାଜ୍ୟ ସ୍କୁଲରେ ନାମ ଲେଖାଇଲେ । ସେଠାରୁ ଶିକ୍ଷା ସମାପ୍ତ କରି ନିଜ ରାଜାଙ୍କ ସୈନ୍ୟବାହିନୀରେ ଯୋଗଦେଇଥିଲେ ।

ନିଜର ଦକ୍ଷତା ବଳରେ ସେ ସେନାନାୟକ ପଦରେ ରହି ନିଜର କର୍ତ୍ତବ୍ୟ ସମ୍ପାଦନ କରିଥିଲେ । ତାଙ୍କରି ସହଯୋଗରେ ଏବଂ ଚେଷ୍ଟାରେ ଆଠଗଡ଼ ରାଜ୍ୟର ଆଖପାଖର ସମସ୍ତ ଛୋଟ ଛୋଟ ରାଜ୍ୟ ଗୁଡ଼ିକୁ ଅଧିକାର କରିଥିଲେ । କିନ୍ତୁ ଯୁଦ୍ଧର ରକ୍ତପାତ ଦେଖି ସେ ଆଉ ଯୁଦ୍ଧ କରିବେ ନାହିଁ ବୋଲି ସ୍ଥିର କରିନେଲେ ଏବଂ ଧାର୍ମିକ ଜୀବନଯାପନ କରିବାରେ ମନଦେଲେ । ପାର୍ଥିବ ଜୀବନ ଯେ କ୍ଷଣସ୍ଥାୟୀ ଏହା ଅନୁଭବ କରି ସେ ସଂସାରର ମୋହମାୟାକୁ ତ୍ୟାଗ କଲେ ।

ସେହି ସମୟରେ କଟକ ଜିଲ୍ଲାର ଚୌଦ୍ୱାର ନିକଟରେ କୁଜି ନାମକ ଗାଁଟିଏ ଥିଲା । ସେହି ଗାଁରେ 'କୁଜିବର' ନାମରେ ଏକ ବିରାଟ ବରଗଛ ଥିଲା । ସେହି ଗଛମୂଳେ ସାଧୁ ସୁନ୍ଦର ଦାସ ତାଙ୍କର ସାଧନା ଆରମ୍ଭ କଲେ । କୁଜିବର ବୃକ୍ଷ ମୂଳରେ କୁଜିବର ମଠ ସେ ପ୍ରତିଷ୍ଠା କରିଥିଲେ । ସାଧୁଙ୍କ ନିଷ୍ଠାପର ତପସ୍ୟାରେ ଆଖପାଖ ଗ୍ରାମର ବହୁ ସଂଖ୍ୟକ ଲୋକ ପ୍ରଭାବିତ ହୋଇ ତାଙ୍କର ଶିଷ୍ୟ ହେଲେ । ଶିଷ୍ୟମାନଙ୍କୁ ନେଇ ସାଧୁ ସୁନ୍ଦର ଦାସ ଗୀତା, ବେଦାନ୍ତ, ମହାଭାରତ ଓ ରାମାୟଣ ସମ୍ପର୍କରେ ପ୍ରତିଦିନ ଆଲୋଚନା କଲେ । ସବୁ ଧର୍ମର ଲୋକମାନେ ସାଧୁ ବାବାଙ୍କ ପାଖକୁ ଆସୁଥିଲେ । କାରଣ ସାଧୁବାବାଙ୍କର 'ସର୍ବଧର୍ମ ମୂଳନୀତି' ମନ୍ତ୍ରଟି ଲୋକମାନଙ୍କୁ ଖୁବ୍ ଆକୃଷ୍ଟ କରି ପାରିଥିଲା । ସେ କହୁଥିଲେ - 'ସମସ୍ତ ଧର୍ମର ମୂଳତତ୍ତ୍ୱ ତଥା ମୂଳନୀତି ହେଉଛି ଏକ' । ସାଧୁଙ୍କର ସାଧନା ତାଙ୍କୁ ଧର୍ମ ପିତା ନାମରେ ମନୁଷ୍ୟ ସମାଜରେ ପ୍ରତିଷ୍ଠା କରାଇପାରିଥିଲା ।

କିଛିବର୍ଷ ପରେ ବିଭିନ୍ନ ରାଜ୍ୟର ରାଜାମାନେ ସାଧୁଙ୍କର ପ୍ରବଚନ ଶୁଣିବା ପାଇଁ ସେଠାକୁ ଆସିଲେ ଏବଂ ମଠର ଉନ୍ନତି ପାଇଁ ଅର୍ଥଦାନ କରିବାକୁ ପ୍ରସ୍ତାବ ଦେଲେ । କିନ୍ତୁ ସାଧୁ ସୁନ୍ଦର ଥିଲେ ନିର୍ଲୋଭୀ । ତେଣୁ ସେ ଦାନ ଗ୍ରହଣ କରିବା ପାଇଁ ଅନିଚ୍ଛା ପ୍ରକାଶ କଲେ । ସେ କହୁଥିଲେ- "ମଠରେ ଧନ ସଞ୍ଚୟ କରି ରଖିଲେ ଏଠିକାର ପବିତ୍ରତା ନଷ୍ଟ ହୋଇଯିବ । କୁଜିବର ମଠଟି ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୂର ଥିଲା । କପିଳାସ ପର୍ବତରୁ ଉତ୍ପତ୍ତି ହୋଇଥିବା ଗନ୍ଧନଦୀ ଓ ବିରୂପନଦୀ ମିଶି ସ୍ଥାନଟିକୁ କଳକଳ ନାଦରେ ଝଙ୍କୃତ କରୁଥିବାରୁ ସେଠାରେ ଅତି ସୁନ୍ଦର ପରିବେଶ ସୃଷ୍ଟି ହୋଇଥିଲା ମଠଟି ସର୍ବଦା ଜନବହୁଳ ଥିବାରୁ ଖୁବ୍ ଚଳଚଞ୍ଚଳ ସ୍ଥାନ ଭାବରେ ପରିଚିତ ଥିଲା ।

ଏହାପରେ ସାଧୁ ସୁନ୍ଦରଙ୍କ ଉଦ୍ୟମରେ କୁଜିବର ମଠରେ ଗୋଟିଏ ବେଦାନ୍ତ ଶିକ୍ଷାଳୟ ଗଢ଼ି ଉଠିଲା । ପାଞ୍ଚ ଶହରୁ ଅଧିକ ଶିଷ୍ୟ ସେହିଠାରେ ଶିକ୍ଷା ପାଉଥିଲେ । ସେ 'କୁଜିବର ପତ୍ର' ନାମକ ଏକ କ୍ଷୁଦ୍ର ପତ୍ରିକା ପ୍ରକାଶ କରୁଥିଲେ । ଇଂରେଜୀ ଲେଖକ ଜନ୍ ବ୍ରାଉନ୍ ମାୟାରସ୍ ତାଙ୍କ ପୁସ୍ତକ 'A book from 1792-1892' ରେ ସାଧୁ ସୁନ୍ଦରବାବାଙ୍କୁ ଜୀବନ୍ତ ଭଗବାନ ବା ଧର୍ମପିତା ତଥା ଗୁରୁ ଭାବରେ ବର୍ଣ୍ଣନା କରିଛନ୍ତି । ସାଧୁ ସୁନ୍ଦରଙ୍କର

ଓଡ଼ିଆ ଭାଷା ପାଇଁ ଅନେକ ଅବଦାନ ରହିଛି । କୁଜିବର ପତ୍ରିକାଟିକୁ ସେ ପ୍ରାୟ ସବୁ ରାଜା ଓ ମହାରାଜାମାନଙ୍କ ପାଖକୁ ପଠାଉଥିଲେ । ଏହାଛଡ଼ା ମେଳା ମହୋତ୍ସବ ଆଦିରେ ଏହି ପତ୍ରିକା ଲୋକମାନଙ୍କୁ ବଣ୍ଟାଯାଉଥିଲା ।

ଓଡ଼ିଶାରେ ଥିବା ପାଦ୍ରୀମାନେ ଏହି ପତ୍ରିକାରୁ ବିଷୟବସ୍ତୁ ନେଇ ଇଂରାଜୀରେ ଅନୁବାଦ କରି ବ୍ରିଟେନ୍‌କୁ ପଠାଉଥିଲେ । ଏହିଭଳି ଭାବରେ 'କୁଜିବର' ପତ୍ରିକାର ପ୍ରଚାର ଓ ପ୍ରସାର ହେଉଥିଲା । ସାଧୁ ସୁନ୍ଦରଙ୍କର ୧୨ଜଣ ଅନ୍ତରଙ୍ଗ ଶିଷ୍ୟ ଥିଲେ । ୧୮୩୭ ମସିହାରେ ରେଭରେଣ୍ଡ ଲେସି ନାମକ ଜଣେ ପାଦ୍ରୀ ବିଲାତରୁ ଓଡ଼ିଶା ଆସି ସାଧୁ ସୁନ୍ଦରଙ୍କୁ ସାକ୍ଷାତ କରିଥିଲେ ଏବଂ ସାଧୁଙ୍କ ବିଷୟରେ ଅନେକ ପ୍ରଶଂସାର ବାର୍ତ୍ତା ମାନ ପ୍ରଚାର କରିଥିଲେ ।

ଧର୍ମ ଏବଂ ମାତୃଭାଷା ପ୍ରତି ସାଧୁଙ୍କର ଗଭୀର ମମତା ଥିଲା । ତେଣୁ କିଛି ବିଷୟକୁ ନେଇ ଖ୍ରୀଷ୍ଟିୟାନ ପାଦ୍ରୀ ଓ ସାଧୁ ସୁନ୍ଦରଙ୍କ ମଧ୍ୟରେ ମନୋମାଳିନ୍ୟ ହେବାରୁ ଦୁଷ୍ଟ ଲୋକମାନଙ୍କ ପାଇଁ ସାଧୁଙ୍କୁ କାରାବରଣ କରିବାକୁ ପଡ଼ିଥିଲା ତଥାପି ସାଧୁ ମାତୃଭାଷା ଓ ନିଜର ଧର୍ମ ପ୍ରତି ସର୍ବଦା ଅନୁରକ୍ତ ରହିଥିଲେ । କି ଖ୍ରୀଷ୍ଟଧର୍ମ, କି ମୁସଲମାନ ଧର୍ମ, କି ହିନ୍ଦୁ ଧର୍ମ ସମସ୍ତଙ୍କ ପାଇଁ ଏହି କୁଜିବର ମଠଟି ଥିଲା ଏକ ପବିତ୍ର ପୀଠ ।

ପ୍ରତିବର୍ଷ ବୈଶାଖ ମାସ ଅକ୍ଷୟ ତୃତୀୟା ଦିନ ଠାରୁ ସାତ ଦିନ ପର୍ଯ୍ୟନ୍ତ ଏଠାରେ ଯଜ୍ଞ ହେଉଥିଲା । ଏହି ଯଜ୍ଞ 'କୁଜିବର ମହାଯଜ୍ଞ' ନାମରେ ବିଖ୍ୟାତ ଥିଲା । କୁଜିବର ମଠଠାରେ ପ୍ରତିଦିନ ସନ୍ଧ୍ୟାରେ ସାଧୁସୁନ୍ଦର ପ୍ରବଚନ ଦେଉଥିଲେ । ସେ ସର୍ବଧର୍ମର ସମନ୍ୱୟକାରୀ ସାଧୁ ଥିଲେ । ବିଶିଷ୍ଟ ସାମ୍ବାଦିକ ଭାବେ ତାଙ୍କର ଖ୍ୟାତି ଥିଲା । କୁଜିବର ପତ୍ରିକା ସମ୍ପାଦନା ପାଇଁ ଅଞ୍ଚ ଦୂରରେ ଥିବା ବ୍ରାହ୍ମଣ ଶାସନର ଗଙ୍ଗାଧର ଷଡ଼ଙ୍ଗୀ ଏବଂ ରାମଚନ୍ଦ୍ର ଯାଚକଙ୍କୁ ସହ ସମ୍ପାଦକ ଭାବରେ ନିଯୁକ୍ତ କରିଥିଲେ ।

ଇଂରେଜ ସାହେବ ରେଭରେଣ୍ଡ ଲେସି ସାଧୁ ସୁନ୍ଦରଙ୍କୁ ଜଣେ ଅସାଧାରଣ ପଣ୍ଡିତ ବୋଲି ମତ ଦେଇଥିଲେ । ସାଧୁଙ୍କ ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କୁ ସମସ୍ତେ ସୁନ୍ଦର ବାବାଜୀ ବୋଲି ସମ୍ବୋଧନ କରୁଥିଲେ । ସେ ପ୍ରାୟ ୧୧୮ ବର୍ଷ ବଞ୍ଚିଥିଲେ । ୧୮୩୮ ମସିହା ଅପ୍ରେଲ୍ ମାସ ୧୬ ତାରିଖରେ ଏହି ମହାନ ପୁରୁଷ ଦେହ ତ୍ୟାଗ କରିଥିଲେ ବୋଲି ରେଭରେଣ୍ଡ ଲେସି ସାହେବ ମତ ଦେଇଥିଲେ । ତାଙ୍କର ଜନ୍ମ ୧୭୨୦ ଏବଂ ମୃତ୍ୟୁ ୧୮୩୮ । ଏଥିରୁ ଜଣାଯାଏ ସେ ରାଜରାମମୋହନ ରାୟଙ୍କ ସମସାମୟିକ ଥିଲେ ।

କୁଜିବର ସମ୍ବାଦପତ୍ରରେ ଧର୍ମନୀତି, ରାଜନୀତି ଏବଂ ସମାଜ ସଂସ୍କାରକୁ ନେଇ ଲେଖାମାନ ପ୍ରକାଶ ପାଉଥିଲା । ପତ୍ରିକାରେ ପ୍ରକାଶ ପାଉଥିବା ଲେଖା ଗୁଡ଼ିକ ଲୋକମାନଙ୍କୁ ସତ୍‌ପଥରେ ପରିଚାଳିତ କରିପାରୁଥିଲା ।

ସମ୍ବାଦପତ୍ରଟି ଯଦିଓ ନିୟମିତ ପ୍ରକାଶ ପାଇପାରୁନଥିଲା ତଥାପି ଏହା ପ୍ରଥମେ ପାକ୍ଷିକ ପରେ ସାପ୍ତାହିକ ଏବଂ ଶେଷରେ ଦୈନିକ ରୂପେ ପ୍ରକାଶ ପାଉଥିଲା । ଲୋକ ସମାଜରେ ଏହି ପତ୍ରିକାର ଯଥେଷ୍ଟ ଗୁରୁତ୍ୱ ଥିଲା ।

ଏହି ପତ୍ରିକାଟିର ସମ୍ପାଦକ ତଥା ପ୍ରକାଶକ ବାବା ସୁନ୍ଦର ଦାସ ଆଜି ନାହାନ୍ତି । 'କୁଜିବର ପତ୍ର' ମଧ୍ୟ ଆଜି ପ୍ରକାଶ ପାଉନାହିଁ କିନ୍ତୁ ସେହି ପତ୍ରିକାଟିର ଚିର ସ୍ମରଣୀୟ ହୋଇ ଜନମାନସରେ ରହିଛି । ବାବା ସୁନ୍ଦର ଦାସ ମଧ୍ୟ ଚିର ଅମର ହୋଇ ରହିବେ-ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

*ନିଳାଦ୍ରୀ ବିହାର*
*ଭୁବନେଶ୍ୱର-୨୧*
*ମୋ: ୯୪୩୯୨୯୫୭୫୨*

# ଶ୍ରଦ୍ଧାବାନ୍ ଲଭତେ ଜ୍ଞାନଂ

ନିରଞ୍ଜନ ସାହୁ (୪୪୬)

ସଂସାରରେ ଯେତେ ପ୍ରକାର କର୍ମ ଅଛି ତନ୍ମଧ୍ୟରୁ ଜ୍ଞାନ ଅର୍ଜନକୁ ଶ୍ରେଷ୍ଠ କର୍ମ ବୋଲି ଗ୍ରହଣ କରାଯାଇଥାଏ । ଜ୍ଞାନର ପରିସର ବ୍ୟାପକ । ତାର ଭଣ୍ଡାର ଅମାପ । ମନୁଷ୍ୟର ସୀମିତ ବୁଦ୍ଧି ଓ ସୀମିତ ଜୀବନକାଳ ମଧ୍ୟରେ ସମସ୍ତ ପ୍ରକାର ଜ୍ଞାନର ଅଧିକାରୀ ହେବା ସହଜ ନୁହେଁ । ତଥାପି ମନୁଷ୍ୟ ପ୍ରଚେଷ୍ଟା ଜାରି ରଖିଲେ ଅନେକ କ୍ଷେତ୍ରରେ ନିଜର ପାରଦର୍ଶିତା ଦେଖାଇବାରେ ସଫଳ ହୋଇଥାଏ ।

ଜ୍ଞାନ ପରି ପବିତ୍ର ଆଉ କିଛି ନାହିଁ । ଜ୍ଞାନରୂପୀ ନୌକାଦ୍ୱାରା ସଂସାର ସାଗରକୁ ଅକ୍ଳେଶରେ ପାର ହୋଇଯିବା ସମ୍ଭବ ଅଟେ ।

ଜ୍ଞାନକୁ ଆୟତ୍ତ କରିବାକୁ ହେଲେ ମନ ମଧ୍ୟରେ ପ୍ରବଳ ଶ୍ରଦ୍ଧା ରହିଥିବା ଦରକାର । ଏହା ମଣିଷକୁ ଜ୍ଞାନ ଆହରଣ କରିବାକୁ ପ୍ରବର୍ତ୍ତାଏ । ଶ୍ରଦ୍ଧା ମନକୁ ବେଗବତୀ କରାଏ । ଥରେ ଉତ୍ସାହ ଜାତ ହେଲେ ଏବଂ ବ୍ୟାକୁଳତା ପ୍ରକାଶ ପାଇଲେ ମନ ସ୍ଥିର ହୋଇ ରହିପାରେନା । ଅଜ୍ଞାନ ଅନ୍ଧାରରୁ ଆଲୋକ ଆଡ଼କୁ ଯିବା ପାଇଁ ଶ୍ରଦ୍ଧାଳୁ ମନ ସର୍ବଦା ଉଦ୍‌ବେଗ ପ୍ରକାଶ କରି ଛନ୍ନଛନ୍ନ ହୁଏ ।

ପାତ୍ରଟିଏ ଶୂନ୍ୟ ରହିଥିଲେ ସେଥିରେ ପଦାର୍ଥ ରଖାଯାଇପାରେ । ମାତ୍ର ପାତ୍ରଟି ଯଦି ପୂର୍ଣ୍ଣ ଥାଏ ତେବେ ସେଥିରେ ପଦାର୍ଥ ରଖିଲେ ତାହା ଖସିପଡ଼େ । ଠିକ୍ ସେହିପରି ଜ୍ଞାନ ଅର୍ଜନ ପାଇଁ ବ୍ୟକ୍ତିକୁ ସର୍ବଦା ଶୂନ୍ୟପାତ୍ର ସଦୃଶ ହେବାକୁ ପଡ଼ିଥାଏ । ମାତ୍ର ମନୁଷ୍ୟ ଯଦି ଅହଂକାର ବଶତଃ 'ମୁଁ ସବୁ ଜାଣିଛି' ବୋଲି ବୋଧକରେ ତେବେ ତା'ର ଜ୍ଞାନ ଅର୍ଜନର ସମସ୍ତ ଦିଗ ଆପେ ଆପେ ବନ୍ଦ ହୋଇଯାଏ । ଅର୍ଥାତ୍ ତା'ର ଜ୍ଞାନ ଅର୍ଜନ କରିବାରେ ଆଉ ଆବଶ୍ୟକତା ପଡ଼େନା । ସେ ସେହିପରି ନିଜର ସୀମିତ ଜ୍ଞାନକୁ ଯଥେଷ୍ଟ ମନେକରି ଗର୍ବ ଓ ଅହଂକାରରେ ଫାଟିପଡ଼େ । ଛାତି ଫୁଲାଇ ବାଟ ଚାଲେ । ନିଜକୁ ଖୁବ୍ ବଡ଼ ବୋଲି ମନେ କରେ । ଫଳ ସ୍ୱରୂପ ମଣିଷର ଅଧୋପତନ ଆରମ୍ଭ ହୁଏ । ଏହି ଅଧୋପତନ ହିଁ ତାକୁ ଲକ୍ଷ୍ୟପଥରୁ ବିଚ୍ୟୁତ କରାଏ । ଦିଗଭ୍ରଷ୍ଟ ଜାହାଜଟି ସାଗରର ବିଶାଳ ଜଳରାଶିରେ ଯେଉଁ ଦୁର୍ଦ୍ଦଶା ଭୋଗେ ଏ କ୍ଷେତ୍ରରେ ମନୁଷ୍ୟ ସେହି ଦଶା ଭୋଗିବାକୁ ବାଧ୍ୟ ହୁଏ ।

ଜ୍ଞାନ ଅର୍ଜନ କରିବା ଏତେ ସହଜ ବ୍ୟାପାର ନୁହେଁ । ଏଥିପାଇଁ ପ୍ରଥମେ ମାନସିକ ସ୍ତରରେ ନିଜକୁ ପ୍ରସ୍ତୁତ କରିନେବା ଦରକାର । ତା'ପରେ ଜ୍ଞାନ ଅର୍ଜନର ବିଭିନ୍ନ ଦିଗପ୍ରତି

ଯଥେଷ୍ଟ ଧ୍ୟାନ ଦେବା ଆବଶ୍ୟକ । ଆଗ୍ରହ ବା ଆକାଂକ୍ଷା ନଥିଲେ ଜ୍ଞାନ ଲାଭ ହେବ କେମିତି ??? ଏଥିପାଇଁ ଜ୍ଞାନାଭିଳାଷୀ 'ଶ୍ରଦ୍ଧାବାନ୍' ହେବା ଆବଶ୍ୟକ । ଉକ୍ତ ପ୍ରକାର ସାଧନାରେ ସିଦ୍ଧି ହେବ କି ନାହିଁ ଏ ପ୍ରକାର ସନ୍ଦେହ କରିବା ବ୍ୟକ୍ତିର ମଧ୍ୟ ଜ୍ଞାନ ଲାଭ ହୁଏ ନାହିଁ । ଅଜ୍ଞ, ଶ୍ରଦ୍ଧାହୀନ, ସନ୍ଦେହଯୁକ୍ତ ଏ ତିନି ବ୍ୟକ୍ତିଙ୍କ ମଧ୍ୟରୁ ସନ୍ଦେହଯୁକ୍ତ ବ୍ୟକ୍ତିକୁ କେବେ ହେଲେ ସୁଖପ୍ରାପ୍ତି ହୁଏ ନାହିଁ ।

ଜ୍ଞାନ ଅର୍ଜନ ପାଇଁ ମନରେ ବ୍ୟାକୁଳତା ଭାବ ଆସିବା ଦରକାର । ନିଜକୁ ନମନୀୟ କରାଇନେବା ଆବଶ୍ୟକ । ବିଶାଳ ଜ୍ଞାନ ଭଣ୍ଡାର ପାଖରେ ନିଜକୁ ନତମସ୍ତକ କରାଇନେବା ଉଚିତ । ମନ ମଧ୍ୟରୁ ସମସ୍ତ ଗର୍ବ, ଦମ୍ଭ, ଅହଙ୍କାରକୁ ପରିହାର କରିନେବା ଆବଶ୍ୟକ । ମନ ମଧ୍ୟରେ ଯେତେ ବ୍ୟାକୁଳତା ପ୍ରକାଶ ପାଇବ ଜ୍ଞାନ ଅର୍ଜନର ମାର୍ଗ ସେତେ ଉନ୍ମୁକ୍ତ ହେବ । ଠିକ୍ ଯେପରି ମଣିଷ ତୃଷାର୍ତ୍ତ ହେଲେ ଜଳପାନ ନିମିତ୍ତ ବ୍ୟାକୁଳ ହୋଇପଡ଼େ । ଥରଟିଏ ଜ୍ଞାନ ଅର୍ଜନ ପଛରେ ପଡିଗଲେ ଜୀବନ ତମାମ ଜ୍ଞାନ-ହରିଣୀର ପଛରେ ଧାଇଁବାକୁ ପଡିଥାଏ । ଶେଷରେ ଜ୍ଞାନ କଳ୍ପଦ୍ରୁମର ଛାୟାରେ ଉପବେଶନ କରି ମଣିଷ ବେଶ୍ ତୃପ୍ତ ହୁଏ । ସେ ଜ୍ଞାନର ବିନିଯୋଗ କରି ଅନ୍ୟର ତଥା ନିଜର ଉପକାର କରିବସେ । ସେ ଅନେକ ନୂତନ ତଥ୍ୟ ପ୍ରକାଶ କରେ । ନୂଆ ଉଦ୍ଭାବନା ଦ୍ୱାରା ଦେଶର ଅନେକ ଉପକାର ହୋଇଥାଏ । ଏଠାରେ ମନେ ରଖିବାକୁ ହେବ ଯେ ଜ୍ଞାନକୁ ସର୍ବଦା କଲ୍ୟାଣକର କାର୍ଯ୍ୟରେ ବିନିଯୋଗ କରିବା ଦରକାର । ଏହାର ଅନୁଚିତ ବ୍ୟବହାର ଜଗତ ପାଇଁ ଅନେକ ବିପଦ ଡାକି ଆଣିଥାଏ ।

ଜ୍ଞାନ ଚୋରୀ ହୁଏ ନାହିଁ କି ଭାଇ ଭାଗ ନିଏ ନାହିଁ । ଏହାକୁ ବିତରଣ କଲେ ମଧ୍ୟ ସରିଯାଏ ନାହିଁ । ବରଂ ମଣିଷ ଅନେକ ପ୍ରକାର ଜ୍ଞାନର ଅଧିକାରୀ ହୋଇ ଯଶସ୍ୱୀ ହୁଏ । ସମୟର କାଳଖଣ୍ଡରେ ନିଜର ନାମ ଲିପିବଦ୍ଧ କରିଯାଏ । ଅନେକ ନୂତନ ଜିଜ୍ଞାସୁଙ୍କ ମନରେ ସରସତା ଭରିଦିଏ । ସମାଜକୁ ନୂଆ ଆଲୋକବର୍ତ୍ତିକା ଦେଖାଏ । ଜ୍ଞାନାଲୋକର ବିକିରଣ ସମାଜରେ ଅନେକ ପରିବର୍ତ୍ତନ ଆଣେ । ସେମାନେ ସମାଜର ହିତସାଧନ ନିମିତ୍ତ ତତ୍ପରତା ପ୍ରକାଶ କରି ଜଗତ କଲ୍ୟାଣ ଉଦ୍ଦେଶ୍ୟରେ ନିଜକୁ ସମର୍ପଣ କରିଦିଅନ୍ତି । ଜଗତରେ ଜ୍ଞାନର ଗଙ୍ଗା ପ୍ରବାହିତ ହୋଇ ଅନେକ ଅଜ୍ଞାନ ଅନ୍ଧକାର ରୂପକ ଅନ୍ଧବିଶ୍ୱାସ, କୁସଂସ୍କାରକୁ ଧୋଇନିଏ । ସେଥିପାଇଁ ତ ଜ୍ଞାନୀ ଲୋକର ସର୍ବଦା ଆଦର ଥାଏ । ସମ୍ମାନ ଥାଏ । ଦେଶ ଦେଶାନ୍ତରରେ ସେମାନଙ୍କ କଥା ଆଲୋଚିତ ହୁଏ । ରାଜା ନିଜ ଦେଶରେ ପୂଜା ପାଉଥିବାବେଳେ ଜ୍ଞାନୀ ସର୍ବତ୍ର ପୂଜା ପାଏ ।

ମାତ୍ର ଆଜିକାଲି ଜ୍ଞାନଚର୍ଚ୍ଚା ନାମରେ ଅନେକ ଅସାଧୁ ବ୍ୟକ୍ତି ନିଜ ନାଁରେ ଜ୍ଞାନୀର ମୋହର ମାରି ନିଜର ପାଣ୍ଡିତ୍ୟ ପ୍ରଦର୍ଶନ କରୁଥିବା ଦେଖାଯାଏ । ସେମାନେ ନିଜର

ବେଶଭୂଷା, କଥାବାର୍ତ୍ତାରେ ସାଧାରଣ ଜନତାଙ୍କୁ ଆକୃଷ୍ଟ କରିବା ସହିତ ନିଜକୁ ବେଶ୍ ଜ୍ଞାନୀ ବୋଲି ପରିଚୟ ଦେଇ ଧନ ଅର୍ଜନର ବାଟ ସୁଗମ କରନ୍ତି । ଲୋକ ଦେଖାଣିଆ ଭାବରେ ଅନେକ ଗୁଡ଼ିଏ ପୁସ୍ତକ ସଂଗ୍ରହ କରି ନାନାଦି କ୍ଷେତ୍ରରେ ନିଜକୁ ନିୟୋଜିତ ରଖିଲେ ସହଜରେ ଜ୍ଞାନ ଅର୍ଜନ ହୋଇପାରେ ନାହିଁ । କାରଣ ସେଥିରେ ନଥାଏ ଶ୍ରଦ୍ଧା । ଶ୍ରଦ୍ଧାହୀନ ଯଜ୍ଞ ଯେପରି ତାମସିକ ଯଜ୍ଞ ବୋଲାଏ ଠିକ୍ ସେହିପରି ଏପ୍ରକାର ପ୍ରଚେଷ୍ଟାର ଉଚିତ ମୂଲ୍ୟ ନଥାଏ । ଲୋକଙ୍କ ଆଗରେ ନିଜକୁ ହୁଏତ ଜ୍ଞାନୀ ବ୍ୟକ୍ତି ବୋଲି ବିଜ୍ଞାପନ ଦିଆଯାଇପାରେ ମାତ୍ର ପ୍ରକୃତ କ୍ଷେତ୍ରରେ ନିଜକୁ ନିଜେ ଅପଦସ୍ତ କରିବା ହିଁ ସାର ହୁଏ । 'କୁହାମୁଣ୍ଡା କପିଳା' ପରି ହେବାରୁ ଲୋକମାନେ ସର୍ବଦା ତାକୁ ଘୃଣାଚକ୍ଷୁରେ ଦେଖିଥାନ୍ତି । ଫଳ ସ୍ୱରୂପ ନିଜର ମାନ, ସମ୍ମାନ, ଇଜ୍ଜତ ଦାଣ୍ଡରେ ପଡ଼ି ହାଟରେ ଗଡ଼ଗଡ଼ ହୁଏ ।

ଜ୍ଞାନ ସାଗରରେ ଯେତେ ଅବଗାହନ କଲେ ମଧ୍ୟ ତନ୍ମଧ୍ୟରୁ ଉପରକୁ ଉଠି ଆସିବାକୁ ଇଚ୍ଛା ହୁଏନା । ଶ୍ରଦ୍ଧାବାନ ମଣିଷ ମନରେ ଏ ତୃଷାର ପରିତୃପ୍ତି ଆସେନା । ସାଧାରଣତଃ ଜ୍ଞାନୀ ଲୋକମାନେ ନିଜକୁ ଏତେ ଦେଖେଇ ହୁଅନ୍ତି ନାହିଁ । ଫଳନ୍ତି ଗଛ ଯେପରି ଫଳ ଭାରରେ ତଳକୁ ନଇଁପଡେ ଠିକ୍ ସେହିପରି ଜ୍ଞାନୀଲୋକ ନିଜର ବିନୟ ଭାବ ପ୍ରକାଶ କରନ୍ତି । ତେଣୁ ଯଥାର୍ଥରେ କୁହାଯାଏ । ବିଦ୍ୟା ଦଦାତି ବିନୟମ୍' ଏବଂ 'ନମ୍ରନ୍ତି ଗୁଣିନଃ ଜନାଃ ନମ୍ରନ୍ତି ଫଳନ୍ତି ବୃକ୍ଷାଃ ।' ଜ୍ଞାନୀଲୋକ ନିଜକୁ ଖୁବ୍ ସଙ୍କୁଚିତ କରି ରଖନ୍ତି । ସେ ଦୁନିଆରେ ସାଦାସିଧା ସରଳ ଜୀବନଯାପନ କରେ । ନିଜର ପାରିବା ପଣିଆର ବାହାଦୁରୀ ଦେଖାଇ ସେ ଅନ୍ୟକୁ ଆକୃଷ୍ଟ କରିବାକୁ ଚେଷ୍ଟା କରେନା । ବରଂ ଅନେକ ଜିଜ୍ଞାସୁ ବ୍ୟକ୍ତି ଭ୍ରମର ଫୁଲ ପାଖକୁ ଛୁଟି ଆସିବା ପରି ଜ୍ଞାନୀ ଲୋକର ନିକଟକୁ ଆକର୍ଷିତ ହୋଇ ଆସନ୍ତି । ସେତିକିବେଳେ ତାର ମାହାତ୍ମ୍ୟ ଆପେ ଆପେ ପ୍ରକଟିତ ହୁଏ । ଚତୁଃର୍ଦ୍ଦିଗରୁ ମାନସମ୍ମାନ, ଆଦର, ଅଭ୍ୟର୍ଥନାର ସୁଅ ଛୁଟି ଆସେ ।

କେବଳ ଜ୍ଞାନ ଆହରଣର ଇଚ୍ଛା ପ୍ରକଟ କରିଦେଲେ ହୋଇଯାଏ ନାହିଁ । ଏଥିପାଇଁ ଦୃଢ଼ ନିଷ୍ପତ୍ତି ନେବାକୁ ହୁଏ । ମନକୁ ସ୍ଥିର କରିବାକୁ ପଡ଼େ ସମୟ ଦେବାକୁ ହୁଏ । ଜ୍ଞାନ ଆହରଣର ବିଭିନ୍ନ ଦିଗ ପ୍ରତି ଦୃଷ୍ଟି ଦେବାକୁ ପଡ଼େ । ତେବେ ଯାଇ ଅଭିଳାଷ ପୂରଣର ମାର୍ଗ ପ୍ରଶସ୍ତ ହୋଇଯାଏ । ଏଥିପାଇଁ ସର୍ବଦା ଗୁରୁଙ୍କ ଚରଣରେ ମନୋନିବେଶ କରିବାକୁ ପଡ଼ିଥାଏ । ନଚେତ୍ ପଥ ସର୍ବଦା କଣ୍ଟକିତ ମନେହୁଏ । ଗୁରୁ ମାର୍ଗଦର୍ଶକ ଓ ଶିଷ୍ୟର ମଙ୍ଗଳକାମୀ ଅଟନ୍ତି । ପ୍ରାଚୀନ ଗୁରୁକୁଳ ଠାରୁ ଆରମ୍ଭ କରି ଅତ୍ୟାଧୁନିକ ହାଇଟେକ୍ ଯୁଗର ଉନ୍ନତ ଜ୍ଞାନ କୌଶଳ ଆହରଣ ନିମନ୍ତେ ଗୁରୁଙ୍କର ଆବଶ୍ୟକତାକୁ ଅସ୍ୱୀକାର କରାଯାଇନପାରେ । ସେ ହିଁ ଶିଷ୍ୟର ସମସ୍ତ ସନ୍ଦେହକୁ ଦୂର କରିପାରନ୍ତି । ତାର ଜ୍ଞାନାର୍ଜନର ବ୍ୟାକୁଳତାକୁ ଲକ୍ଷ୍ୟ କରି ପଥ ପ୍ରଦର୍ଶନ କରନ୍ତି ।

ଭାରତୀୟ ପରମ୍ପରାରେ ଶ୍ରୀ ଗଣେଶ, ବାଗ୍‌ଦେବୀ ସରସ୍ୱତୀଙ୍କୁ ଯଥାକ୍ରମେ ଜ୍ଞାନର ଅଧିଷ୍ଠାତା ଦେବଦେବୀ ଭାବରେ ଗ୍ରହଣ କରାଯାଇଥାଏ । ଜ୍ଞାନାର୍ଜନ ପାଇଁ ଏହି ଦୁଇ ଦେବଦେବୀଙ୍କ ଶ୍ରୀଚରଣ ତଳେ ଆଶ୍ରିତ ହେବାକୁ ପଡିଥାଏ । ଆଶ୍ରମ ମାନଙ୍କରେ ଜ୍ଞାନାର୍ଜନ ପାଇ ନିଜ ନିଜର ଗୁରୁଙ୍କ ପ୍ରାଧାନ୍ୟ ଦିଆଯାଇ ପୂଜାର୍ଚ୍ଚନା କରାଯାଇଥାଏ ।

ସମସ୍ତ କର୍ମର ମୂଳ ଉତ୍ସ ହିଁ ଶ୍ରଦ୍ଧା । ଯେଉଁ କାର୍ଯ୍ୟ ସଫଳ ହୋଇଛି ବା ଯେଉଁ ବ୍ୟକ୍ତି ସଫଳତା ପାଇଛନ୍ତି ତା' ପଛରେ ଅଛି ଗଭୀର ଶ୍ରଦ୍ଧା ଏବଂ ଦୃଢବିଶ୍ୱାସ । ଯଦି ଶ୍ରଦ୍ଧା ନାହିଁ ତେବେ ସେ କାର୍ଯ୍ୟଟି ଅଧାପନ୍ତରିଆ । ଅସଫଳତା ହିଁ ସେହି କର୍ମର ଫଳଶ୍ରୁତି । ତେଣୁ ଜ୍ଞାନ ମାର୍ଗରେ ଗଭୀର ଶ୍ରଦ୍ଧାରେ ମନୋନିବେଶ କଲେ ଜଗତର କଲ୍ୟାଣ ସହ ଜୀବନର ସାର୍ଥକତା ପ୍ରତିପାଦନ କରିହେବ ଏଥିରେ ଦ୍ୱିମତ ନାହିଁ । ତେଣୁ ଯଥାର୍ଥରେ ଶ୍ରୀମଦ୍‌ଭଗବଦ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି-

> "ଶ୍ରଦ୍ଧାବାନ୍ ଲଭତେ ଜ୍ଞାନଂ
> ତତ୍‌ପରଃ ସଂଯତେନ୍ଦ୍ରିୟ
> ଜ୍ଞାନଲବ୍ଧା ପରାଶାନ୍ତି
> ମତିରେଣାଧିଗଚ୍ଛତି" (୪ର୍ଥ ଅଧ୍ୟାୟ ୩୯ମ ଶ୍ଳୋକ)

*ସା/ପୋ: ନିହଲ ପ୍ରସାଦ*
*ଭାୟା: ଗନ୍ଦିଆପାଟଣା*
*ଢେଙ୍କାନାଳ-୭୫୯୦୦୧*
*ମୋ-୯୯୩୮୭୪୧୫୮୩*

# ଯଦ୍ ଯଦାଚରତି ଶ୍ରେଷ୍ଠଃ

ଡକ୍ଟର ଗାୟତ୍ରୀ ମିଶ୍ର (୫୩୬)

ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି-

"ଯଦ୍ ଯଦା ଚରତି ଶ୍ରେଷ୍ଠ ସ୍ତତ୍ତ ଦେବେତରଜନଃ

ସ ଯତ୍ ପ୍ରମାଣ ର୍ମୁରୁତେ ଲୋକ ସ୍ତଦନୁବର୍ତ୍ତତେ" (୩/୨୧)

ଶ୍ରେଷ୍ଠ ପୁରୁଷ ଯେଉଁ ଯେଉଁ ଆଚରଣ କରନ୍ତି, ଅନ୍ୟ ପୁରୁଷମାନେ ମଧ୍ୟ ସେହି ଆଚରଣ କରନ୍ତି ଏବଂ ସେ ଯାହା କିଛି ପ୍ରମାଣ କରିଦିଅନ୍ତି, ସମସ୍ତ ମନୁଷ୍ୟ ତାହା ଅନୁସରଣ କରନ୍ତି ।

କିନ୍ତୁ ସଚରାଚର ଦେଖାଯାଉଅଛି ବଡମାନେ ଯେଉଁ କାର୍ଯ୍ୟ ତାଙ୍କ ଯୌବନାବସ୍ଥାରେ ଓ ପ୍ରୌଢାବସ୍ଥାରେ କରିଥାଆନ୍ତି ସେହି କାର୍ଯ୍ୟ ତାଙ୍କ ସନ୍ତାନମାନେ କିମ୍ବା ଅନୁଗାମୀମାନେ କରି ବସିବାବେଳେ ତାକୁ ଗ୍ରହଣ କରିପାରନ୍ତି ନାହିଁ । ଘରେ, ବାହାରେ, ଶିକ୍ଷାନୁଷ୍ଠାନରେ କାର୍ଯ୍ୟାଳୟରେ ସେହି ଗୋଟିଏ ଦୃଶ୍ୟ ହିଁ ପରିଲକ୍ଷିତ ହେଉଅଛି । ଘରେ ପିଲାଟି ପାଇଁ ତା' ବାପା ମା' ସବୁଠାରୁ ଶ୍ରେଷ୍ଠ । ବାପା, ମା' ଯାହା କରନ୍ତି ସେ ତାକୁ ଅନୁସରଣ କରେ । ସେ ଦେଖେ ତା'ର ମା' ଅଧିକାଂଶ ଦିନ ତାଙ୍କ ବାଲ୍ୟ ସମୟ ଜେଜେ ଜେଜେମାଙ୍କ ଗହଣରେ ନକଟି କଟିଥାଏ ଅଜା ଆଈଙ୍କ ପାଖରେ । ବାପା ଚାକିରୀର ସମସ୍ତ ସମୟ ତାଙ୍କ କର୍ମଭୂମିରେ ବିତାଇ ଥାଆନ୍ତି । ଶେଷରେ ନିଜର ଏକ ଆବାସ ତୋଳି ଆଦରି ନିଅନ୍ତି ବିଦେଶ ଭୂଇଁକୁ । ଭୁଲିଯାଆନ୍ତି ନିଜର ଜନ୍ମ ଭୂମିକୁ । ତାଙ୍କ ପୈତୃକ ଘରଟି କାଳକ୍ରମେ ଭାଙ୍ଗିରୁଜି ଡିହରେ ପରିଣତ ହୁଏ କିମ୍ବା ସହୋଦରମାନଙ୍କ ଦ୍ୱାରା ଅଧିକୃତ ହୁଏ । ନହେଲେ ତାକୁ ବିକ୍ରି କରିଦେଇ ସବୁଦିନ ପାଇଁ ଜନ୍ମଭୂମିରୁ ବିଚ୍ଛିନ୍ନ ହୋଇଯାଆନ୍ତି । ଗାଁମାନଙ୍କରେ ରହୁଥିବା ପରିବାର ବି ଯେତେବେଳେ ପିତା, ପିତାମହଙ୍କ ଦ୍ୱାରା ଏକାନ୍ନବର୍ତ୍ତୀ ଭାବନା ବିଚ୍ଛିନ୍ନତାବାଦକୁ ପରିବର୍ତ୍ତିତ ହୁଏ, ସେମାନଙ୍କ ଦାୟାଦମାନେ ବି ସେହି ପନ୍ଥାକୁ ଶ୍ରେୟ ବୋଲି ଗ୍ରହଣ କରିନିଅନ୍ତି । ପୁଅ ଝିଅମାନେ ଯେତେବେଳେ ଦେଖନ୍ତି ବାପାଙ୍କର ଅବସର ସମୟ ଶ୍ୱଶୁରାଳୟର ଆତ୍ମୀୟମାନଙ୍କ ସହ ବିତେ, ଘରକୁ ବାପାଙ୍କର ସମ୍ପର୍କୀୟ କେହି ଆସିଲେ ମା'ଙ୍କର ନୀରବ ପ୍ରତ୍ୟାଖ୍ୟାନ ସେମାନଙ୍କୁ ଅତିଶୀଘ୍ର ଘର ଛାଡିବା ପାଇଁ ବାଧ୍ୟ କରିଥାଏ । ଅନ୍ୟପକ୍ଷରେ ମା'ଙ୍କର ପିତ୍ରାଳୟରୁ ସମ୍ପର୍କୀୟମାନେ ଆସିଲେ ତାଙ୍କର ଖୁସିର ସୀମା ରହେନାହିଁ ସେତେବେଳେ ବାପା ମା'ଙ୍କର ଏହିସବୁ ଆଚରଣ ସେମାନଙ୍କୁ ପ୍ରଭାବିତ କରିଥାଏ । ଯାହା ତାଙ୍କ ପରବର୍ତ୍ତୀ ଜୀବନରେ ପ୍ରତିଫଳିତ

ହୋଇଥାଏ । ସେମାନେ ପିତାମାତାଙ୍କ କାର୍ଯ୍ୟକଳାପକୁ ହିଁ ଅନୁସରଣ କରନ୍ତି । ପିଲାମାନଙ୍କର ଏ ଆଚରଣ ବୃଦ୍ଧ ପିତାମାତାଙ୍କୁ ମରଣାନ୍ତକ କଷ୍ଟ ଦିଏ ଏବଂ ସନ୍ତାନମାନଙ୍କର କୁଠାରଟନା କରିବାକୁ ପଶ୍ଚାଦ୍‌ପଦ ହୁଅନ୍ତି ନାହିଁ । ସେମାନେ ନିଜର ଅତୀତକୁ ସ୍ମରଣ କରିପାରନ୍ତି ନାହିଁ ଯେ, ସେମାନେ ହିଁ ତାଙ୍କ ସନ୍ତାନମାନଙ୍କର ପଥ ପ୍ରଦର୍ଶକ ଥିଲେ । ସେମାନେ ଯାଇଥିବା ରାସ୍ତାରେ ତାଙ୍କ ପିଲାମାନେ ଯାଇଛନ୍ତି ।

ବିଦ୍ୟାଳୟରେ ଛାତ୍ରଟିଏ ପାଇଁ ଗୁରୁ ହିଁ ଶ୍ରେଷ୍ଠ । ତା'ର ଚରିତ୍ର ଗଠନରେ ଗୁରୁଙ୍କର ଭୂମିକା ବି ରହିଛି । ଯେତେବେଳେ ସେ ଦେଖେ ଶିକ୍ଷକଙ୍କର ସମୟାନୁବର୍ତ୍ତିତାର ଅଭାବକୁ, ଦେଖେ ନିଶାସକ୍ତ ଶିକ୍ଷକଙ୍କୁ, ଦେଖେ ପୂଜାଯୋଗ୍ୟ ଗୁରୁଙ୍କର ଚରିତ୍ର ସ୍ଖଳନକୁ, ସେତେବେଳେ ଏସବୁ ତା'ର ଅବଚେତନ ମନକୁ ପ୍ରଭାବିତ କରିଥାଏ । ସେ ଭାବିନିଏ ଯେ ଆଦର୍ଶବାଦ କେବଳ ବାଚନିକ । ଜୀବନ ସହ ଏହା ସଂଶ୍ଲିଷ୍ଟ ନୁହେଁ । ମାନବିକ ମୂଲ୍ୟବୋଧ ତା' ଜୀବନ ପରିସରରୁ ଉଭେଇଯାଏ । ସେ ବି ନିଜକୁ ଗୁରୁଙ୍କର ଅନୁରୂପ କରି ଗଢେ ।

କର୍ମକ୍ଷେତ୍ରରେ ଉଚ୍ଚ ପଦାଧିକାରୀମାନେ ସମସ୍ତ କାର୍ଯ୍ୟଭାର ଅଧସ୍ତନ କର୍ମଚାରୀ ଉପରେ ନ୍ୟସ୍ତ କରି ନିଶ୍ଚିନ୍ତ ହୋଇଯାଆନ୍ତି । ବିଶୃଙ୍ଖଳିତ କାର୍ଯ୍ୟ ପାଇଁ ନିଜର ଦାୟିତ୍ୱହୀନତାକୁ ବିଚାର ନକରି ଅଧସ୍ତନ କର୍ମଚାରୀମାନଙ୍କୁ ହିଁ ଦାୟୀ କରିଥାଆନ୍ତି । ଉଚ୍ଚପଦାଧିକାରୀତ୍ୱର କ୍ଷମତା ପ୍ରୟୋଗକରି, ସମସ୍ତ ସୁଖ ସୁବିଧାରେ ସେମାନଙ୍କର ନ୍ୟାଯ୍ୟ ଅଧିକାରକୁ ସାବ୍ୟସ୍ତ କରି ଏକ ବିକୃତ ପରମ୍ପରା ସୃଷ୍ଟି କରନ୍ତି । ଦୁର୍ନୀତିର ବୀଜରୋପଣ କରନ୍ତି ।

ଜନସେବାରେ ନିଜକୁ ଉତ୍ସର୍ଗ କରିବାର ଦ୍ୱାହି ଦେଇ ମନ୍ତ୍ରୀ, ବିଧାୟକମାନେ ଜନକଲ୍ୟାଣ କାର୍ଯ୍ୟରୁ ବହୁଦୂରକୁ ଚାଲିଯାଇ ରାଜସ୍ୱ ଅପହରଣ କରିବା, କ୍ଷମତା ପାଇଁ ପରସ୍ପର ମଧ୍ୟରେ ଲଢ଼େଇ କରିବା ଇତ୍ୟାଦି ସମାଜକୁ ବିଶୃଙ୍ଖଳିତ କରିବାରେ ସହାୟକ ହୁଏ । ଦୁର୍ନୀତି ନିମ୍ନସ୍ତରରୁ ଉପରସ୍ତରକୁ ଯାଇନଥାଏ ବରଂ ଉପରସ୍ତରରୁ ନିମ୍ନସ୍ତରକୁ ଆସିଥାଏ । ଦୁର୍ନୀତି ତାକୁ ହିଁ କୁହାଯାଏ ଯାହା ସାମୂହିକ କଲ୍ୟାଣରେ ବାଧା ସୃଷ୍ଟି କରିଥାଏ । ଉପରସ୍ତର ଯଦି ସ୍ୱଚ୍ଛ ଓ ଦୁର୍ନୀତିମୁକ୍ତ ତଳସ୍ତର ବି ସ୍ୱତଃ ସ୍ୱଚ୍ଛ ଓ ଶୃଙ୍ଖଳିତ ହୋଇଥାଏ । ତେଣୁ ଅନ୍ୟ ଠାରୁ ଆଦର୍ଶବାଦ ଆଶା କରିବାବେଳେ ନିଜକୁ ଆଦର୍ଶ କରି ଗଢିବା ଆବଶ୍ୟକ । କର୍ମ ନକରି କେବଳ ଭାଷଣ ଦ୍ୱାରା ପରିବର୍ତ୍ତନ ସମ୍ଭବ ନୁହେଁ ।

ମହାତ୍ମାଗାନ୍ଧୀ ନିଜେ ସୂତାକାଟି, ଖଣ୍ଡେ ଧୋତି ଓ ଚାଦରକୁ ପରିଧେୟରୂପେ ଗ୍ରହଣ କରିଥିଲେ । କୋର୍ଟ, ପ୍ୟାଣ୍ଟ, ସାର୍ଟ ପିନ୍ଧା ଜନସାଧାରଣଙ୍କୁ ବିଦେଶୀ ଜିନିଷ ବର୍ଜନ ପୂର୍ବକ ଧୋତି ପିନ୍ଧିବାକୁ ଉପଦେଶ ଦେଇଥିଲେ । ଇଂରେଜ ସରକାରଙ୍କ ଅନ୍ୟାୟକୁ

ପ୍ରତିବାଦ କରି ସେ ନିଜେ ଯେଉଁ ଶାରୀରିକ ନିର୍ଯ୍ୟାତନାକୁ ବରଣ କରିବାକୁ ପ୍ରଥମେ ଆଗେଇ ଆସିଥିଲେ ତାକୁ ଦେଖି ସାଧାରଣ ଜନତା ତାଙ୍କ ଆହ୍ୱାନକୁ ଗ୍ରହଣ କଲେ ଏବଂ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ଶେଷରେ ସେ ମହାତ୍ମା ଆସନରେ ବସିଲେ ।

ତେଣୁ ସ୍ୱଚ୍ଛ ଓ ଦୁର୍ନୀତିମୁକ୍ତ ରାଷ୍ଟ୍ରଗଠନ କରିବାକୁ ହେଲେ, ଦେଶରୁ ଆତଙ୍କବାଦର ବିଲୋପ ସାଧନ କରିବାକୁ ହେଲେ ରାଷ୍ଟ୍ରନାୟକମାନଙ୍କର ପ୍ରଥମ କର୍ତ୍ତବ୍ୟ ନିଜ ନିଜ ପଦବୀର ମର୍ଯ୍ୟାଦାରକ୍ଷାକାରୀ କର୍ମ ସମ୍ପାଦନ କରିବା । ପରିବାରଠାରୁ ଆରମ୍ଭ କରି ରାଷ୍ଟ୍ର ପର୍ଯ୍ୟନ୍ତ ସବୁଠାରେ ମୁଖ୍ୟ ବ୍ୟକ୍ତିମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଭଗବାନ ଶ୍ରୀକୃଷ୍ଣ ସମାଜର କଲ୍ୟାଣ ପାଇଁ, ଧର୍ମ ରକ୍ଷା ପାଇଁ ଏହି ବାର୍ତ୍ତା ଦେଇଯାଇଅଛନ୍ତି, ଯାହା କେବଳ ପାଠ୍ୟରେ ସୀମିତ ନରହି ଆଚରଣୀୟ ହେବା ଆବଶ୍ୟକ ।

*୩୦୩, ମେଟ୍ରୋ ରେସିଡେନ୍ସି*
*ନୟାପଲ୍ଲୀ, ଭୁବନେଶ୍ୱର-୨୨*

# ଧର୍ମ ବକ ମହାତ୍ମା ଓ ଧର୍ମଭୀରୁ ମଣିଷ

ବିନୋଦିନୀ ନନ୍ଦ (୧୮୯)

ଯୁଗ ଅନୁସାରେ ମହାତ୍ମାମାନେ ମଣିଷଙ୍କୁ ପରମାତ୍ମାଙ୍କ ନିକଟବର୍ତ୍ତୀ ହେବାର ବାଟସବୁ ବତାଇ ଆସିଛନ୍ତି । ଯେପରି, ସତ୍ୟଯୁଗରେ ତପସ୍ୟା, ତ୍ରେତୟାରେ ଯଜ୍ଞ ଓ ଦ୍ୱାପରରେ ପୂଜାର୍ଚ୍ଚନା ଏବଂ କଳିଯୁଗରେ କେବଳ ଇଷ୍ଟ ଦେବଦେବୀଙ୍କ ନାମଜପ ବା ଭଜନ ମାଧ୍ୟମରେ ପରଂବ୍ରହ୍ମଙ୍କ ସାନ୍ନିଧ୍ୟ ଲାଭ କରିହେବ । ସେମାନଙ୍କ ମତରେ ନାମ ସ୍ମରଣ ଯାହାର ସାରଥି, ସେ ରଥୀ ନିଶ୍ଚୟ ପ୍ରତ୍ୟେକ କାର୍ଯ୍ୟରେ ଯଶସ୍ୱୀ ହେବ । ତା' ପାଇଁ ସବୁ ଅଶୁଭ ଶୁଭ ହେବ ଓ ସମସ୍ତ ଅମଙ୍ଗଳ ମଙ୍ଗଳପ୍ରଦ ହେବ ।

ପୂର୍ବେ ସାଧୁସନ୍ଥମାନଙ୍କଠାରେ ସମସ୍ତ ଦେବୋପମ ଗୁଣ ଭରି ରହିଥିଲା । ଧନୀ, ଗରିବ ସମସ୍ତଙ୍କ ପ୍ରତି ସେମାନଙ୍କର ସମାନ ଭାବ ଥିଲା । ଧନ-ସମ୍ପତ୍ତି ତଥା ପଦ-ପ୍ରତିଷ୍ଠାର ମୋହ ଛାଡ଼ି ସେମାନେ ବଣ ପାହାଡ଼ ଘେରା ଗୁମ୍ଫା କିମ୍ବା ପର୍ଣ୍ଣକୁଟୀରରେ ରହି, ସରଳ ନିରାଡ଼ମ୍ବର ଜୀବନଯାପନ କରୁଥିଲେ । ନିଜକୁ ଭଗବାନଙ୍କୁ ସେବକ ଭାବି ସେମାନେ ନିଃସ୍ୱାର୍ଥପର ଭାବରେ ଜଗତର ହିତ ପାଇଁ କାର୍ଯ୍ୟ କରୁଥିଲେ । ଭକ୍ତଙ୍କ ଠାରୁ ଯାହା ଭିକ୍ଷା ଗ୍ରହଣ କରୁଥିଲେ ସେଥିରେ ନିଜର ଜୀବିକା ନିର୍ବାହ କରୁଥିଲେ । ବିଭୁଙ୍କ ନାମ ସ୍ମରଣରେ ସେମାନଙ୍କର ଅଧିକାଂଶ ସମୟ ବିତିଯାଉଥିବାରୁ, ସେମାନଙ୍କୁ ନିଜ ଶରୀରଚର୍ଯ୍ୟା ପାଇଁ ସମୟ ମିଳୁନଥିଲା କିମ୍ବା ସେଥିପ୍ରତି ସେମାନଙ୍କର ଧ୍ୟାନ ମଧ୍ୟ ନଥିଲା । ସେହିପରି ଏକ ଜନକଲ୍ୟାଣକାରୀ ସଦ୍‌ଗୁରୁ ଥିଲେ 'ରାମ ଚରିତ ମାନସ'ର ରଚୟିତା 'ସନ୍ଥ ଗୋସ୍ୱାମୀ ତୁଳସୀ ଦାସ' । ସେ କେବଳ ରାମ ନାମ ଜପକୁ ଆଧାର କରି ସତ୍‌କର୍ମ କରୁଥିଲେ । କୌଣସି ବ୍ୟକ୍ତି ନିଜର ଶୁଦ୍ଧ ଇଚ୍ଛାଟିଏ ତାଙ୍କ ନିକଟରେ ପ୍ରକାଶ କଲେ ତାହା ତତ୍‌କ୍ଷଣାତ୍ କ୍ରିୟାଶୀଳ ହୋଇ ବ୍ୟକ୍ତିକୁ ଶୁଭଫଳ ମିଳୁଥିଲା । ଅନେକ ସମୟରେ ଅଲୌକିକ ଏବଂ ଅବିଶ୍ୱସନୀୟ ଘଟଣା ମଧ୍ୟ ଘଟୁଥିଲା । ସତ କହିବାକୁ ଗଲେ ଧର୍ମ ଓ ଧର୍ମଭାବ ହିଁ ତାଙ୍କର ବିଶେଷତ୍ୱ ଥିଲା । ସେହିପରି ପ୍ରକୃତ ସାଧୁସନ୍ଥ ଓ ସଦ୍‌ଗୁରୁମାନେ ହିଁ ଆମ ଦେଶର ସଂସ୍କୃତି ଓ ସଭ୍ୟତାର ଅମୂଲ୍ୟନିଧି ଏବଂ ସେମାନଙ୍କ ଦିବ୍ୟବାଣୀ ଅନ୍ଧାରରେ ଘୂରି ବୁଲୁଥିବା ପଥଭ୍ରଷ୍ଟ ପଥିକମାନଙ୍କୁ ମାର୍ଗ ଦର୍ଶନର ସହାୟକ ହୋଇଥାଏ । ହୃଦୟକୁ ଜ୍ଞାନବାନ ଓ ପବିତ୍ର କରିଥାଏ ।

କିନ୍ତୁ ସେହି ପୌରାଣିକ ମୁନିରଷି ଦ୍ୱାହି ଦେଇ, ବର୍ତ୍ତମାନର ଆତ୍ମପ୍ରଚାର ପ୍ରମତ୍ତ ବାବାଗଣ-ଆଶ୍ରମରେ ରହି ମୁଖମଣ୍ଡଳରେ ଘଞ୍ଚ ଦାଢ଼ି, ମସ୍ତକରେ ଲମ୍ବାଚୂଳ ଏବଂ ଶରୀରରେ ଗୈରିକ ବସ୍ତ୍ର ପରିଧାନ କରି ଲୋକମାନଙ୍କ ବିଶ୍ୱାସଭାଜନ ହୋଇଯାଉଛନ୍ତି ।

ସେମାନେ ଏଭଳି ଭାବଭଙ୍ଗୀ ପ୍ରଦର୍ଶନ କରୁଛନ୍ତନ୍ତି, ସତେ ଯେମିତି ସେମାନଙ୍କ ଜୀବନ ସମ୍ପୂର୍ଣ୍ଣ ଭାବରେ ପରମାତ୍ମାଙ୍କ ପ୍ରତି ସମର୍ପିତ ଏବଂ ଈଶ୍ୱର ଚିନ୍ତନ, ଧ୍ୟାନ ଧାରଣା ଆଦି ତାଙ୍କ ଜୀବନକୁ ଅମୃତମୟ କରି ତୋଳିଛି । ଗୁରୁ, ପଣ୍ଡିତ, ମହାତ୍ମା, ବାବା, ବାପୁ ଆଦି ବିଭିନ୍ନ ନାମରେ ଦେଶର ଚାରିଆଡ଼େ ସଭ୍ୟ ଶିକ୍ଷିତ ସମାଜ ଆଖିରେ ଅଙ୍ଗୁଳି ଗେଞ୍ଜି ନିଜର ସାମ୍ରାଜ୍ୟ ବିସ୍ତାର କରୁଛନ୍ତି । ତନ୍ତ୍ର-ମନ୍ତ୍ର, ଯାଦୁବିଦ୍ୟା ଭରି ରହିଥିବା ପଣ୍ଡୋରା ବାକ୍ସର ଚାବିକାଠି ସେମାନଙ୍କ ହାତରେ ଥିବାରୁ ସେମାନେ ଛନ୍ଦ୍ରଜାଲ ପରି କିଛି ଅଲୌକିକତା ଦେଖାଇ ଲୋକଙ୍କୁ ବଶ କରି ନେଉଛନ୍ତି ଏବଂ ଶେଷରେ କାର୍ଯ୍ୟ ହାସଲର ଗୋଟି ଚାଳନା କରୁଛନ୍ତି । ସେମାନଙ୍କର ଚେଲା ଚାମୁଣ୍ଡାଗଣ ମଧ୍ୟ ସେହି ଧୂର୍ତ୍ତ ବାବାମାନଙ୍କୁ ତ୍ରିକାଳଦର୍ଶୀ ସାଧୁ ଏବଂ ସେମାନଙ୍କ ଅଲୌକିକ ଶକ୍ତିର ଡିଣ୍ଡିମ ପିଟନ୍ତି । ଯାହାଫଳରେ କେବଳ ଦିନଦୁଃଖୀ ନୁହଁନ୍ତି ବରଂ ନେତା ଅଭିନେତା, ଶାସକ, ପ୍ରଶାସକ ସମସ୍ତେ ସେହି ଆତ୍ମଘୋଷିତ ଭଗବାନମାନଙ୍କ ଚରଣରେ ଶରଣ ନେଉଛନ୍ତି ।

କିନ୍ତୁ ବିଡ଼ମ୍ବନା ହେଉଛି ସେହି ଗୁରୁରୂପୀ ଧର୍ମବକଗଣ ନା ତ ବାସ ଛାଡ଼ିଥାନ୍ତି ନା ବାସନା । ରାଜନୈତିକ ପୃଷ୍ଠପୋଷକତା ପାଇଁ ସେମାନେ ଭକ୍ତମାନଙ୍କୁ ଶୋଷଣ କରିବାରେ ସଫଳ ହୋଇଯାଉଛନ୍ତି । ଆଶ୍ରମର ପୂଜା ପାର୍ବଣ ଓ ବାର୍ଷିକୋତ୍ସବ ନା'ରେ ଦେଶ ବିଦେଶର ଅନେକ ଶ୍ରଦ୍ଧାଳୁ, ଧର୍ମଭୀରୁ ଭକ୍ତଙ୍କ ଠାରୁ ବିପୁଳ ପରିମାଣରେ ଅର୍ଥ ଆଦାୟ କରି ଅଳ୍ପଦିନ ମଧ୍ୟରେ ଆଶ୍ରମଟିକୁ ବିରାଟ ସୌଧରେ ପରିଣତ କରି ଦେଉଛନ୍ତି । ଶୁଆପରି ଘୋଷି ନିତିଦିନ ହେଉଥିବା ନିଜର ପ୍ରବଚନରେ 'ମାତୃବତ୍ ପରଦାରେଷୁ କହୁଥିବାବେଳେ ନିଜେ ଆଶ୍ରମବାସିନୀ ମହିଳା ଭକ୍ତମାନଙ୍କୁ ଅସଦାଚରଣ ଓ ଅଶାଳୀନ ବ୍ୟବହାର ପ୍ରଦର୍ଶନ କରନ୍ତି । ସରଳ ଜୀବନଯାପନର ଉପଦେଶ ଦେଇ ନିଜେ ଶୀତତାପ ନିୟନ୍ତ୍ରିତ ବିରାଟ ପ୍ରାସାଦରେ ଆରାମରେ ରହନ୍ତି । ଦାମୀ ଗାଡ଼ି ଓ ଅତ୍ୟାଧୁନିକ ଆସବାବପତ୍ର ବ୍ୟବହାର କରନ୍ତି । ନିର୍ଲୋଭ ହେବାର ଶିକ୍ଷା ଦେଇ ସରକାରୀ ଜମିକୁ ହଡ଼ପ କରନ୍ତି । ସାତ୍ତ୍ୱିକ ଆହାର ଭୋଜନ କରିବାକୁ ପ୍ରବଚନ ଦେଇ ନିଜେ ସବୁପ୍ରକାର ରାଜସିକ ଓ ତାମସିକ ଖାଦ୍ୟ ଆକଣ୍ଠ ଭୋଜନ କରନ୍ତି । ସତ କହିବାକୁ ଉପଦେଶ ଦେଇ ନିଜେ ଡାହାମିଛ କହନ୍ତି । ଏପରିକି ନିଜ ନାଁ, ଗାଁ, ଠିକଣା ସମ୍ପର୍କରେ ମଧ୍ୟ ମିଥ୍ୟା ବିବରଣୀ ଦିଅନ୍ତି । ନିଜ ନାମରେ କିମ୍ବା ନିଜ ଆତ୍ମୀୟମାନଙ୍କ ନାମରେ ବଙ୍ଗଳା, ଗାଡି ଓ ଜୀବନବୀମାଠାରୁ ଆରମ୍ଭ କରି ବିଭିନ୍ନ ବ୍ୟାଙ୍କରେ ଏକାଉଣ୍ଟ ଖୋଲି ସେହି ବିପୁଳ ଆୟର ସିଂହଭାଗ ଜମା କରିଦେଉଛନ୍ତି । କିନ୍ତୁ ସମାଜରେ ନିଜର ଭାବମୂର୍ତ୍ତି ନିର୍ମଳ ରଖିବା ପାଇଁ ସେହି ଅନୁଦାନର କିୟାଦଂଶ ରାସ୍ତାଘାଟ, ଡାକ୍ତରଖାନା, ବିଦ୍ୟାଳୟ ନିର୍ମାଣ ପରି କେତୋଟି ଜନହିତକର କାର୍ଯ୍ୟ କରିଦେଉଛନ୍ତି ।

ସେହି ଶଠ ବାବାମାନଙ୍କର ଆଶାରୂପକ ଅଗ୍ନିରେ ଆହୁରି ଘିଅ ଢ଼ାଳିଦେଉଛନ୍ତି ଆଧୁନିକ ଯୁଗର ଆତ୍ମକୈନ୍ଦ୍ରିକ, ସ୍ୱାର୍ଥପର, ଦୁର୍ବଳମନା, ତଥା ଭେଲିକିରେ ବିଶ୍ୱାସ କରୁଥିବା ଗୁରୁବାଦରେ ବିଶ୍ୱାସୀ ଲୋକମାନେ । ଏହି ବାବାମାନଙ୍କ ଆଚରଣ ଓ ଉଚ୍ଚାରଣର ପ୍ରହେଳିକାରେ ଭାସିଯାଇ ନିଜକୁ ଓ ନିଜର କଷ୍ଟାର୍ଜିତ ଧନସମ୍ପତ୍ତିକୁ ସେମାନଙ୍କ ପାଦତଳେ ସମର୍ପି ଦେଉଛନ୍ତି । ଏପରିକି ନିଜ ପରିବାରର ମହିଳାମାନଙ୍କୁ ମଧ୍ୟ ସେହି ଧୂର୍ତ୍ତମାନଙ୍କ ଚରଣାଶ୍ରିତ ହେବାପାଇଁ ବାଧ କରୁଛନ୍ତି । ସେଭଳି ସଦ୍‌ଗୁରୁଙ୍କ କୃପା ମିଳିଲେ ସେମାନେ ସଂସାରର ଦୁଃଖ-ଯନ୍ତ୍ରଣା ରୋଗବ୍ୟାଧି ଆଦି ସମସ୍ତ ବିପତ୍ତିରୁ ମୁକ୍ତି ପାଇଯିବେ ଏବଂ ସେମାନଙ୍କ ଧନ ସମ୍ପତ୍ତି ମଧ୍ୟ ବୃଦ୍ଧିପ୍ରାପ୍ତ ହେବ ବୋଲି ଭାବନ୍ତି । ତାଙ୍କ ନିର୍ଦ୍ଦେଶମାନି ଆଶ୍ରମରେ ଗୋଷ୍ଠୀଭୁକ୍ତ ହୋଇ ରହିଲେ ସେମାନେ ନିଜେ ମାନସିକ ଶାନ୍ତି ପାଇବା ସହିତ ସମାଜର ହିତ ପାଇଁ ମଙ୍ଗଳକର କାର୍ଯ୍ୟ କରିପାରିବେ ବୋଲି ଭାବୁଥାନ୍ତି ।

କିନ୍ତୁ ଭକ୍ତମାନେ ସେହି ଭଣ୍ଡବାବାମାନଙ୍କ ଅସଲ ରୂପକୁ ବିଳମ୍ବରେ ଚିହ୍ନିପାରନ୍ତି । ସେମାନଙ୍କ କଳାକାରନାମା ଦାଣ୍ଡରେ ପଡ଼ି ହାଟରେ ଗଡ଼ିବାବେଳକୁ ଭକ୍ତମାନଙ୍କ ସୁଖସ୍ୱପ୍ନ ମରୀଚିକା ପାଲଟି ଯାଇଥାଏ ଏବଂ ସେମାନେ ସର୍ବସ୍ୱାନ୍ତ ହୋଇସାରିଥାନ୍ତି । ଫଳରେ ଦିନେ ବାବାମାନଙ୍କ ପଦଲେହନ କରୁଥିବା ଭକ୍ତଗଣ ତାଙ୍କ ବିରୁଦ୍ଧରେ ଅଙ୍ଗାର ବର୍ଷା କରନ୍ତି । ପ୍ରତିଶୋଧ ପରାୟଣ ହୋଇ ଆଶ୍ରମ ଭଙ୍ଗାରୁଜା କରନ୍ତି । କେତେକ ବୁଦ୍ଧିଜୀବୀ ବି ସେହି ଅସାଧୁ ଗୁରୁମାନଙ୍କର କାରନାମା ସମ୍ପର୍କରେ ସରକାରଙ୍କ ଲୋଚନକୁ ଆଣିବା ପାଇଁ ଚେଷ୍ଟା କରନ୍ତି । କିନ୍ତୁ ଧର୍ମ ଏକ ସ୍ପର୍ଶକାତର ପ୍ରସଙ୍ଗ ଏବଂ ସରକାରଙ୍କ ଭୋଟ୍‌ବ୍ୟାଙ୍କ ଏଥିପାଇଁ ପ୍ରଭାବିତ ହେଉଥିବାରୁ ସରକାର ମଧ୍ୟ ସାପୁଆକେଳାର ପେଡ଼ିରେ ଥିବା ନିରୀହ ସାପ ପରି ଚେଇଁ ଶୁଅନ୍ତି । ଗଣମାଧ୍ୟମର ହସ୍ତକ୍ଷେପ ଏବଂ ଆବାଳ ବୃଦ୍ଧବନିତାଙ୍କ ସ୍ୱର ଉତ୍ତୋଳନ ତଥା ସମସ୍ତଙ୍କ ମିଳିତ ଉଦ୍ୟମ ଫଳରେ ସରକାର ନିଦ୍ରାତେଜି ଉଠନ୍ତି ଏବଂ ସେମାନଙ୍କୁ ଆଶ୍ରମରୁ ବାହାର କରି ଜେଲ୍ ଦଣ୍ଡରେ ଦଣ୍ଡିତ କରୁଛନ୍ତି ।

ବର୍ତ୍ତମାନ ଆଶାରାମ ବାପୁ, ନିତ୍ୟାନନ୍ଦ, ସାରଥିଦେବ ଓ ଅନ୍ୟାନ୍ୟ ଆତ୍ମଘୋଷିତ ବାବାମାନଙ୍କ ଚରିତ୍ର ସ୍ଖଳନ ଘଟଣା ଓ ଭ୍ରଷ୍ଟାଚାର ପଦାରେ ପଡ଼ିବା ପରେ ସେମାନେ ଏବେ ଜେଲ୍ ଭିତରେ କଏଦୀର ଜୀବନ ବିତାଉଛନ୍ତି । ସେମାନଙ୍କୁ ଆହୁରି କଠୋର ଦଣ୍ଡରେ ଦଣ୍ଡିତ କରିବା ଆବଶ୍ୟକ ଯେପରି ଅନ୍ୟ କେହି ଭଣ୍ଡ ସାଧୁ ବେଶ ଧାରଣ କରିବାକୁ ସାହସ କରିବେ ନାହିଁ । କାମଭାବ ସମସ୍ତଙ୍କର ଅସ୍ଥି ମଜ୍ଜାଗତ । କଠୋର ସାଧନା କରୁଥିବା, ଏପରିକି ନାରୀର ମୁଖଦର୍ଶନ କରୁନଥିବା ମୁନିଋଷିଙ୍କର ମଧ୍ୟ ପଦ ସ୍ଖଳନ ଘଟୁଛି । ତେଣୁ ନାରୀମାନେ ବାବାମାନଙ୍କ ଠାରୁ ଯେତେଦୂର ସମ୍ଭବ ଦୂରେଇ ରହିବା ଉଚିତ୍ । ସେମାନଙ୍କୁ କୃଷ୍ଣ ଭଗବାନ ମନେ କରି ନିଜ ଦେହ ମନ ସମର୍ପି ଦେବା ଉଚିତ ନୁହେଁ ।

ଈଶ୍ୱର କଲ୍ୟାଣକାରୀ ଓ ପରମ ସୁହୃତ । ବିନା କାରଣରେ କାହାରିକୁ ଦଣ୍ଡିତ କରନ୍ତି ନାହିଁ, ବରଂ ସତ୍‌କର୍ମ କରୁଥିବା ନାରୀ ବା ପୁରୁଷଙ୍କ ପୂର୍ବ ପାପର ଦଣ୍ଡକୁ କୋହଳ କରିବା ସହିତ ସେମାନଙ୍କୁ ସୁରକ୍ଷା ପ୍ରଦାନ କରନ୍ତି । ସାରା ବିଶ୍ୱ ସେହି ସର୍ବଶକ୍ତିମାନ ଈଶ୍ୱରଙ୍କ ନିର୍ଦ୍ଦେଶରେ ସଞ୍ଚାଳିତ ହେଉଛି । ସକଳ ଘଟରେ ନାରାୟଣ ଅଛନ୍ତି । ଏହିପରି ଭାବନାକୁ ମନରେ ଦୃଢ଼ କରିନେଇ ଉତ୍ତମ ଗୁଣ ଆଚରଣ କଲେ, ଅନିଶ୍ଚିତ ଭବିଷ୍ୟତକୁ ନେଇ ଆଶଙ୍କା, ଦ୍ୱନ୍ଦ୍ୱ ଓ ମାନସିକ ଉଦ୍‌ବେଳନ ରହିବ ନାହିଁ କିମ୍ବା ସମସ୍ୟାର ସମାଧାନ ପାଇଁ ଧର୍ମମାଫିଆମାନଙ୍କ ଚରଣାଶ୍ରିତ ହେବାକୁ ପଡ଼ିବ ନାହିଁ ।

ଆଜିର ସମାଜରେ ଦୁଷ୍ଟ ଓ ସାଧୁଙ୍କ ଭିତରେ ଦେବାସୁର ସଂଗ୍ରାମ ଚାଲିଛି । ସଜ୍ଜନରୂପୀ ଦେବଗୁରୁଗଣଙ୍କର ସତ୍‌କାର୍ଯ୍ୟ, ସଦାଚରଣ ମସାଲ ସାହାଯ୍ୟରେ ବ୍ୟଭିଚାର ଓ ଅନ୍ଧ ବିଶ୍ୱାସ ଗୁଡ଼ିକ ସମ୍ପୂର୍ଣ୍ଣରୂପେ ପୋଡ଼ି ଛାରଖାର ଏବଂ ଏହି ସଂଗ୍ରାମର ଅନ୍ତ ହେବ । ସାଧୁର ଖୋଳପା ପିନ୍ଧିଥିବା ଅସାଧୁ ଲୋକଙ୍କ କଳା କାରବାର ଦେଖି ତାର୍କିକ ଓ ନାସ୍ତିକମାନେ ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ପର୍କରେ ଅଙ୍ଗୁଳି ନିର୍ଦ୍ଦେଶ କରିବା ଆରମ୍ଭ କରିଛନ୍ତି । ଏହା ଅନ୍ଧ ସୂର୍ଯ୍ୟଙ୍କୁ ଦେଖିପାରେ ନାହିଁ ବୋଲି ସେ ସୂର୍ଯ୍ୟଙ୍କ ଅସ୍ତିତ୍ୱ ଉପରେ ସନ୍ଦେହ ପ୍ରକାଶ କରିବା ପରି କଥା ହେବ । ସୁନାକୁ କଷଟି ପଥରରେ ପରୀକ୍ଷା କରିବା ପରି ଭଲ ଭାବରେ ପରଖି ଆମେମାନେ ସଦ୍‌ଗୁରୁ ନିର୍ବାଚନ କରିବା ଆବଶ୍ୟକ ।

ଶାସ୍ତ୍ରରେ ବର୍ଣ୍ଣିତ ଅଛି- 'ପିତ୍ରୀ ପ୍ରୀତିମାପନ୍ନେ ପ୍ରିୟନ୍ତେ ସର୍ବଦେବତା' ଅର୍ଥାତ୍ ଚଳନ୍ତି ଦେବତା ସମ ମାତା-ପିତାଙ୍କ ଆଶୀର୍ବାଦତୁଲ୍ୟ ଶକ୍ତି ବଳରେ ମଣିଷ ପ୍ରତ୍ୟେକ କାର୍ଯ୍ୟରେ ସଫଳକାମ ହୋଇପାରିବ । ସେବା ହିଁ ହେଉଛି ଶ୍ରେଷ୍ଠ ଧର୍ମ । ଧର୍ମର ଅର୍ଥ ଦେଉଳ, ମସ୍‌ଜିଦ୍ କିମ୍ବା ଗୀର୍ଜାକୁ ଯିବା ନୁହଁ । ନିଜେ ବଞ୍ଚି ଅନ୍ୟକୁ ଶାନ୍ତିରେ ବଞ୍ଚିବାକୁ ଦେବା ହେଉଛି ଧର୍ମର ମୂଳମନ୍ତ୍ର । ଧର୍ମ ହେଉଛି ଧାରଣ କରିବାର ଶକ୍ତି । ଯାହାକି ଗୃହଧର୍ମ, ରାଜଧର୍ମ, ବିଜ୍ଞାନ ଧର୍ମ ଆଦି ସମସ୍ତ ଧର୍ମକୁ ଧାରଣ କରେ ଏବଂ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାରୁ ପ୍ରଗତି ସହିତ ସମାଜରେ ସୁଖ ଶାନ୍ତି ପ୍ରତିଷ୍ଠା କରେ । ତେଣୁ କୁହାଯାଏ 'ପରୋପକାରାୟ ପୁଣ୍ୟାୟ, ପାପାୟ ପରପୀଡ଼ନମ' ଅର୍ଥାତ୍ ଅନ୍ୟର ଉପକାର ହେଲା ପୁଣ୍ୟ ଏବଂ ଅନ୍ୟକୁ କଷ୍ଟ ଦେବା ହେଉଛି ପାପ । ପ୍ରତ୍ୟେକ ନାଗରିକ ଏହିପରି ସଚେତନ ହେବା ସହିତ ନିଜେ ନିଜର ଆତ୍ମସମୀକ୍ଷା କରି ଧର୍ମଭୀରୁ ନହୋଇ କର୍ମବୀର ହେବା ଉଚିତ ।

ଉତ୍ତମ ଚରିତ୍ର ହିଁ ମଣିଷ ପଣିଆର ଅସଲ ଚାବିକାଠି ।

*ଡି/୩୦୬, କୋଏଲ ନଗର, ରାଉରକେଲା-୭୬୯୦୧୪*

*ମୋ- ୯୯୭୮୮୦୪୦୨୩*

❀

# ଭାବର ଠାକୁର

## ବାନପ୍ରସ୍ଥି ବଙ୍ଗାଳି ଚରଣ ଯତି (୬୩)

ଭାବ ବିନୋଦିଆ ହରି ଭାବର ଠାକୁର
ଭାବ ରଖିଲେ ନିଜର ଅଭାବରେ ପର ।

ପ୍ରତ୍ୟେକ ବ୍ୟକ୍ତିର ଉର୍ଦ୍ଧ୍ୱ ଗମନର, ମୋକ୍ଷପ୍ରାପ୍ତିର ସ୍ୱତନ୍ତ୍ରତା ରହିଛି । କିନ୍ତୁ କାହିଁକି କେଜାଣି 'ସର୍ଟ୍‌କଟ'ର ନୀତି ଗ୍ରହଣ କରି ମାନବ ସମୁଦାୟ ମୋକ୍ଷ ମାର୍ଗରେ ନଯାଇ 'ପୁନରପି ଜନମଂ, ପୁନରପି ମରଣଂ'ର ଚକ୍ରରେ ଛନ୍ଦି ହୋଇଯାଆନ୍ତି । ମନୁଷ୍ୟ ନିଷ୍କାମ ଭାବ ପ୍ରାପ୍ତ ହୋଇପାରେ ନାହିଁ ଏବଂ ଅନନ୍ୟ ଭାବରେ ପ୍ରଭୁଙ୍କୁ ଭଜନ କରିପାରେ ନାହିଁ । ଏଇଠାରେ ହିଁ ସବୁ ରକମର ଅସୁବିଧା । ଆର୍ତ୍ତବ୍ୟକ୍ତି, ଦୁଃଖୀ ବ୍ୟକ୍ତି ନାନାପ୍ରକାରର ପ୍ରୟାସ କରେ । କିନ୍ତୁ ପରମାତ୍ମା ହିଁ ସବୁ ଉପାସନାତ୍ମକ କର୍ମକାଣ୍ଡର ଆଧାର ବୋଲି ଭୁଲିଯାଏ । ତାଙ୍କରି ଶରଣାପନ୍ନ ହେବା ଦରକାର । ପରମାତ୍ମା ହେଉଛନ୍ତି ଜୀବନର ଚରମ ଲକ୍ଷ୍ୟ । ଈଶ୍ୱର ସମ୍ବନ୍ଧୀୟ ଧାରଣା ଆମକୁ ବିସ୍ତୃତ କରିବାକୁ ହେବ । ଭଗବାନ ହିଁ ହେଉଛନ୍ତି ମାଲିକ । ସେଇ ମାଲିକଙ୍କୁ ଆମେ ତତ୍ତ୍ୱତଃ ଜାଣିବା- ଏହାହିଁ ଆମ ଜୀବନର ଉଦ୍ଦେଶ୍ୟ ହେଉ ।

ପରମାତ୍ମା ଆମ ପାଇଁ ଶ୍ରୀକୃଷ୍ଣ ରୂପରେ, ଜଗନ୍ନାଥଙ୍କ ରୂପରେ, ଶ୍ରୀରାମଙ୍କ ରୂପରେ, ସଦାଶିବ ରୂପରେ କିମ୍ବା ଦେବୀଙ୍କର କୌଣସି ରୂପରେ ରହିଛନ୍ତି । କିନ୍ତୁ ସେ ହେଲେ ଆଦର୍ଶର ସମୁଚ୍ଚୟ, ଶ୍ରେଷ୍ଠତାର ପର୍ଯ୍ୟାୟ, ସଦ୍‌ଗୁଣରେ ଅଭିପୂରିତ । ପରଂବ୍ରହ୍ମ ପରମାତ୍ମା 'ବସୁଦେବ ସର୍ବମିତି' ବୋଲି ନିରନ୍ତର ତାଙ୍କର ହିଁ ସ୍ମରଣ କଲେ ଆମେ ସବୁକିଛି ପାଇପାରିବା । ଭଗବାନ ହେଉଛନ୍ତି ତ୍ରିଗୁଣାତ୍ମକ । ସେ ସମସ୍ତଙ୍କର ଅଧିଷ୍ଠାତା, ପରମପିତା, ପରମାତ୍ମା । କର୍ମକାଣ୍ଡକୁ ନୁହେଁ, ସେ ଭାବକୁ ପରୀକ୍ଷା କରନ୍ତି । ଭାବ ଅନୁସାରେ ହିଁ ଫଳ ଦିଅନ୍ତି । ଯଜନର ବିଧି ବା କର୍ମକାଣ୍ଡର ଭାଷା ଅନୁସାରେ ନୁହେଁ । ନିଜର ସ୍ୱାଭାବିକ କର୍ମ ଦ୍ୱାରା ସେଇ ପରମେଶ୍ୱରଙ୍କର ପୂଜା କରି ମନୁଷ୍ୟ ପରମସିଦ୍ଧିପ୍ରାପ୍ତ ହୁଏ । ସେଥିପାଇଁ ସେ କହନ୍ତି, "ତୁମର ସବୁ କର୍ମକୁ ମୋତେ ଅର୍ପଣ କରିଦିଅ । ତାହାହିଁ ମୋର ପୂଜା ।" ଭଗବାନଙ୍କ ପୂଜା କିପରି କରାଯାଇପାରେ ତା' ମଧ୍ୟ ସେ ଜଣାଇ ଦେଇଛନ୍ତି ।

ପତ୍ରଂ, ପୁଷ୍ପଂ, ଫଳଂ ତୋୟଂ ଯୋମେ ଭକ୍ତ୍ୟାପ୍ରୟଚ୍ଛତି
ତଦହଂ ଭକ୍ତ୍ୟୁପହୃତ ମଶ୍ନାମି ପ୍ରୟତାତ୍ମନଃ (ଗୀତା ୯/୨୬)

(ଯେ କେହି ମତେ ଭକ୍ତିପୂର୍ବକ ପତ୍ର, ପୁଷ୍ପ,ଫଳ ଜଳେ ଇତ୍ୟାଦି ଅର୍ପଣ କରେ ।

ସେଇ ଶୁଦ୍ଧ ହୃଦୟ ବ୍ୟକ୍ତିର ପ୍ରେମ ପୂର୍ବକ ଦିଆଯାଇଥିବା ଅର୍ପଣ ମୁଁ ଗ୍ରହଣ କରେ) । ଧରଯାଉ ଏ ସମସ୍ତ ପଦାର୍ଥ ଉପଲବ୍ଧ ହୋଇପାରିଲା ନାହିଁ । ଆମର କରଯୁଗଳ ଓ ମଥା ତ ରହିଛି । କରଯୋଡ଼ି ଭକ୍ତିଭାବନାକୁ ହୃଦରେ ଧରି ସାଷ୍ଟାଙ୍ଗ ପ୍ରଣାମଟିଏ ତ କରିପାରିବା । ପ୍ରେମ ଭରେ ସେ ଏହା ଗ୍ରହଣ କରନ୍ତି ।

ଆମେ ଈଶ୍ୱରଙ୍କୁ ପୂଜା କରି କହୁ- "ଜଳମ୍ ଗନ୍ଧାକ୍ଷତମ, ପୁଷ୍ପମ୍, ଧୂପମ୍, ଦୀପମ୍ ନୈବେଦ୍ୟମ୍ ସମର୍ପୟାମି ।" ଜଳ ରୂପରେ କେବେ ନ ଲଭିବା ଶ୍ରଦ୍ଧା ଗନ୍ଧ-ଅକ୍ଷତ ରୂପେ ଆମର ପୁଣ୍ୟକର୍ମ, ଆମର ଅତୁଟ ନିଷ୍ଠା, ପୁଷ୍ପ ରୂପେ ଆମର ଅନ୍ତର ଉଲ୍ଲାସ ଧୂପ-ଦୀପ ରୂପେ ଆମ ପ୍ରତିଭା ଏବଂ ଯୋଗ୍ୟତା ତଥା ନୈବଦ୍ୟେ ରୂପେ ଆମର ସାଧନ-ସନ୍ଦେହର ଏକ ଅଂଶକୁ, ହେ ଦେବ ! ଗ୍ରହଣ କରନ୍ତୁ । ଭଗବାନଙ୍କୁ ଯାହାକିଛି ଅର୍ପଣ କଲେ ବି, ଦୁଇଟି ସର୍ତ୍ତ ପୂରଣ ହେଉଥିଲେ ତାହା ପୂର୍ଣ୍ଣ ହୋଇଯାଏ । ପ୍ରଥମ ସର୍ତ୍ତ ହେଲା, ସେଇ ଉପହାର ପ୍ରେମ ପୂର୍ବକ ହେବା ଦରକାର । ଦ୍ୱିତୀୟ ସର୍ତ୍ତ ହେଲା, ଶୁଦ୍ଧ-ହୃଦୟ ସମ୍ପନ୍ନ ଭାବନାଶୀଳ ସାଧକ ଦ୍ୱାରା ତାହା ପ୍ରଦତ୍ତ ହେବା ଦରକାର । ଯେଉଁ ପରିମାଣରେ ଏଇ ଦୁଇଟି କଥାର ଅଭାବ ହେବ, ସେଇ ଭାବ- ପ୍ରାର୍ଥନା, ସେଇ ପରିମାଣରେ ଭଗବାନଙ୍କ ଅପବ୍ୟୟ ହେବ । ଆମର ଅର୍ପଣ ଭକ୍ତି ପୂର୍ବକ ହେଲେ ଏକ ମହାନ୍ ଯଜ୍ଞର ରୂପ ଗ୍ରହଣ କରେ ।

ଭକ୍ତଙ୍କ ଭାବରେ ବଳ ଥିଲେ ଗାୟତ୍ରୀ, ଶ୍ରୀରାମ, ଶ୍ରୀକୃଷ୍ଣ ଶଙ୍କର, ସମସ୍ତେ ଡାକିବା ମାତ୍ରେ ଚାଲିଆସିବେ । ରାମକୃଷ୍ଣ ପରମହଂସଙ୍କ କାଳୀ ତାଙ୍କ ସଙ୍ଗେ ଖାଉଥିଲେ । ମୀରା ଗୀତ ଗାଉଥିଲେ । କୃଷ୍ଣ ନାଚୁଥିଲେ । ଏପରି ଅଗଣିତ ପ୍ରମାଣ ରହିଛି । ଭାବ ଯେତେ ଗଭୀର ହେବ, ଯେତେ ଶୁଦ୍ଧ ହେବ, ଉପହାର ଯାହାକିଛି ହେଉପଛେ, ପରମାତ୍ମାଙ୍କ ପାଖେ ପହଞ୍ଚିଯିବ । ଭଗବାନ ଦ୍ରୌପଦୀଙ୍କ ଅଇଁଠା ବାସନରୁ ଗୋଟିଏ ଦାନା ଭାତ, ଶବରୀର ଅଇଁଠା କୋଳି ଖାଇ ତୃପ୍ତ ହୋଇଥିଲେ । ସବୁ ବିଧି ବିଧାନ ହେଉଛି ହୃଦୟର । କୌଣସି କର୍ମକାଣ୍ଡର ଦରକାର ନାହିଁ, କେବଳ ଭାବନା ଦରକାର । ଆମେ ଯାହାର ହେଲେ ଉପାସନା କଲେ, ଶୁଦ୍ଧବୁଦ୍ଧି, ନିଷ୍କାମ ଭାବରେ ନିଜର ସର୍ବସ୍ୱ ଅର୍ପଣ କରିବା ବେଳେ ଭାବରେ କରିବା । ତାହା ପରମାତ୍ମାଙ୍କ ପାଖରେ ପହଞ୍ଚିଯିବ । 'ତସ୍ମିନ୍ ତୁଷ୍ଟେ ଜଗତ୍ ତୁଷ୍ଟଂ । ତାଙ୍କର ତୃଷ୍ଟିରେ ସମଗ୍ର ଲୋକ ତୁଷ୍ଟ ହୋଇଯାଏ । ତାହା କେବଳ ଭାବପୂର୍ବକ ହେବା ଦରକାର ।

ଐଶ୍ୱର୍ଯ୍ୟ ସମ୍ପନ୍ନ ସର୍ବେସର୍ବା ସତ୍ତାଙ୍କୁ ଆମେ କ'ଣ ଦେଇପାରିବା ? ଦେଇ ପାରିବାର ପାତ୍ରତା କ'ଣ ଆମ ପାଖରେ ଅଛି ? 'କି ଦେଇ ପୂଜିବି କିବା ଅଛି ମୋର... ଯାହା ତ ଦେଇଛ ସବୁ ତ ତୁମର ।" ବିଶ୍ୱ ଜୀବନ ହେ ତୁମକୁ କରୁଣା ସିନ୍ଧୁ, ବୋଲିବାକୁ

ମନ ବଳୁନାହିଁ ଯେଣୁ ସିନ୍ଧୁ ତବ କୃପାବିନ୍ଦୁ' । ଆମେ ତ ତାଙ୍କରି ଜଳ ଧାରରୁ ଆଞ୍ଜୁଳିଏ ଜଳ ତାଙ୍କୁ ହିଁ ଅର୍ପଣ କରୁ । ପ୍ରେମିକ ତା'ର ପ୍ରେମିକାକୁ ଫୁଲଟିଏ ଦେବା ବେଳେ ପ୍ରେମିକାର ଉଦ୍ୟାନରୁ ତୋଳିକରି ହିଁ ଦେଇଥାଏ । ପ୍ରେମିକା ଖରାପ ଭାବେ ନାହିଁ । ସେତ ଭାବକୁ ଦେଖେ । ପରମାତ୍ମା ମଧ୍ୟ ତାଙ୍କର ଉଦ୍ୟାନରୁ ନିଆଯାଉଥିବା ଯେ କୌଣସି ବସ୍ତୁକୁ ସ୍ୱୀକାର କରି ପ୍ରୀତି ପୂର୍ବକ ତାହା ଗ୍ରହଣ କରି ନିଅନ୍ତି । ତେଣୁ ମୁଁ ଦେଲି ମୋର ପଦାର୍ଥ ଦେଲି ବୋଲି କେବେ ବି ଭାବିବା ଉଚିତ ନୁହେଁ । ଆମେ କ'ଣ ଦେଇପାରିବୁ ? ଏହାତ ତୁମର । ତୁମକୁ ହିଁ ଦେଉଛୁ- ତ୍ୱଦୀୟଂ ବସ୍ତୁ ଗୋବିନ୍ଦଂ ତୁଭ୍ୟମେବ ସମର୍ପୟେତ୍ । ଏଇ ଭାବ ରହିବା ଦରକାର ।

ଗଜେନ୍ଦ୍ର ସରୋବରର ପଦ୍ମଫୁଲଟିଏ ଭଗବାନଙ୍କୁ ଅର୍ପଣ କରି ନମସ୍କାର କରିବାରୁ ସେ ତାକୁ ଉଦ୍ଧାର କରିଥିଲେ । ତୀର୍ଥଯାତ୍ରାରେ ଯାଇ ଏକନାଥ ଘର ପାଇଁ ଗଂଗାଜଳ ଆଣୁଥିଲେ । କ୍ଷୁଧା ତୃଷାରେ ପୀଡିତ ଗର୍ଦ୍ଦଭକୁ ସବୁ ଗଙ୍ଗାଜଳକୁ ପିଆଇଦେବାରୁ ତା'ଠାରେ ସାକାର ଭଗବାନ ପ୍ରକଟ ହୋଇଗଲେ । ଚାରିଆଡ଼େ ବ୍ୟାପିଥିବା ଦୁର୍ଭିକ୍ଷ ସମୟରେ ଚାଣ୍ଡାଳଟିଏ ଗୋଟିଏ ବ୍ରାହ୍ମଣ ପରିବାର ପାଖରୁ ଅନ୍ନ ଭିକ୍ଷା ମାଗିଲା । ଭୋକ ଶୋଷରେ ଆଟୁପାଟୁ ହୋଇ ଯାଉଥାଏ । ପ୍ରଥମେ ବ୍ରାହ୍ମଣ ତାଙ୍କ ପାଇଁ ବଢ଼ା ଯାଇଥିବା ଅନ୍ନ ଚାଣ୍ଡାଳଟିକୁ ଦେଲେ । ସେତକ ସେ ଚଟ୍‌କରି ଖାଇଦେଇ ଆଉ କିଛି ଚାହିଁବାରୁ ବ୍ରାହ୍ମଣୀ ଓ ତାଙ୍କର ପିଲାମାନେ ସମସ୍ତେ ତାଙ୍କର ଅନ୍ନକୁ ଚଣ୍ଡାଳକୁ ଦେଇ ତାକୁ ଆସନ୍ନ ମୃତ୍ୟୁମୁଖରୁ ବଞ୍ଚାଇଦେଲେ । ସେହି ମୁହୂର୍ତ୍ତରେ ସାକ୍ଷାତ୍ ଭଗବାନ ପ୍ରକଟ ହେଲେ ଏବଂ ପୂରା ପରିବାରକୁ ସଶରୀର ସ୍ୱର୍ଗକୁ ନେଇଗଲେ । ଭଗବାନଙ୍କ ପାଇଁ ଭାବର ମହତ୍ତ୍ୱ କେତେ ତାହା ଏଇସବୁ ଘଟଣାରୁ ଜଣାପଡ଼େ । ଆମେ ଟଙ୍କା ପଇସା, ଫଳମୂଳ, ମିଠେଇ, ଛପନ ଭୋଗ ଅନ୍ନକୂଟ, ଏକାଦଶୀର ଉପହାରର ପରିମାଣ ନେଇ ନିଜର ମୁଣ୍ଡ ଖରାପ କରୁ ଏବଂ ଅନ୍ୟର ଅର୍ଥ ଅପବ୍ୟୟ କରୁ । କିନ୍ତୁ ପରମାତ୍ମାଙ୍କ ପାଖରେ କିଛି ହେଲେ ପହଞ୍ଚେ ନାହିଁ ।

ଭକ୍ତ ଭଗବାନଙ୍କୁ ପ୍ରୀତିପୂର୍ବକ ଦେଲାବେଳେ ନିଜକୁ ବି ଭୁଲିଯାଏ । ପ୍ରେମର ବଶ ହୋଇଥିବା ଭକ୍ତ କ'ଣ ଦେଉଛି ବୋଲି ଖିଆଲ ବି କରିପାରେ ନାହିଁ । କ'ଣ ଖାଉଛନ୍ତି ବୋଲି ଭଗବାନଙ୍କର ବି ଖିଆଲ ରହେ ନାହିଁ । ପ୍ରେମର ବଶୀଭୂତ ହୋଇ ବିଦୂରଙ୍କ ସ୍ତ୍ରୀ କଦଳୀ ବଦଳରେ ଚୋପା ଦେବାରୁ ଭଗବାନ ଚୋପାକୁ ବି ପ୍ରେମପୂର୍ବକ ବଡ଼ସ୍ୱାଦର ସହିତ ଖାଇଦେଲେ । ଦୁର୍ଯୋଧନଙ୍କ ସୁସ୍ୱାଦୁ ଫଳମୂଳ ତାଙ୍କର ପସନ୍ଦ ନୁହେଁ । 'ଅଶ୍ନାମି'ର ତାତ୍ପର୍ଯ୍ୟ ହେଲା- ଭଗବାନ ଖାଇଦିଅନ୍ତି । ଅର୍ଥାତ୍ ଭକ୍ତର ସେଇ ଭାବକୁ ଆତ୍ମସାତ୍ କରିନିଅନ୍ତି । ଭକ୍ତର ଦେବାର ଭାବ ଥିଲେ ଭଗବାନଙ୍କର ନେବାର ଭାବ ଆସିଯାଏ । ଭଗବାନଙ୍କୁ ଖୁଆଇବାରେ ଭକ୍ତର ମନ ଥିଲେ ଭଗବାନଙ୍କୁ ବି ଭୋକ

ଲାଗେ । ଭକ୍ତିପୂର୍ବକ ଯାହାବି ଦିଆଯାଏ, ତାହା ଭକ୍ତିରୂପ-ପ୍ରେମରୂପ-ପରମପ୍ରେମର ସ୍ୱରୂପ ହୋଇଯାଏ । ସମୟଦାନ ହେଉ, ଅଂଶଦାନ ହେଉ, ସାଧକରୂପେ ଯାହାବି ଆମେ ପରମାତ୍ମାଙ୍କୁ ଦେବା, ଅହଂଭାବରେ ନୁହେଁ, ବରଂ ନିଜର କର୍ତ୍ତବ୍ୟ ମନେ କରିଦେଲେ, ପ୍ରେମପୂର୍ବକ ସେ ତାହା ସ୍ୱୀକାର କରିବେ ।

ବେଖିଆଲ ଭାବରେ ନୀଳାଚଳ ନାଥ ଜଗନ୍ନାଥଙ୍କ ଠାରୁ ଏ ଲେଖକ କିପରି କରୁଣାଲାଭ କରିଛି, ଜୀବନର ଏକ ଘଟଣା । ୧୯୭୮ ମସିହାରେ ଏ ଲେଖକ ପୁରୀ ଜିଲ୍ଲାରେ ବାଲିଅନ୍ତା ବ୍ଲକର ବିଡିଓ ଥିବାବେଳେ ସମସ୍ତ ସୁନା ଓ ରୂପାର ଅଳଙ୍କାର ଏବଂ ଜିପିଓ ଟଙ୍କା ପଇସା ସମସ୍ତ ଚୋରୀ ହୋଇଗଲା । କିଛିଦିନ ପରେ ମେ' ବା ଜୁନ ମାସରେ ବଡ଼ ଝିଅର ବାହାଘର ହୋଇଥାନ୍ତା । ବରପାତ୍ର ଯୋଗାଡ଼ ସରିଥାଏ । ମୁଣ୍ଡରେ ଅବା ବଜ୍ର ପଡ଼ିଗଲେ କି ? ଥାନା, ଏସ୍‌ଡିଓ କଲେକ୍ଟରଙ୍କୁ ଜଣାଇ ମଧ୍ୟ କିଛିଫଳ ହେଲା ନାହିଁ । ବୁଦ୍ଧି ଦେଖାଯାଉନଥାଏ । ମନକୁ କ'ଣ ଆସିଲା, ମୋ ସ୍ତ୍ରୀର, ମୋର ଓ ଝିଅର ଜାତକ ଧରି ଆମ ଗାଁ ଠାରୁ ୩ ମାଇଲ ଦୂର ଜ୍ୟୋତିଷ ବୁଢ଼ାଙ୍କ ନିକଟକୁ ଗଲି । ସେ ଜ୍ୟୋତିଷଙ୍କର ଖୁବ୍ ନାଁ ଥାଏ । ଘରେ କିଛି ଅସୁବିଧା ସୃଷ୍ଟି ହେଲେ, ପିଲାପିଲି କେହି ବେମାର ପଡ଼ିଲେ ବାପା ଜାତକ ଧରି ତାଙ୍କ ପାଖକୁ ଦୌଡ଼ନ୍ତି । ସେ ଯାହା ନିଦାନ ଜଣାନ୍ତି ତାହା କରିଦେଲେ ରିଷ୍ଟ ଖଣ୍ଡନ ହୋଇଯାଏ । ଜ୍ୟୋତିଷ ଜାତକ ସମସ୍ତ ଦେଖିଲେ । ଗେଟାଳିରେ ଭୂଇଁରେ ବହୁତ କିଛି ଅଙ୍କ କଷାକଷି କଲେ । କିଛି ସମୟ ପରେ ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ କହିଲେ ଯେ 'ବାପା ତୋର ଶନିସପ୍ତା ଚଳନ ହୋଇଛି । ଶନି ତୋର ଘରେ କଳାକନା ବୁଲେଇ ଦେଇଛି । ଆହୁରି କିଛି ରିଷ୍ଟ ରହିଛି । ଏ ବର୍ଷ ତୋର ଝିଅର ବିବାହଘର ହୋଇପାରିବ ନାହିଁ । ଯେଉଁ ଜାଗାରେ ତୁ ଅଛୁ; ସେ ସ୍ଥାନ ଏବେ ତୋ ପାଇଁ ଶୁଭ ନୁହେଁ । ଏକେ ତ ମନସ୍ତାପରେ ଥିଲି । ଜ୍ୟୋତିଷଙ୍କ ଠାରୁ ଏପରି ହତାଶ ବାଣୀ ଶୁଣି ଏକବାର ଭାଙ୍ଗିପଡ଼ିଲି । ଧୈର୍ଯ୍ୟଧରି "କିଛି ପ୍ରତିକାର ହୋଇପାରିବ କି ? କାକୁଛରେ ପଚାରିଲି । "ପୁନରାୟ ସେ ଜାତକ ଦେଖି କହିଲେ, "ତୁ ବାପା ! ଦାରୁବ୍ରହ୍ମଙ୍କ ଦର୍ଶନ କରି ଚାରିଦିଅଁଙ୍କୁ ଚାରୋଟି ଧଳା ଫୁଲ ମାଳା ପିନ୍ଧାଇ କିଛି ଭୋଗରାଗ କରିବେ । ସବୁ ରିଷ୍ଟ ଖଣ୍ଡନ ହୋଇଯିବ । ତୁରନ୍ତ ସେ ସ୍ଥାନରୁ ଅପସରି ଆ ।"

ବସାକୁ ଫେରି ପ୍ରଥମେ ଏସ୍‌ଡିଓ, କଲେକ୍ଟରଙ୍କୁ ଦରଖାସ୍ତ ଦେଇ ମୋର ଅସୁବିଧା ଘଟଣା ବ୍ୟକ୍ତିଗତ ଭାବରେ ଜଣାଇଲି । ଦୁଇବର୍ଷ ପୂରିନାହିଁ । ମୋ ବିରୁଦ୍ଧରେ କିଛି ଅଭିଯୋଗ ନାହିଁ । ସେମାନେ ମୋର ଅନୁରୋଧ ଉପରେ ଗୁରୁତ୍ୱ ଦେଲେ ନାହିଁ । ବ୍ୟକ୍ତିଗତ ଭାବରେ ଡାଇରେକ୍ଟରଙ୍କୁ ଦେଖାକରି ବଦଳି ପାଇଁ ଅନୁରୋଧ କଲି । ମନ୍ତ୍ରୀଙ୍କର ଆଦେଶ ନାହିଁ, ସେ କିଛି କରିପାରିବେ ନାହିଁ ବୋଲି ସଫା ମୋତେ କହିଦେଲେ । ମନଟା

ଚୂରମାର୍ ହୋଇଗଲା । ମୋର ସ୍ତ୍ରୀଙ୍କୁ ଆସି ଜଣାଇଲି । ସେ ପରାମର୍ଶ ଦେଲେ, "ଆଗ ଜିଉମାନଙ୍କୁ ଦର୍ଶନ କରି ତାଙ୍କର ଆଶୀର୍ବାଦ ଆଣ ।" ତହିଁପରଦିନ ଶ୍ରୀକ୍ଷେତ୍ର ଗଲି । ଜୀଉମାନେ ମାଉସୀମାନଙ୍କ ମନ୍ଦିରରେ ଅବସ୍ଥାନ କରୁଥାନ୍ତି । ପୁରୀ ଡାକ୍ତରଖାନା ପାଖରେ ସେତେବେଳେ ବସ୍ ରହୁଥିଲା । ଚାଲି ଚାଲି ଗୁଣ୍ଡିଚା ମନ୍ଦିର ଗଲି । ବେଢ଼ାରେ ଥିବା ଟିଉବ୍‌ୱେଲ୍‌ରେ ମୁହଁ ହାତ ଗୋଡ଼ ଧୋଇ ମନ୍ଦିର ମଧ୍ୟକୁ ଗଲି । ଜୀଉମାନଙ୍କୁ ଦର୍ଶନ କଲି । ଓଃ ! ଏ କି ବିଶାଳ ମୂର୍ତ୍ତି । ଉଲଗ୍ନ ଶରୀର । ମନ୍ଦିରର ଶୀର୍ଷସ୍ଥାନ ଯାଏ ମସ୍ତିଷ୍କ । ମସ୍ତିଷ୍କରେ କେବଳ ତୁଳସୀ ହଟ କେରାଏ ଲେଖା ବୋଧେ ଜୀଉମାନେ ବେଶ ନ ହୋଇଥିବାରୁ ମୋତେ ଏପରି ଉଚ୍ଚତା ଜଣାଯାଉଛି ! ପ୍ରଣତି ଜଣାଇ ମନର ବେଦନା ପ୍ରଭୁଙ୍କୁ ଜଣାଇ ଟିକେ ମନ୍ଦିର ବେଢ଼ା ବୁଲିଆସିଲି । ଅଷାଢୁଆ ଖରା । ସମୁଦାୟ ମନ୍ଦିର ବେଢ଼ା ଶୂନ୍‌ଶାନ । ଦେଖିଲି ମନ୍ଦିରର ମୁଖଶାଳାର ଗୋଟିଏ କଣରେ ୩/୪ ଜଣ ବିଧବା ସ୍ତ୍ରୀ ଲୋକ ଫୁଲ ଗୁନ୍ଥୁଛନ୍ତି । ତାଙ୍କୁ ଭେଟି ପଚାରିଲି । "ମାଉସି ! ୪ ମାଳା ଧଳା ଫୁଲ ମୋତେ ଦିଅନ୍ତନି ? ଜଣେ ମାଉସି କହିଲେ, ଲୋ ବାପା ! ଏ ଫୁଲ କେବଳ କାଳିଆ ସାଆନ୍ତଙ୍କ ପାଖରେ ଲାଗିବ । ସନ୍ଧ୍ୟାବେଳେ ମାଳିମାନେ ଆସିଲେ ତୁମେ ତାଙ୍କଠୁ କିଣିନବ ।"

ଥକାମରା ହୋଇ ମନ୍ଦିରର ମୁଖଶାଳାର ଗୋଟିଏ କଡ଼ରେ ବସି ପଡ଼ିଲି । ଭାବିଲି- ଏଠାରୁ କାମ ସାରି ରାତ୍ର ୮ଟା ମଧ୍ୟରେ ବସାରେ ପହଞ୍ଚି ଯାଇଥାନ୍ତି । ଅନ୍ଧାର ରାତି, ବ୍ଲକ କ୍ୱାର୍ଟର ତ ଶ୍ମଶାନ ପାଖରେ । ନିଛାଟିଆ ସ୍ଥାନ ଛୁଆମାନେ ଡରିବେ । କିନ୍ତୁ ଯେଉଁ କାମ ପାଇଁ ଆସିଛି । ସେ କାମ ସାରି ଆଜି ଆଉ ଯାଇହେବ ନାହିଁ । ରାତିଟା କୌଣସିମତେ କଟାଇଦେବା । ସୁଲୁସୁଲା ପବନରେ ଆଖିଟିକେ ଲାଗି ଆସୁଥାଏ । କିଛି ସମୟ ପରେ ମୋର ପାଖ ଦେଇ କେହିଜଣେ ଚାଲିଯାଉଥିବାର ଜଣାଗଲା । ଆଖି ଖୋଲି ଦେଖିଲି- ଜଣେ ବୁଢ଼ା ବ୍ରାହ୍ମଣ ଖଣ୍ଡିଏ ଗାମୁଛା ପିନ୍ଧିଛନ୍ତି, ଆଉ ଖଣ୍ଡିଏ କାନ୍ଧରେ ପକାଇଛନ୍ତି, ଏକ ଏକ ଛୋଟ ପାଛିଆରେ କିଛି ଧଳା ଫୁଲର ମାଳା ଧରି ଯାଉଛନ୍ତି । ଧଡ଼ପଡ଼ ହୋଇଉଠିଯାଇଁ ତାଙ୍କୁ ପଚାରିଲି, "ଗୋସେଇଁ ମହାପ୍ରଭୁ ! ମତେ ୩ ମାଳା ଫୁଲ ଦେଇ ପାରିବେ କି ? "ସୁଦର୍ଶନ ମହାପ୍ରଭୁଙ୍କୁ କ'ଣ ଭୁଲିଗଲ କି ?" ହଁ ହଁ ଭୁଲି ଯାଇଥିଲି । "ଭୋଗରାଗ କିଛି କରିବନା ?" ହଁ, ଗୋସେଇଁ ମହାପ୍ରଭୁ" "ଆସ ମୋ ସାଙ୍ଗରେ" କହି ବେଢ଼ାରେ ଥିବା ଶୁଖା ଦୋକାନୀକୁ ଯାଇଁ ଉଠାଇଲେ । ମୁଁ ୧୦ ଟଙ୍କା ଦେଲି ଭୋଗ ଆଣି ଚାରିଦିଅନ୍ତୁ ଫୁଲମାଳା ପିନ୍ଧାଇ ସେ ଭୋଗ କରିଦେଲେ । ବାହାରକୁ ଆସି ଡାଲାରୁ ଭୋଗଟିକେ ମୋତେ ଖୁଆଇଦେଲେ । ମୁଁ ତାଙ୍କୁ ଫୁଲ ଓ ଦକ୍ଷିଣା ବାବଦରେ ୧୦ ଟଙ୍କା ଦେଇ କୃତକୃତ୍ୟ ହେଲି । ସେ ହାତ ଉଠାଇ ଆଶୀର୍ବାଦ ଦେଇ ଚାଲିଗଲେ ।

ଉତ୍ତରା ଛକରୁ ବାଳକାଟି ଦେଇ ଚାଲି ଚାଲି ଆସିବାକୁ ପଡ଼େ । ବସାରେ ଆସି ରାତ୍ର ୮ଟା ପହଞ୍ଚିଲି । ମାଉସିମାଙ୍କ ମନ୍ଦିରରୁ କେତେବେଳେ ଫେରିଲି, କ'ଣ ଖାଇଲି ଓ କେତେବେଳେ ବସ୍‌ରେ ଉଠିଲି କିଛି ଖିଆଲ ନାହିଁ । ଶୋଇବା ସମୟରେ ସବୁ ମନେ ପକାଇ କାଳିଆ ସାଆନ୍ତଙ୍କୁ କୋଟି କୋଟି ପ୍ରଣାମ କଲି । ସତ୍ୟଭାମାପୁରର ଶ୍ରୀ ବୀର କିଶୋର ଦାସ ବ୍ଲକର ଚେୟାରମ୍ୟାନ ଥିଲେ । ମୋର ବଦଳି ପାଇଁ ସେ ଟିକେ ଚେଷ୍ଟା କରିବାକୁ ତାଙ୍କୁ ଅନୁରୋଧ କଲି । ସେ ଜଣାଇ ଦେଲେ ଯେ ୫ବର୍ଷଯାଏ ଆପଣଙ୍କୁ ଏ ବ୍ଲକରୁ ଛଡ଼ାଯିବ ନାହିଁ । ସେତେବେଳେ ବ୍ଲକମାନଙ୍କୁ ଉନ୍ନୟନ କାମ ପାଇଁ ବର୍ଷକୁ ୨/୩ ଲକ୍ଷ ମଧ୍ୟରେ ଅନୁଦାନ ସୀମିତ ଥିଲା, ୫୦% ପିପ୍ୟୁଲସ୍ କଣ୍ଟ୍ରିବ୍ୟୁସନ ଥିଲା । ନିଷ୍ଠାର ସହ ଗାଁକୁ ଯାଇ ଲୋକଙ୍କୁ ବୁଝାଇ ସୁଝାଇ ଅସୁବିଧା ଥିଲେ ଚେୟାରମ୍ୟାନଙ୍କୁ ସଙ୍ଗରେ ନେଇ କର୍ତ୍ତବ୍ୟ ପାଳୁଥିଲି । ବୀରବାବୁଙ୍କ କଥା ଅମୂଳକ ନହୋଇପାରେ । କିନ୍ତୁ ମୋର ବେଦନା ହୃଦୟଙ୍ଗମ କରି ତାଙ୍କ ଗାଁ ପାଖ ବାଳକାଟିର ବରିଷ୍ଠ ମନ୍ତ୍ରୀ ଶ୍ରୀସତ୍ୟପ୍ରିୟ ମହାନ୍ତିଙ୍କ ମାଧ୍ୟମରେ ମୟୂରଭଞ୍ଜ ଜିଲ୍ଲାର ବଡସାହି ବ୍ଲକକୁ ମୋର ବଦଳି କରାଇଦେଲେ । ପିଲାମାନେ ଭଲରେ ଯିବା ପାଇଁ କାରର୍ ବ୍ୟବସ୍ଥା କରିଦେଲେ ଓ ଜିନିଷପତ୍ର ପାଇଁ ଟ୍ରକଟିଏ ମଧ୍ୟ ବ୍ୟବସ୍ଥା କରିଦେଲେ । ସେ ମହାଶୟ ମୋର ଚିର ନମସ୍ୟ ।

ବଡ଼ସାହି ବ୍ଲକରେ ଜଏନ୍‌କଲି । ସେଠାରେ କଲେଜ ନଥିବାରୁ ଦୁଇଟି ପିଲାଙ୍କୁ ବାରିପଦା କଲେଜରେ ନାମ ଦେଖାଇଦେଲି । ହଷ୍ଟେଲ ବା ବସାଘରର ସୁବିଧା ନପାଇ ଚିନ୍ତିତ ଥାଏ । ସେଇ ବ୍ଲକର ଗ୍ରାମପଞ୍ଚାୟତ ସମ୍ପ୍ରସାରଣ ଅଧିକାରୀ ତାଙ୍କର ଦେଉଳସାହିସ୍ଥିତ ନିଜ ଘରେ ସ୍ୱତଃପ୍ରବୃତ୍ତ ହୋଇ ପିଲା ଦୁଇଙ୍କୁ ରଖାଇଲେ । କିଛିଦିନ ପରେ ଭଞ୍ଜପୁର ଅଞ୍ଚଳର ବିଜୟ ରାମଚନ୍ଦ୍ରପୁରରେ ଏକ ହଜାର ଟଙ୍କାରେ ୫ ଡେସିମିଲ୍ ଜମି ପାଇଗଲି । ଅସ୍ଥାୟୀ ଘର ଖଣ୍ଡିଏ କରାଇ କିଛିଦିନ ପରେ କଲେଜ ପଢୁଆ ଦୁଇପିଲା ବଡଝିଅ, ଚାକର ପିଲାଟିଏ ରଖାଇବାର ବ୍ୟବସ୍ଥା କଲି । ବାରିପଦାରେ ଏକ ମିଟିଂ ସାରି ବସାକୁ ଯାଇ ସାର୍ଟ ଖୋଲୁଥିବା ସମୟରେ ଜଣେ କେହି ଭଦ୍ରଲୋକ କଲିକତାରୁ ଆସି ମତେ ଖୋଜୁଥିବାର ଜଣେ ପଡ଼ୋଶୀ କହିଲେ । ଅଜଣା ଅଶୁଣା ଭଦ୍ରବ୍ୟକ୍ତିଙ୍କୁ ଦେଖାକରି ମୋ ଠାରୁ ସେ ମୋର ପରିଚୟ ପାଇଲେ ବଡ଼ଝିଅ ଭାତ ବାଢ଼ି ମତେ ଖାଇବାକୁ ଡାକିବା ସମୟରେ ସେ ଭଦ୍ରଲୋକ "ଇଏ କ'ଣ ଆପଣଙ୍କ ବଡ଼ଝିଅ" ପଚାରିଲେ । ହଁ କହି ଭଦ୍ରବ୍ୟକ୍ତିଙ୍କୁ ଘରେ ନେଇ ବସାଇଲି । ତାଙ୍କ ଅନୁରୋଧରେ ଝିଅ ମଧ୍ୟ ମୋ ପାଖରେ ବସିଲା । ସେ ଝିଅକୁ ୨/୩ଟି ପ୍ରଶ୍ନ ପଚାରି ଓ ଉତ୍ତର ପାଇ ଝିଅକୁ ବିଦାୟ ଦେଲେ ଏବଂ ମତେ ତାଙ୍କର ପରିଚୟ ଦେଇ ମାସକ ମଧ୍ୟରେ ତାଙ୍କ ପୁଅ ସହିତ ମୋର ଝିଅର ବିବାହ ପାଇଁ ପ୍ରସ୍ତାବ ଦେଲେ । ତାଙ୍କ ପୁଅ କୋଲ ଇଣ୍ଡିଆରେ ଡାକ୍ତର ଅଛନ୍ତି ଓ ସେ କଲିକତାର

ପାରାଡାଇଜ ସିନେମାର ଏକାଉଣ୍ଟାଣ୍ଟ ବୋଲି ମତେ ଜଣାଇଲେ । ଆଶ୍ଚର୍ଯ୍ୟ ତ ହେଲି । ୨ମାସ ସମୟ ମାଗିନେଲି । ଦୁଇମାସ ମଧ୍ୟରେ ସେ ଡାକ୍ତର ଜ୍ୱାଇଁଙ୍କ ସହ ଝିଅର ବିଭାଘର ଖୁବ୍ ଭଲରେ ହୋଇଗଲା ।

ମୋର ବନ୍ଧୁ ବାରିପଦା ଜିଲ୍ଲାମଙ୍ଗଳ ଅଧିକାରୀଙ୍କ ସହ ଥରେ କଥାହେଲାବେଳେ ସେ କହିଲେ ଯେ ପୁରୀରେ ୩ ବର୍ଷ ରହଣୀ ମଧ୍ୟରେ ଥରେ ଯେଉଁ ଦର୍ଶନ ପାଇଥିଲେ , ଜିଉଙ୍କର ସେ ଦର୍ଶନ ଆଉ ପାଇପାରିଲେ ନାହିଁ । ସେ ଦର୍ଶନର ବିବରଣୀ କହୁଥିବାବେଳେ ସେଦିନର ମାଉସି ମା' ମନ୍ଦିର ଘଟଣାଟି ମୋର ସ୍ମୃତିକୁ ଆସି ଆଖି ଛଳଛଳ ହୋଇଗଲା । ମୋର ଏ ଭାବ ଦେଖି ବନ୍ଧୁ ପଚାରିବାରୁ ତାଙ୍କୁ ସେଦିନର ଘଟଣା ଜଣାଇଲି । ସେଇ ଖିଆଲି ଅଭୁଲା ସ୍ମୃତି ମନେ ପଡ଼ିଗଲେ ଆଖିରୁ ଲୁହ ଝରି ପଡ଼େ ଓ ସ୍ୱତଃ ମୁଖରୁ ବାହାରିଆସେ-

ଜଗବନ୍ଧୁ ହେ ଗୋସାଇଁ
ତୁମ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ
ଜଗବନ୍ଧୁ ହେ ଗୋସାଇଁ...

*ଗାୟତ୍ରୀ ପରିବାର, ୱାର୍ଡ ନଂ୧୭*
*ବାରିପଦା-୭୫୭୦୦୨*

# ଅତିବଡ଼ି ଜଗନ୍ନାଥ ଦାସ

ନୃସିଂହଚରଣ ବିଶ୍ୱାଳ (୧୭୫)

୧୪୯୦ ଖ୍ରୀଷ୍ଟାବ୍ଦ ଭାଦ୍ରମାସ ଶୁକ୍ଳ ଅଷ୍ଟମୀ ତିଥିରେ ଶ୍ରୀରାଧାଷ୍ଟମୀ ଦିନ ପୁରୀ ଜିଲ୍ଲାର କପିଳେଶ୍ୱରପୁର ଶାସନରେ ଜଗନ୍ନାଥ ଦାସ ଜନ୍ମ ଗ୍ରହଣ କରିଥିଲେ । ଏହାଙ୍କ ପିତାଙ୍କ ନାମ ଭଗବାନ ଦାସ ଓ ମାତାଙ୍କ ନାମ ପଦ୍ମାବତୀ ।

ବାଲ୍ୟକାଳରେ ଜଗନ୍ନାଥ ଚାଟଶାଳୀ ପାଠ ଶେଷ କରି ଗାଁର ବ୍ରାହ୍ମଣ ପଣ୍ଡିତଙ୍କ ଠାରୁ ସଂସ୍କୃତ, ବ୍ୟାକରଣ ଅଧ୍ୟୟନ କରିଥିଲେ । ଏହାପରେ ବେଦ, ବେଦାନ୍ତ, ଦର୍ଶନ ଶାସ୍ତ୍ର ଶିକ୍ଷାକଲେ । ଅବଶେଷରେ ଅଷ୍ଟାଦଶ ପୁରାଣ ଏବଂ ସଂସ୍କୃତ ଶ୍ରୀମଦ୍‌ଭାଗବତ ପାଠ କରି ବିଦ୍ୟାଶିକ୍ଷା ସମାପ୍ତ କଲେ । ଅଠର ବର୍ଷ ବୟସରେ ସେ ସମସ୍ତ ଶାସ୍ତ୍ରରେ ପ୍ରବୀଣତା ଲାଭ କରିଥିଲେ । ତାଙ୍କ ମନରେ ପ୍ରବଳ ଧର୍ମଭାବ ଓ ଭଗବାନ ପ୍ରୀତି ଜାତ ହେଲା । ସେ ପିତାଙ୍କ ସହିତ ଦୈନିକ ପୁରୀକ୍ଷେତ୍ରକୁ ଯାଇ ମହାପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରୁଥିଲେ ଓ ବଡ଼ ଦେଉଳର ବଟଗଣେଶ ମୂଳରେ ବସି ପୁରାଣ ପାଠ କରୁଥିଲେ ଏବଂ ମୂଳ ଗ୍ରନ୍ଥକୁ ବ୍ୟାଖ୍ୟା କରି ଶୁଣାଉଥିଲେ । ପୁରାଣ ପାଠବେଳେ ତାଙ୍କର ତନ୍ମୟତା ଦେଖି ଦର୍ଶକମାନେ ମୁଗ୍ଧ ହୋଇଯାଉଥିଲେ । ମାଆଙ୍କ ଉପଦେଶାନୁସାରେ ଜଗନ୍ନାଥ ଶ୍ରୀଭାଗବତକୁ ସରଳ ଭାଷା ଛନ୍ଦରେ ରଚନା କଲେ । ତରୁଣ ଅବସ୍ଥାରୁ ତାଙ୍କ ମନରେ ବୈରାଗ୍ୟଭାବ ଜାତ ହେଲା । ସେ ସନ୍ନ୍ୟାସ ଗ୍ରହଣ କଲେ ଓ ଶ୍ରୀଜଗନ୍ନାଥଙ୍କ ଚରଣାରବିନ୍ଦରେ ମନ, ପ୍ରାଣ ଢ଼ାଳିଦେଲେ ।

ଏହି ସମୟକୁ "ପଞ୍ଚସଖା ଯୁଗ" କୁହାଯାଏ । ତାଙ୍କ ସହିତ ବଳରାମ, ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତ ଯୋଗଦେଲେ । ଏହି ପଞ୍ଚସଖାଙ୍କ ମଧ୍ୟରେ ଜଗନ୍ନାଥ ଦାସ ପ୍ରଧାନ ସନ୍ଥକବି ଅଟନ୍ତି । ଜଗନ୍ନାଥଙ୍କର ଅଦ୍ଭୁତ ଭକ୍ତିଭାବ ଓ ଈଶ୍ୱରନିଷ୍ଠା ଦେଖି ଶ୍ରୀଚୈତନ୍ୟ ବିସ୍ମିତ ଓ ବିମୋହିତ ହୋଇଗଲେ । ଖୁବ୍ ଆନନ୍ଦିତ ହୋଇ ଜଗନ୍ନାଥଙ୍କୁ ଗୌରବ ସୂଚକ 'ଅତିବଡ଼ି' ଉପାଧିରେ ଭୂଷିତ କରିଥିଲେ ।

ଜଗନ୍ନାଥ ଦାସଙ୍କ ସର୍ବଶ୍ରେଷ୍ଠ କୃତି ସଂସ୍କୃତ ଭାଗବତକୁ ଓଡ଼ିଆରେ ଅନୁବାଦ କରିବା । ଏହି ଗ୍ରନ୍ଥଟି ସମଗ୍ର ଉତ୍କଳର ଅମୂଲ୍ୟ ସାହିତ୍ୟ ସମ୍ପଦ । ଭାଗବତର କଠିନ ତତ୍ତ୍ୱ ସହଜ ଓ ସରଳ ଭାଷାରେ, ଏପରି ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଅଛି ଯେ, ସାଧାରଣ ଲୋକ ଏହା ପାଠ କରି ଅନୁପ୍ରାଣିତ ହୋଇପାରିବ । କବି ଭାଗବତକୁ ଏଗାର ଗୋଟି ସ୍କନ୍ଧରେ ଓଡ଼ିଆ ଭାଷାରେ ବ୍ୟାଖ୍ୟା କରିଅଛନ୍ତି । ଭାଗବତର ପ୍ରସାର ମୂଳରେ ଏହାର

ସରଳ ସୁନ୍ଦର ଛନ୍ଦମାଧୁରୀ ନିହିତ । ଏଥିରେ ଦୁଇ ଚରଣରେ ଗୋଟିଏ ପାଦ । ପ୍ରତ୍ୟେକ ପାଦ ନଅ ଅକ୍ଷର ବିଶିଷ୍ଟ । ଏହା ନବାକ୍ଷରୀ ଭାଗବତ ନାମରେ ପରିଚିତ । ଭାଷା ଚାତୁରୀ ଅତି ଚମତ୍କାର, ଶୁଦ୍ଧ ଓ ମାର୍ଜିତ । ଦେଶଜ ଶବ୍ଦ ପ୍ରୟୋଗ ଓଡ଼ିଆ ଶ୍ରୀମଦ୍ ଭାଗବତକୁ ଅଧିକ ଶକ୍ତିଶାଳୀ କରିଛି । ଏହା ଅବୋଧ୍ୟ ମନେହୁଏ ନାହିଁ ।

ଉତ୍କଳର ଗ୍ରାମେ ଗ୍ରାମେ ଭାଗବତ ଗାଦି ଦେଖାଯାଏ ଓ ଏହା ନିତ୍ୟ ପାଠ କରାଯାଏ । ସଂସ୍କୃତ ଭାଗବତକୁ ବହୁ କବି ଓଡ଼ିଆ ଭାଷାରେ ଅନୁବାଦ କରିଅଛନ୍ତି; ମାତ୍ର ଜଗନ୍ନାଥ ଦାସଙ୍କ ଅନୁବାଦରେ ଭାବ ଅତ୍ୟନ୍ତ ରସସିକ୍ତ ଓ ମଧୁର ।

ଭାଗବତ ରଚନା ସମ୍ପର୍କରେ ଏକ କାହାଣୀ ଅଛି । ମହର୍ଷି ବେଦବ୍ୟାସ ବହୁ ପୁରାଣ ରଚନା କରିବା ପରେ ମଧ୍ୟ ତାଙ୍କ ମନରେ ଶାନ୍ତି ଜାତହେଲା ନାହିଁ । ଏହାର କାରଣ ସେ ନାରଦଙ୍କୁ ପଚାରିଲେ । ନାରଦ କହିଲେ ତମେ ଯେଉଁ ଗ୍ରନ୍ଥ ରଚନା କଲ, ତାହା ମଣିଷର ସେବା ପାଇଁ । ଏହାଦ୍ୱାରା ହରି ସେବା ହେଲା ନାହିଁ । ହରି ସେବା କରିବା ପାଇଁ ଭାଗବତ ରଚନା କର । କାରଣ ଭାଗବତର ଲକ୍ଷ୍ୟ ଆଧ୍ୟାତ୍ମିକ ଜୀବନ ସହ ଆଦର୍ଶବାଦକୁ ଗ୍ରହଣ କରିବା । ଭାଗବତର ଅତ୍ୟନ୍ତ ମହତ୍ କଥା 'ମୁଁ', 'ମୋର' ଏହି ଅହଂ ଭାବକୁ ତ୍ୟାଗ କରିବା । ମନର ଈର୍ଷା ଓ ଗର୍ବକୁ ଲୋପ କରିବା । ଏହାକୁ ତ୍ୟାଗ ନକଲେ ଆଧ୍ୟାତ୍ମିକ ସାଧନ ହୋଇପାରିବ ନାହିଁ । ମନରୁ ଦୋଷ, ଦୁର୍ବଳତା ଦୂର ହେବ ନାହିଁ । ଜୀବନକୁ ଧନ୍ୟ କରିବାକୁ ହେଲେ ସମସ୍ତଙ୍କୁ ସମାନ ଚକ୍ଷୁରେ ଦେଖିବାକୁ ହେବ- ଏହା ଭାଗବତର ମର୍ମ । ଏହି ଭାବରେ ଆମକୁ ଭଗବତ ଶକ୍ତି ଉପଲବ୍ଧ କରିବାକୁ ହେବ । ଭଗବାନଙ୍କ ଶ୍ରୀଚରଣରେ ନିଜକୁ ସମର୍ପଣ କରିଦେଲେ ଆଉ ମନରେ କିଛି ଗ୍ଲାନି ଓ ଭୟ ରହିବ ନାହିଁ । ହୃଦୟ ଆନନ୍ଦରେ ଉତ୍ଫୁଲ୍ଲିତ ହେବ । ଏହା ଭାଗବତର ନିର୍ଦ୍ଦେଶନା ।

ଏ ସଂସାର ଅତ୍ୟନ୍ତ କ୍ଷଣସ୍ଥାୟୀ । ମୋହ, ମାୟାରେ ଜୀବନ ସନ୍ତୁଳିତ । ଏଣୁ ଭାଗବତ କହନ୍ତି-

ବୃକ୍ଷର ତଳେ ଯେହ୍ନେ ଆସି ।
ପଥିକ ବିଶ୍ରାମନ୍ତି ବସି ॥
ପୁଣି ଚଳନ୍ତି ଶ୍ରମ ସାରି ।
ସେ ବୃକ୍ଷ ନୁହଁଇ କାହାରି ॥
ତେମନ୍ତ ମାୟା ଏ ସଂସାର ।
କେ ପିତା କେ କାହା କୁମର ॥

ଯାହାର ଜନ୍ମ ଅଛି, ତା'ର ମଧ୍ୟ ମୃତ୍ୟୁ ଅଛି । ଏଇ ସତ୍ୟକୁ ମଣିଷ ଜାଣି ମଧ୍ୟ, ଜାଣିପାରୁ ନାହିଁ । ସେ ଅନନ୍ତ କାଳ ପାଇଁ ଦେହ ଧରି କାମନା ବାସନାର ଆଶା କରୁଥାଏ ।

ମର୍ତ୍ତ ମଣ୍ଡଳେ ଦେହ ବହି ।
ଦେବତା ହୋଇଲେ ମରଇ ॥

ଏ ସଂସାରେ ନିଜ ଜୀବନର ସ୍ଥିତି ଯେତେବେଳେ ଏପରି କ୍ଷଣଭଙ୍ଗୁର, ସେତେବେଳେ ଏ ମଣିଷ କେଉଁ ସାହସରେ ଅନ୍ୟକୁ ପୀଡ଼ିତ କରୁଥାଏ । ଅନ୍ୟର ରକ୍ଷକ ହେବ ବୋଲି ଅହଂକାର କରୁଥାଏ । ଏଣୁ କୁହାଯାଇଛି;

ନିଜ ରକ୍ଷଣ ଅସମ୍ଭବ ।
ସେ କାହୁଁପରକୁ ରଖିବ ॥

ଭାଗବତ ଏକ ଜୀବନଧର୍ମୀ ମହାକାବ୍ୟ । ଭାଗବତ କହନ୍ତି ପ୍ରତ୍ୟେକ ମଣିଷ ଯଶ ଅର୍ଜନ କରିବା ଉଚିତ । ଜୀବନକୁ ମହତ କରିପାରିଲେ ଜୀବନ ଧନ୍ୟ ହୁଏ ।

ଧନ୍ୟ ଜୀବନ ଏ ଜଗତେ ।
ଯେ ପ୍ରାଣ ଧରେ ପରହିତେ ॥
ସର୍ବେ ଚଳିବେ କାଳବଳେ ।
ଯଶ ରହିବ ମହୀତଳେ ॥

ମଣିଷ ଜାଣିବା ଉଚିତ ଯେ, ଏ ଜଗତ ଦୈବାଧୀନ । ସର୍ବତ୍ର ଭଗବାନ ବିରାଜମାନ ଅଛନ୍ତି । ଏଣୁ ଭଗବତ୍ ବିଶ୍ୱାସୀ ହେଲେ, ଦୁଃଖ ରହିବ ନାହିଁ । ଭଗବାନଙ୍କ କୃପା ଲାଭ ହେଲେ, କୌଣସି ଶକ୍ତି ନାହିଁ ତମର କ୍ଷତି କରିପାରିବ ।

ଯାହାକୁ ରଖିବେ ଅନନ୍ତ ।
କି କରିପାରେ ବଳବନ୍ତ ॥
ସକଳ ଦେହେ ନାରାୟଣ ।
ବସନ୍ତି ଅନାଦି କାରଣ ॥
କେ କାର ବନ୍ଧୁ କେ ପିଅର ।
କେବଳ କର୍ତ୍ତା ବିଶ୍ୱମ୍ଭର ॥

ଏ ସଂସାରରେ ମଣିଷ କାମିନୀ, କାଞ୍ଚନ ପାଇଁ କି ବ୍ୟାକୁଳ ! ସେ ପାଗଳ ପରି ଏ ଦୁହିଁଙ୍କ ପଛରେ ଧାଇଁଛି । କିନ୍ତୁ ଶେଷରେ ତା' ଜୀବନ ଦୁଃଖମୟ ହୋଇଯାଏ । ସେଇଥିପାଇଁ ଭାଗବତ ଚେତେଇ ଦେଇଛନ୍ତି-

ନୁହଁନ୍ତି ମାୟାରେ ମୋହିତ ।
ସେ ପ୍ରାଣୀ ମହା ଭାଗ୍ୟବନ୍ତ ॥

ଭାଗବତ ଅତି ସୁନ୍ଦର ଭାବରେ କହିଛନ୍ତି- ଲୋଭ, ଆସକ୍ତି ମଣିଷର ଦୁଃଖର କାରଣ । ଧନ ବଢ଼ିଲେ ମଣିଷ ଅହଂକାରୀ ହୁଏ । ଏଣୁ ମଣିଷ କର୍ମଯୋଗୀ ହେବା ଉଚିତ ।

କର୍ମ ହିଁ ଜୀବନର ମାପକାଠି । କର୍ମ ଅନୁସାରେ ମଣିଷ ଫଳ ଭୋଗେ । ସୁଖ ବା ଦୁଃଖ ।

କର୍ମ ହୁଁ ନାହିଁ ଆନଦେବ ।
ଭୋ ତାତ କର୍ମ ପାଦେ ସେବ ॥
ସମସ୍ତେ କର୍ମ ସେବାକର ।
କହନ୍ତି ପ୍ରଭୁ ଦାମୋଦର ॥

ଆଉ ଭାଗବତ କହନ୍ତି ପାରିବାରିକ ଜୀବନକୁ ପବିତ୍ର ରଖିବାକୁ ହେବ । ପାରିବାରିକ ଜୀବନରେ ସ୍ନେହ, ଶ୍ରଦ୍ଧା, ପ୍ରେମ, ବନ୍ଧୁତ୍ୱ ରହିପାରିଲେ ଜୀବନ ସୁଖମୟ ହେବ । ଶାନ୍ତି ବିରାଜମାନ କରିବ ।

ପତ୍ନୀ ନଥିଲେ ନଶୋଭନ୍ତି ।
ଏ ରାଜ ସମ୍ପଦ ବିଭୂତି ॥
ଯେ ଗୃହେ ନାହିଁ ତାତ ମାତା ।
ସୁପୁତ୍ର, ସୁତା, ପତିବ୍ରତା ॥
ସେ ଗୃହ ପତି ଧର୍ମହୀନ ।
ସୁଖେ ତା' ନାହିଁ ପ୍ରୟୋଜନ ॥
ଯେସନେ ଚକ୍ରହୀନ ରଥ ।
ବସିଲେ ସୁଖ ନୋହେ ଜାତ ॥
ତେସନେ ଗୃହିଣୀ ବିହୀନେ ।
ଗୃହସ୍ଥ ନଶୋଭେ ସଦନେ ॥

ଓଡ଼ିଆ ଭାଗବତ ଓଡ଼ିଶାର ଗାଁଗଣ୍ଡାରେ ସବୁ ସ୍ଥାନରେ ଅତି ଲୋକପ୍ରିୟ । । କି ପଣ୍ଡିତ, ଧନୀ, ନିର୍ଦ୍ଧନ, ବାଟୋଇ, କୃଷକ, ସମସ୍ତେ ଭାଗବତରୁ ଶିକ୍ଷା ପାଆନ୍ତି । ଭାଗବତ ଶ୍ରୀଜଗନ୍ନାଥ ଦାସଙ୍କର ଶ୍ରେଷ୍ଠତମ ରଚନା । ଜଗନ୍ନାଥ ଦାସ ଏକାଧାରରେ ଯୋଗୀ, ଭକ୍ତ, ସନ୍ନ୍ୟାସୀ, ସାଧକ, ଧର୍ମ ପ୍ରଚାରକ, କବି ଥିଲେ । ତାଙ୍କ ରଚିତ ଶ୍ରୀମଦ୍‌ଭାଗବତ ଉତ୍କଳର ଘରେ ଘରେ ପୂଜିତ ହେଉଅଛି ।

ଶ୍ରୀଜଗନ୍ନାଥ ଦାସ ୬୦ ବର୍ଷ ବୟସରେ ୧୫୫୭ ଖ୍ରୀଷ୍ଟାବ୍ଦରେ ଶୁକ୍ଳ ସପ୍ତମୀ ତିଥିରେ ପୁରୀ ଧାମରେ ଦେହତ୍ୟାଗ କରିଥିଲେ ।

*'ଶ୍ରୀରାମ କୁଟୀର'*
*ଭୁବନପୁର, ଗଡମଧୁପୁର, ଯାଜପୁର*

# ମାତୃଶକ୍ତି

## ଶ୍ରୀମତୀ ସୁବାସିନୀ ହୋତା (୩୪୯)

ମାତୃଶକ୍ତି ଏକ ମହାନ୍ ଶକ୍ତି । ଦୈବୀଶକ୍ତି ଭାବେ ଏହାକୁ ତୁଳନାତ୍ମକ ଭାବେ ବିଚାର କରାଯାଇପାରେ । ମାତୃଶକ୍ତି ସାଂସାରିକ ଜୀବନ ଭିତରେ ଅନେକ ସ୍ଥଳରେ ଅନେକ ପ୍ରକାର ପ୍ରଭାବ ବିସ୍ତାର କରିଛି । ସାମାଜିକ ଜୀବନରେ ମାତୃଶକ୍ତିକୁ ବିଚାରକୁ ନେଲେ ମାଆ ତା'ର ଜନ୍ମିତ ସନ୍ତାନ ସନ୍ତତିର ମୁଖ ଅବଲୋକନ କରିବା ପରଠାରୁ ଏମିତି ଆତ୍ମବିଭୋର ହୋଇଯାଏ ଯେ ସେ ଜଣେ ସ୍ନେହମୟୀ ମମତାମୟୀ ମାଆ ହେବା ପାଇଁ ସଂକଳ୍ପବଦ୍ଧ ହୁଏ । ଏପରିକି ଜୀବନର ଶେଷ ରକ୍ତବିନ୍ଦୁ ଥିବାଯାଏ ସନ୍ତାନର ଯେ କୌଣସି ବିପଦ ଆପଦକୁ ସମ୍ମୁଖୀନ ହେବା ପାଇଁ ସହାୟକ ହୋଇଥାଏ । ଜନ୍ମିତ ସନ୍ତାନ ତା'ର ନିଜର ଭାରସାମ୍ୟ ବହନ କରିବା ଯାଏ ମାଆ ନିଜର ତୀକ୍ଷ୍ଣ ଦୃଷ୍ଟି ସର୍ବଦା ତା' ଉପରେ ରଖିଥାଏ । ଏପରିକି ଗର୍ଭସ୍ଥ ଶିଶୁର ସୁରକ୍ଷା ନିମନ୍ତେ ସେ ବିଶେଷ ଯତ୍ନବାନ୍ ହୋଇଥାଏ । ଆମର ମାତୃଭାଷା ପ୍ରଥମେ ମାଆ ଜରିଆରେ ସନ୍ତାନ ଶିକ୍ଷା କରିଥାଏ । କେତେକ ସ୍ଥଳରେ ଛୁଆର ଅସୁସ୍ଥତା ଦେଖିଲେ ମାଆ ମଧ୍ୟ ଅସୁସ୍ଥ ଅନୁଭବ କରେ । ସନ୍ତାନର ସମ୍ପର୍କ ଏପରି ଏକ ଡୋରୀରେ ବାନ୍ଧି ହୋଇଥାଏ ଯେ ମାଆ ପୂଜାପାଠ କଲାବେଳେ ଏମିତିକି ଠାକୁରଙ୍କୁ ପ୍ରଣାମ କଲାବେଳେ ଆଗ ଗୁହାରୀ କରିଥାଏ ମୋର ସନ୍ତାନକୁ ଘଣ୍ଟ ଘୋଡ଼ାଇ ରଖିଥାଅ ପ୍ରଭୁ । ତା'ର କୌଣସି କ୍ଷୟକ୍ଷତି ନହେଉ । ତାକୁ ସର୍ବଦା ସୁସ୍ଥ ସବଳ କରି ରଖିଥାଅ ।

ଦୈବୀଶକ୍ତି ମହାନ୍ ହେଲେ ମଧ୍ୟ ତାହାର ଫଳ ଅଦୃଶ୍ୟ ଭାବେ ମିଳିଥାଏ । ଦେବାଦେବୀଙ୍କୁ ଭକ୍ତି ଭାବରେ ମନପ୍ରାଣ ଢ଼ାଳି ଆରାଧନା କଲେ ସେ ମନଜାଣି ଫଳ ପ୍ରଦାନ କରିଥାଆନ୍ତି । ଅବଶ୍ୟ ଫଳ ସମସ୍ତେ ପାଇପାରିନଥାନ୍ତି । କାରଣ ଭକ୍ତିର ବଳରେ ଶକ୍ତିର ଫଳ ପ୍ରାପ୍ତି ହୋଇଥାଏ । କିନ୍ତୁ ମାଆକୁ ଭକ୍ତି ନକରି ମଧ୍ୟ ତା'ର ସ୍ନେହ ଶ୍ରଦ୍ଧା କେବେ ସନ୍ତାନ ପ୍ରତି କମ୍ ହୁଏ ନାହିଁ । ମନ୍ତ୍ରପାଠ ଓ ହୋମ ଯଜ୍ଞ କରି ଦେବୀ ମାଆଙ୍କୁ ପୂଜାପାଠ କଲେ ସେ ବରଦାନ କରନ୍ତି ବୋଲି ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ । ମୁନି, ଋଷିମାନେ କହିଛନ୍ତି, ମାଆର ଆଶୀର୍ବାଦ ସନ୍ତାନ ନିମନ୍ତେ ସର୍ବଦା ସୁଫଳ ପ୍ରଦାନ କରିଥାଏ । ଯେଉଁ ସନ୍ତାନ ମାଆକୁ ଧରିତ୍ରୀ ଓ ବାପାଙ୍କୁ ଆକାଶ ବୋଲି ବିଶ୍ୱାସ ରଖି ଭକ୍ତିକରେ, ସମ୍ମାନ ଦିଏ ସେ ସନ୍ତାନ ସମାଜରେ ସର୍ବଦୌ ଉନ୍ନତି ପଥରେ ଅଗ୍ରସର ହୋଇଥାଏ । ବାପା ମାଆଙ୍କର ଆଶୀର୍ବାଦ ଚଲାପଥକୁ କୁସୁମିତ କରେ । ଯେଉଁ ସନ୍ତାନ ନିଜ ଗୋଡ଼ରେ

ନିଜେ ଠିଆ ହୋଇ ପେଟ ପୋଷିବାକୁ ସକ୍ଷମ ହୋଇ ବୈବାହିକ ଜୀବନରେ ପଦାର୍ପଣ କରିବା ପରେ ବାପା ମାଆଙ୍କୁ ହେୟ ଜ୍ଞାନ କରେ ତା'ର କୌଣସି ନା କୌଣସି କ୍ଷତି ଜୀବନରେ ଆସିଥାଏ । ଯେଉଁ ଗର୍ଭଧାରୀ ମାଆ ନିଜର ବକ୍ଷରୁ ସ୍ତନ୍ୟପାନ କରାଇ ନିଃସ୍ୱାର୍ଥପର ଭାବେ ସନ୍ତାନକୁ ପାଳିପୋଷି ମଣିଷ କରିଥାଏ ସେ ପୁଅ ହେଉ ବା ଝିଅ ସେମାନଙ୍କର ସ୍ନେହ ଓ ଭକ୍ତିକୁ ପାଥେୟ କରି ଜୀବନର ଶେଷ ସମୟ ଯାଏ ବଞ୍ଚିବାର ସାହାରା କରିଥାଏ । ଯଦି ସନ୍ତାନମାନଙ୍କ ଠାରୁ ଆଶା କରିଥିବା ଓ ବିଶ୍ୱାସ ରଖିଥିବା ବ୍ୟବହାରରୁ ବିପରୀତ ଫଳଯାଏ ତେବେ ସେ ମାନସିକ ଅଶାନ୍ତିରେ ଜୀବନ କାଟେ ।

ପ୍ରତ୍ୟେକ ବ୍ୟକ୍ତି ଜୀବନରେ ଶେଷ ସମୟ ବେଳକୁ ନିଜର ଜଣେ ଉତ୍ତରାଧିକାରୀ ଚାହିଁଥାନ୍ତି । ପିତାମାତା ଓ ସନ୍ତାନ ଭିତରେ ନିଷ୍କପଟ ସ୍ନେହ ଶ୍ରଦ୍ଧା ରହିଲେ ପ୍ରତି ଗୃହରେ ଶାନ୍ତିର ବାତାବରଣ ରହେ । ବାପା ମାଆ ସନ୍ତାନଟିଏ ଜନ୍ମ ହେବା ପରଠାରୁ ତା' ଭବିଷ୍ୟତ ଚିନ୍ତା କରି ନିଜେ ସରଳ ଜୀବନଯାପନ କରି ତା'ର ଭବିଷ୍ୟତ ପାଇଁ କିଛି କିଛି ସଞ୍ଚୟ କରି ରଖନ୍ତି । ନିଜେ କଷ୍ଟ ପାଇ ସନ୍ତାନର ମୁହଁରେ ହସ ଫୁଟାଇବା ତାଙ୍କର ଏକମାତ୍ର ଲକ୍ଷ୍ୟ । ତେଣୁ ସନ୍ତାନ ବାପା ମାଆଙ୍କର ବାର୍ଦ୍ଧକ୍ୟରେ ସହାୟ ହେଲେ ସେମାନେ ଶାନ୍ତିରେ ମୃତ୍ୟୁବରଣ କରିପାରନ୍ତି । ଯେଉଁ ବାପାମାଆ ସନ୍ତାନକୁ ଆଲୋକ ଦେଖାଇଲେ, ସଂସାରରେ ପ୍ରତିଷ୍ଠା କରାଇଲେ ଓ ପାଳିପୋଷି ମଣିଷ କରାଇଲେ ସେମାନେ ତା'ର ପୂଜ୍ୟ । ଏଣୁ ମାତୃଶକ୍ତି ଚିର ବନ୍ଦନୀୟ ।

*ମାଲପଡା, ବଲାଙ୍ଗିର*

# ବାଇବେଲ୍‌ର ପୂଣ୍ୟଭୂମି

ଡ. ସୁରେନ୍ଦ୍ରନାଥ ଦାଶ (୩୫୮)

ନୀଳଜଳ ଭରା ଭୂମଧ ସାଗରର କୂଳେ କୂଳେ ଲମ୍ବିଯାଇଛି ବାଇବେଲ୍ ବର୍ଣ୍ଣିତ ପୁଣ୍ୟଭୂମି ଇତିହାସ ବର୍ଣ୍ଣିତ ପାଲେଷ୍ଟାଇନ୍ । ବୃଷ୍ଟିହୀନ ଏହି ମରୁ ପ୍ରଦେଶର କ୍ଳେଶ ଭରା ଜଳବାୟୁକୁ ଭ୍ରୁକ୍ଷେପ ନକରି ଯୁଗେ ଯୁଗେ ପୃଥିବୀର ପ୍ରତି କୋଣରୁ କୋଟି କୋଟି ଲୋକ ଧାଇଁ ଆସନ୍ତି ଏହି ପବିତ୍ର ମାଟିକୁ ପ୍ରଣାମ ଜଣାଇବାକୁ । କାରଣ ଏହା ହେଉଛି ପୃଥିବୀର ତିନୋଟି ବିଖ୍ୟାତ ଧର୍ମ ଯଥା- ଇସ୍‌ଲାମ, ଜୁଡ଼ାଇଜିମ୍ ଓ ଖ୍ରୀଷ୍ଟିଆନ୍ ଧର୍ମର ଉତ୍ପତ୍ତି ସ୍ଥଳ । ଏହି ମାଟିରେ ସେଲୁଲସ୍ ତୁର୍କ ଓ ଖ୍ରୀଷ୍ଟିଆନ ସମ୍ପ୍ରଦାୟ ମଧ୍ୟରେ କ୍ରୁସେଡ୍ ୱାର୍, ବା ଧର୍ମ ଯୁଦ୍ଧ ପ୍ରାୟ ୧୫୦ ବର୍ଷ ଧରି ଅନୁଷ୍ଠିତ ହୋଇଥିଲା । ଏହି ମାଟିର ପ୍ରତି ଇଞ୍ଚରେ ଲୁଚିରହିଛି ବାଇବେଲ୍ ବର୍ଣ୍ଣିତ ସ୍ମୃତିରାଜି । ଈଶ୍ୱରଙ୍କ ଅନେକ ଦୂତ ଯଥା ମୁଷେ, ଆବ୍ରାହ୍ମ, ଆଇଜାକ୍, ଜ୍ୟାକପ୍, ଏଲିଜେ, ଜନ, ଯିଶୁ, ପିଟର ଓ ପର୍ଲ ଈଶ୍ୱରଙ୍କ ମୁଖ ନିସୃତ ବାଣୀ ପ୍ରଚାର କରି ଏହାର ମହତ୍ୱକୁ ବଢ଼ାଇଛନ୍ତି ।

ପୁଣ୍ୟଭୂମି କହିଲେ ଜେରୁଜେଲମ ନଗରୀ କଥା ପ୍ରଥମେ ମନରେ ଆସେ । କାରଣ ଏହି ନଗରୀ ହେଉଛି ବାଇବେଲ୍ କାହାଣୀର କେନ୍ଦ୍ର ସ୍ଥଳ । ଖ୍ରୀ.ପୂ ଅଷ୍ଟମ ଶତାବ୍ଦୀରେ ରାଜା ଡେଭିଡ୍‌ଙ୍କ ଦ୍ୱାରା ଏହାର ସ୍ଥାପନ କରାଯାଇଥିଲା । ସମୁଦ୍ର ପତନରୁ ପ୍ରାୟ ୧୨୦୦ ଫୁଟ ଉଚ୍ଚରେ ଏହି ସହର ଅବସ୍ଥିତ । ଏହି ନଗରୀରେ ଠିଆ ହୋଇ ଚାରିଆଡ଼କୁ ଚାହିଁଲେ ବାଇବେଲ୍ ବର୍ଣ୍ଣିତ ଭୂମିମାନ ସ୍ପଷ୍ଟ ରୂପେ ଦେଖିହୁଏ । ପଶ୍ଚିମ ଦିଗକୁ ୩୫ ମାଇଲ୍ ପର୍ଯ୍ୟନ୍ତ ରହିଛି ଉର୍ବର ଉପତ୍ୟକା ଯାହା ବାଇବେଲ୍ ବର୍ଣ୍ଣିତ କାନାନ୍ ରାଜ୍ୟ ଥିଲା । ତା'ର ପଶ୍ଚିମକୁ ୨୫ ମାଇଲ୍ ବ୍ୟାପି ଜୁଡାନ୍ ମରୁଭୂମି ଯାହାର ନାମ ଥିଲା ଜୁଡ଼ାଇ, ଦୁଇହଜାର ବର୍ଷ ତଳେ ତ୍ରାଣକର୍ତ୍ତା ଯିଶୁ ତାଙ୍କର ଶେଷ ଯାତ୍ରାବେଳେ ଏକ ଗଧ ଉପରେ ବସି ଏହି ବାଟରେ ଆସିଥିଲେ ଓ ବାଟରେ ତାଙ୍କର ଗୁଡ୍ ସାମାରିଟାନ୍‌ଙ୍କ ସହିତ ସାକ୍ଷାତ ହୋଇଥିଲା । ସେହି ଅନୁର୍ବର ମରୁ ପ୍ରଦେଶ ଏ ପର୍ଯ୍ୟନ୍ତ ମଧ୍ୟ ୨୦୦୦ ବର୍ଷର ପୁରୁଣା ଅବସ୍ଥାରେ ରହିଅଛି ।

ଜେରୁଜେଲମ୍‌ର ଦକ୍ଷିଣକୁ ମରୁସାଗର ଉପତ୍ୟକା ଆରମ୍ଭ । ଏହି ଉପତ୍ୟକାରେ ରହିଛି ପୃଥିବୀର ସବୁଠାରୁ ନିମ୍ନରେ ଥିବା ହ୍ରଦ ମରୁସାଗର ବା ଡେଡ୍ ସି । ଭୂମଧ୍ୟସାଗରର ପତନରୁ ୧୩ଶହ ଫୁଟ ତଳେ ଏହି ହ୍ରଦ ରହିଛି । ଖ୍ରୀ.ପୂ . ୫୦ ହଜାର ବର୍ଷ ତଳେ ଏ ଅଞ୍ଚଳରେ ପ୍ରବଳ ବର୍ଷା ହୋଇ ହ୍ରଦ ଉଚ୍ଛୁଳି ପଡ଼ିଥିଲା । ବାଇବେଲ୍ ବର୍ଣ୍ଣିତ ପ୍ରଳୟ ହିଁ

ଏହି ବର୍ଷା ଘଟାଇଥିଲା । ପ୍ରବଳ ବର୍ଷା ଯୋଗୁଁ ଚାରିପାଖର ଭୂମି ସମ୍ପୂର୍ଣ୍ଣରୂପେ ଅବକ୍ଷୟ ହୋଇଥିବା ଭୂଅଭ୍ୟନ୍ତର ଶିଳାସ୍ତର ଏଠାରେ ଦେଖାଯାଏ ।

ମରୁ ସାଗରର ଜଳ ଅତ୍ୟନ୍ତ ଲବଣାକ୍ତ । ବାଇବେଲ୍‌ରେ ବର୍ଣ୍ଣିତ ଲବଣ ସ୍ତମ୍ଭ ମାନ ଏବେବି ଏଠାରେ ଦେଖାଯାଏ । ପ୍ରକୃତିର ବିଚିତ୍ର ଖେଳ ଯୋଗୁଁ ଏ ଅଞ୍ଚଳରେ ଦିନ ଦିନ ଧରି ଘନ କୁହୁଡ଼ି ଲାଗିରହେ । ରାତିଦିନ ବାରିହୁଏ ନାହିଁ । ବାଇବେଲ୍‌ରେ ଏହାକୁ ସ୍ୱର୍ଗର ବାଦଲ ବୋଲି ବର୍ଣ୍ଣନା କରାଯାଇଛି । ପ୍ରବଳ ପବନରେ ଜୁଡ଼ାନ ମରୁଭୂମିରୁ ଧୂଳିକଣା ଓ ଗୁଣ୍ଡ ଉଠି ଏହି ଉପତ୍ୟକାରେ ଆକାଶରୁ ଝରିପଡ଼ନ୍ତି । ଏହାକୁ ବାଇବେଲ୍‌ରେ ସ୍ୱର୍ଗର ଧୂଳିକଣା ବର୍ଷା ବୋଲି ବର୍ଣ୍ଣନା କରା ହୋଇଛି ।

ଜେରୁଜେଲମ୍‌ର ଉତ୍ତରକୁ ଗାଲିଲି ହ୍ରଦ । ଏହା ସମୁଦ୍ର ପତନରୁ ୬୮୦ ଫୁଟ୍ ତଳେ ଏବଂ ମଧୁର ଜଳ ଭରା । ଏହି ଅଞ୍ଚଳରେ ବଡ଼ ବଡ଼ ପଥର ସବୁଆଡ଼େ ଥିବାରୁ ଚାଷ ହୋଇପାରେ ନାହିଁ । ତେଣୁ ଏବେବି ଲୋକମାନେ ବାଇବେଲ୍ ସମୟ ଭଳି ହ୍ରଦରୁ ତେଲପିଆ, ଗାଲିଲିଆ ବା ସେଣ୍ଟପିଟର ମାଛ ଧରୁଛନ୍ତି । ବାଇବେଲର ବର୍ଣ୍ଣନା ଅନୁଯାୟୀ ଯୀଶୁଙ୍କର ଶିଷ୍ୟ ପିଟର ଏକ ମାଛ ମଧ୍ୟରୁ ମୁଦ୍ରାଟିଏ ବାହାର କରି ଟ୍ୟାକ୍ସ ଦେଇଥିଲେ । ଏବେବି ମାଛ ଦେହରେ ଥିବା ଏକ ଚିହ୍ନକୁ ପିଟରଙ୍କ ଚିହ୍ନ ବୋଲି ଲୋକେ କହନ୍ତି । ଏହି ହ୍ରଦର ଗୋଟିଏ ଦିଗରେ ବେଥଲହେମ୍ ଗ୍ରାମରେ ଯିଶୁ ଜନ୍ମ ନେଇଥିଲେ ଓ ହ୍ରଦର ଆରକଡ଼ରେ ଥିବା ନାଜିର୍ ଗ୍ରାମରେ ବାଲ୍ୟକାଳ କଟାଇଥିଲେ । ସେଥିପାଇଁ ଯିଶୁଙ୍କୁ ନାଜିରିନ୍ ବୋଲି କୁହାଯାଏ । ଏହି ହ୍ରଦରେ ଯିଶୁ ଡଙ୍ଗାରେ ଗଲାବେଳେ ପ୍ରବଳ ଝଡ଼ ହେବାରୁ ତାଙ୍କ ଆଦେଶରେ ଝଡ଼ ବନ୍ଦ ହୋଇଥିଲା । ତାଙ୍କର ପ୍ରଥମ ଶିଷ୍ୟ ଦୁଇଜଣ ମାଛଧରାଳୀ ଥିଲେ । ହ୍ରଦର ପାଣି ଉପରେ ଚାଲି ସେ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଥିଲେ ଓ ତାଙ୍କର ଶିଷ୍ୟ ପିଟରଙ୍କୁ ମଧ ପାଣି ଉପରେ ଚଲାଇଥିଲେ । ପିଟର ପାଣିରେ ଚାଲୁ ଚାଲୁ ଡରିଯିବାରୁ ପାଣିରେ ବୁଡ଼ିଯାଇଥିଲେ ଓ ଯିଶୁ ହାତ ବଢ଼ାଇ ତାଙ୍କୁ ଉଦ୍ଧାର କରିଥିଲେ । ।

ଜେରୁଜେଲମରେ ମାଉଣ୍ଟ ଅଲିଭ୍ ନାମରେ ଯେଉଁ ପାହାଡ଼ ରହିଛି । ସେହିଠାରେ ଯିଶୁ ତାଙ୍କର ଶେଷ ବାଣୀ ଶୁଣାଇଥିଲେ । ସେହି ପାହାଡ଼ ତଳେ ଥିବା ଗେଥେସ୍‌ମ୍ୟାନ୍ ବଗିଚାରେ ଯିଶୁ ଶତ୍ରୁମାନଙ୍କ ଦ୍ୱାରା ବନ୍ଦୀ ହୋଇଥିଲେ । ଏହି ଯାଗାରେ ରୋମାନ୍ କ୍ୟାଥଲିକ୍ ଦ୍ୱାରା ଅଲ ନେସନ ଚର୍ଚ୍ଚ ପ୍ରତିଷ୍ଠା କରାଯାଇଛି । ଯିଶୁଙ୍କୁ ଯେଉଁଠାରେ କ୍ରୁଶବିଦ୍ଧ କରାଯାଇଥିଲା ସେହିଠାରେ "ହୋଲି ସ୍ଲଭପଚର ଚର୍ଚ୍ଚ" ପ୍ରତିଷ୍ଠା କରାଯାଇଛି । ଏଠାରେ ଯାତ୍ରୀମାନେ ମହମବତୀ ଜଳାଇଥାନ୍ତି । ମାଉଣ୍ଟ ଟାବୋର ପାହାଡ଼ରେ ଯିଶୁ ନିଜର ସ୍ୱର୍ଗୀୟ ରୂପ ବା ଟ୍ରାନସଫିଗରେସନ ପ୍ରଦର୍ଶନ କରିଥିଲେ । ଯେଉଁ ବାଟ ଦେଇ ରାଜଦରବାରରୁ ଯିଶୁଙ୍କୁ ବଧ୍ୟଭୂମିକୁ ନିଆଯାଇଥିଲା, ସେହି ରାସ୍ତାକୁ କ୍ରନ୍ଦନର ପଥ ବୋଲି ନାମିତ କରାଯାଇଛି ।

ବାଇବେଲ୍ ସମୟରେ ଇସ୍ରାଏଲ ଅଞ୍ଚଳରେ ବାରମ୍ବାର ମରୁଡ଼ି ଓ ପ୍ଲେଗ୍ ହେଉଥିଲା । ଏଥିରୁ ଉଦ୍ଧାର ପାଇଁ ଇସ୍ରାଏଲ୍ ଅଧିବାସୀମାନେ ବାରମ୍ବାର ଇଜିପ୍ଟକୁ ପଳାଉଥିଲେ । ବାଇବେଲ୍‌ରେ ବର୍ଣ୍ଣିତ ଆବ୍ରାହମ, ଜ୍ୟାକପ୍, ଜୋସେଫ୍, ମୋଷେ ଇତ୍ୟାଦି ମହାତ୍ମାମାନେ ସେମାନଙ୍କୁ ସେହି ଅଜଣା ମରୁଭୂମି ଓ ପାହାଡ଼ିଆ ରାସ୍ତା ଦେଇ ନେଲାବେଳେ ବାରମ୍ବାର ବିପଦର ସମ୍ମୁଖୀନ ହେଉଥିଲେ ଓ ଈଶ୍ୱରଙ୍କ ଦୟାରୁ ବିପଦ ଦୂର ହେଉଥିଲା । ଏହି ମହାତ୍ମା ମାନେ ଈଶ୍ୱରଙ୍କ ବାଣୀକୁ କମାଣ୍ଡମେଣ୍ଟ ଆକାରରେ ଲୋକଙ୍କ ନିକଟରେ ପ୍ରଚାର କରୁଥିଲେ । ସବୁ ବିପଦ ସତ୍ତ୍ୱେ ଇସ୍ରାଏଲ୍ ମାଟି ତାଙ୍କର ଆକର୍ଷଣ କେନ୍ଦ୍ର ବା ପ୍ରମିସଲାଣ୍ଡ ଥିଲା । ତେଣୁ ସେମାନେ ଇଜିପ୍ଟର ଶସ୍ୟ ଶ୍ୟାମଳା କ୍ଷେତ୍ର ଛାଡ଼ି ଇସ୍ରାଏଲ୍ ମାଟିକୁ ଫେରି ଆସୁଥିଲେ । ଥରେ ଫେରିଲାବେଳେ ଇଜିପ୍ଟର ସେନାମାନେ ସେମାନଙ୍କୁ ପଛରୁ ଆକ୍ରମଣ କରି ମାଡ଼ିଆସିଲେ । ଆଗରେ ଲୋହିତ ସାଗର । ହଠାତ୍ ଈଶ୍ୱରଙ୍କ ଆଜ୍ଞାରେ ସାଗରର ପାଣି ଦୁଇଭାଗ ହୋଇଥିଲା । ଇସ୍ରାଏଲୀୟମାନେ ସମୁଦ୍ର ଅତିକ୍ରମ କରି ଚାଲିଗଲେ । ମାତ୍ର ତାଙ୍କୁ ଅନୁସରଣ କରୁଥିବା ଇଜିପ୍ଟର ସୈନ୍ୟମାନେ ପାଣିରେ ବୁଡ଼ିମଲେ ।

ଶେଷରେ ୧୨ ପ୍ରକାର ଜାତିର ଲୋକ ଇସ୍ରାଏଲ୍‌ରେ ବାରଟି ରାଜ୍ୟ ସ୍ଥାପନ କଲେ । ରାଜା ଡେଭିଡ଼୍‌ଙ୍କ ନେତୃତ୍ୱରେ ସେମାନେ ଏକତ୍ରିତ ହୋଇ ପୁଣିଥରେ ଗୋଟିଏ ରାଜ୍ୟ ସ୍ଥାପନ କଲେ । ଏହାପରେ ବିଜ୍ଞ ରାଜା ସୋଲେମ୍ୟାନ ଜେରୁଜେଲମର ରାଜା ହେଲେ । ଅଷ୍ଟମ ଶତାବ୍ଦୀ ପରେ ଇସ୍ରାଏଲ୍ ଉପରେ ବିଦେଶୀ ଶତ୍ରୁମାନେ ଝାମ୍ପି ପଡ଼ିଲେ । ପ୍ରଥମେ ଆଶ୍ରୀୟମାନେ ଆସିଲେ । ଖ୍ରୀ.ପୂ ୫୯୮ରେ ବେବୀଲୋନ୍ ସମ୍ରାଟ୍ ନେବୁଚାଦେନାର ଏହି ରାଜ୍ୟକୁ ଆକ୍ରମଣ କରି ଧ୍ୱଂସ ବିଧ୍ୱସ୍ତ କରିଦେଲେ । ପରବର୍ତ୍ତୀ କାଳରେ ପାରସ୍ୟର ସମ୍ରାଟ ସାଇରସ୍ ଏହା ଅଧିକାର କଲେ । ଖ୍ରୀ.ପୂ.. ୩୩୨ରେ ଗ୍ରୀକ୍ ସମ୍ରାଟ ମହାବୀର ଆଲେକଜାଣ୍ଡର ଏହାକୁ ଜୟ କରି ପୂର୍ବଦିଗକୁ ଯାତ୍ରା କଲେ । ତାଙ୍କ ପରେ ତାଙ୍କର ସେନାପତି ଟୋଲେମି ଓ ପରେ ଏହି ଅଞ୍ଚଳ ସେନାପତି ସେଲୁସିଡ଼୍‌ଙ୍କ ଅଧୀନକୁ ଚାଲିଗଲା । ଶେଷରେ ଏହା ଖ୍ରୀ.ପୂ ୪୩ରେ ରୋମାନ୍ ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ ହେଲା ।

ଯିଶୁଙ୍କ ସମୟରେ ମହାରାଜା ହେରୋଡ୍ ରୋମ ତରଫରୁ ଜେରୁଜେଲମର ଶାସନକର୍ତ୍ତା ଥିଲେ । ହେରାଡ୍‌ଙ୍କ ସମୟରେ ଇସ୍ରାଏଲର ଅଭୁତପୂର୍ବ ଉନ୍ନତି ହୋଇଥିଲା । ତାଙ୍କ ସମୟର ଅନେକ କୀର୍ତ୍ତି ଏ ପର୍ଯ୍ୟନ୍ତ ଦେଖାଯାଏ । ଖ୍ରୀ.ପୂ ୪ରେ ଯିଶୁ ଖ୍ରୀଷ୍ଟ ବେଟେଲ୍‌ହେମ୍ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ମାତ୍ର ଇସ୍ରାଏଲ୍‌ରେ ବିଦ୍ରୋହ ହେବାରୁ ଖ୍ରୀ.ଅ. ୩୩ରେ ରୋମାନ୍‌ମାନେ ଏହି ସହର ଓ ଆଖପାଖ ଅଞ୍ଚଳକୁ ଧ୍ୱଂସ କରିଦେଲେ ଓ ଇହୁଦୀମାନଙ୍କୁ କ୍ରୀତଦାସ କରି ବିଭିନ୍ନ ଦେଶରେ ବିକ୍ରି କରିଦେଲେ । ଈଶ୍ୱର ତାଙ୍କୁ ଆଉଥରେ

ଫେରାଇ ଆଣିବେ ଏହି ଆଶା କରି ଇହୁଦୀମାନେ ଜେରୁଜେଲମର ଚାବିକୁ ଶୂନ୍ୟକୁ (ଈଶ୍ୱରଙ୍କ ନିକଟକୁ) ଫିଙ୍ଗିଦେଇ ରାଜ୍ୟ ଛାଡ଼ି ଚାଲିଗଲେ । ଗଲାବେଳେ ସେମାନେ ମାଉଣ୍ଟ୍ ଅଲିଭ କାନ୍ଥରେ ମୁଣ୍ଡପିଟି କାନ୍ଦିଥିଲେ । ସେହିଦିନ ଠାରୁ ତାହା ଓ୍ୱେଲିଙ୍ଗଓ୍ୱାଲ୍ ନାମରେ ଖ୍ୟାତ ହେଲା । ପ୍ରତି ଇହୁଦୀ ପରିବାର ସେହି ସ୍ମୃତିକୁ ମନେ ରଖିବା ପାଇଁ ନିଜ ଘରର କାନ୍ଥର କିଛି ଅଂଶକୁ ଅନାବୃତ ରଖି ବର୍ଷରେ ଥରେ ଶୋକ ପାଳନ କରୁଛନ୍ତି ।

ଇହୁଦୀମାନେ ରାଜ୍ୟହରା ହେଲେ । ରୋମାନଙ୍କ ପରେ ତୁର୍କମାନେ ସେହି ଅଞ୍ଚଳକୁ ଅଧିକାର କଲେ । ଜେରୁଜେଲମର ମାଉଣ୍ଟଅଲିଭ ଉପରେ ମୁସଲମାନଙ୍କର ତୃତୀୟ ପବିତ୍ରତମ ମସଜିଦ୍ ଆଲାସ୍କା ତିଆରି ହେଲା । ପ୍ରଥମ ମହାଯୁଦ୍ଧପରେ ତୁର୍କ ସାମ୍ରାଜ୍ୟ ଭାଙ୍ଗିପଡ଼ିଲା । ବ୍ରିଟିଶ୍‌ମାନେ ଏହି ପବିତ୍ର ଭୂମିର ମାଲିକ ହେଲେ । ଦ୍ୱିତୀୟ ମହାଯୁଦ୍ଧ ପରେ ସାରା ପୃଥିବୀରୁ ନିର୍ଯ୍ୟାତିତ ଇହୁଦୀମାନେ ଲକ୍ଷ ଲକ୍ଷ ସଂଖ୍ୟାରେ ଆସି ପବିତ୍ର ଭୂମି ପାଲେଷ୍ଟାଇନ୍‌ରେ ବାସ କରିବାକୁ ଲାଗିଲେ । ଜାତିସଂଘର ନିର୍ଦ୍ଦେଶ ଅନୁଯାୟୀ ପାଲେଷ୍ଟାଇନ୍‌କୁ ଦୁଇଭାଗ କରି ଇହୁଦୀ ଇସ୍ରାଏଲ୍ ଓ ପାର୍ଲେଷ୍ଟାଇନ୍ ଆରବ ରାଜ୍ୟ ସୃଷ୍ଟିହେଲା । ମାତ୍ର ପରେ ପରେ ଦୁଇ ଦେଶ ଭିତରେ ଯୁଦ୍ଧ ଆରମ୍ଭ ହେଲା । ସେହି ଯୁଦ୍ଧ ଓ କନ୍ଦଳ ଏବେବି ଚାଲୁ ରହିଛି ଓ ନିରୀହ ଲୋକଙ୍କର ରକ୍ତରେ ପୁଣ୍ୟଭୂମି ରକ୍ତରଞ୍ଜିତ ହେଉଛି ।

*ସ୍ତ୍ରୀରୋଗ ବିଶେଷଜ୍ଞ*
*କୋନାଲ୍ ହସ୍ପିଟାଲ୍‌ରୋଡ*
*ଉମରକୋଟ, ନବରଙ୍ଗପୁର*

❀

# ଆଜିର ପରିବେଶ

ପ୍ରମିଳା ଚୌଧୁରୀ (୫୯)

ପୃଥିବୀ ଉତ୍ତପ୍ତ ହେଲାଣି । ଗ୍ରୀଷ୍ମ ବଢ଼ିବାରେ ଲାଗିଛି । ଆଉ ବର୍ଷକୁ ଛଅ ଋତୁ ଅନୁଭବ ହେଉନାହିଁ । କେବଳ ଗ୍ରୀଷ୍ମ ବର୍ଷା ଶୀତ ଅନୁଭବ ହେଉଛି । ଏହି ତିନି ଋତୁରୁ ଗ୍ରୀଷ୍ମ ଋତୁ ହିଁ ଅଧିକ ମାତ୍ରାରେ ଅନୁଭୂତ ହେଉଛି । ଓଡ଼ିଶାରେ ପ୍ରାୟ ଶୀତଋତୁ କମିଗଲାଣି । ସବୁବେଳେ ପାଣି ପାଇଁ ହାହାକାର । ଲୋକସଂଖ୍ୟା ବଢ଼ି ବଢ଼ି ଚାଲିଛି । ଦଶବର୍ଷକେ ଥରେ ଘଟୁଥିବା ବାତ୍ୟା ବିପର୍ଯ୍ୟୟକୁ ଡରି ଆଉ ଚାଳଛପର ଘର ନାହିଁ । ଟିଣ ଛାତ ଆଜେବେଷ୍ଟସ୍ ଛାତ ବା ସିମେଣ୍ଟ ଛାତ ହେଲାଣି । ଜୀବନକୁ ସରସ ସୁନ୍ଦର କରିବା ପାଇଁ ବିଭିନ୍ନ ସୁବିଧାଜନକ ଉପାୟ ବାହାରୁଛି । ବିଜ୍ଞାନ ଆଜି ଆଧୁନିକତାର ସିଢ଼ି ଚଢ଼ି ଘରେ ଘରେ ପହଞ୍ଚିଯାଇଛି । ସେଥିପାଇଁ ଇଲେକ୍ଟ୍ରିସିଟି ଲୋଡ଼ା । ଇଲେକ୍ଟ୍ରିସିଟି ପାଇଁ ପ୍ରଚୁର ପାଣି ଆବଶ୍ୟକ । ପାଣି ପାଇଁ ଚତୁର୍ଦ୍ଦିଗରେ ସବୁଜ ବନାନୀ ଦରକାର । କାହିଁ ସବୁଜ ବନାନୀ ? ଆମେ ତ ଦାଣ୍ଡ ବାରି ଅଗଣା ଗୁହାଳ କୂଅମୂଳ ବନ୍ଧ ପୋଖରି କଡ଼େ ମନ୍ଦିର ପରିବେଶ ସବୁଆଡ଼େ ସିମେଣ୍ଟ୍ ଚଟାଣ ଗଢ଼ିଲୁଣି । ଆଉ ମାଟି ଦର୍ଶନ ନାହିଁ । ଆମେ ଶିକ୍ଷିତ ହୋଇ ଆଧୁନିକତାର କୋଟ୍ ପିନ୍ଧି ତାରା ଗଣୁଛୁ । ତେଣୁ ରାସ୍ତାଘାଟ ଘର ଗେଟ୍ ଯାଏଁ ଲଗାଇ ସିମେଣ୍ଟ୍ କଲୁଣି । କ'ଣ ନା- ଆଉ ଧୂଳି ମାଟି କାଦୁଅ ଲାଗିବ ନାହିଁ । ଫୁଲ ଗଛ ଲଗାଇବା ପାଇଁ ମାଟି କିଣି ଆଣୁଛୁ । ତେଣୁ ନା ଗଛଟିଏ ଚଟାଣରେ ଲାଗିପାରିବ ନା ଘାସ ଉଠିବ । ତେଣୁ ବ୍ୟବହାର କରିବା ପାଣି ମାଟିରେ ଭେଦି କୂଅ ପୋଖରୀ ଜମି ବାଡ଼ିରେ ଲାଗିବା ପରିବର୍ତ୍ତେ ନାଳରେ ପଡ଼ି ବାହାରକୁ ଗଡ଼ିଯିବ । ନା ବର୍ଷାରେ ପାଟପୋକ ବୁଲିବ ନା ଜିଆ କେଞ୍ଚୁଆ ମାଟିକୁ ଉର୍ବର କରିବେ । ପ୍ରତି ଗାଁ କିମ୍ବା ସାହିରେ ଥିବା କୂଅ ପୋଖରୀ ପୋତା ହେଲାଣି । ଘରେ ଘରେ ଆଉ କୂଅ ନାହିଁ । ସରକାର ନଦୀରୁ ପାଣି ପାଇପ୍ ଲାଇନ୍‌ରେ ଦେବେ । ଆମେ ଟ୍ୟାପ୍‌ରୁ ସିଧା ପାଣି ପାଇ ବ୍ୟବହାର କରିବୁ ଏହା ସହଜ ପନ୍ଥା । ପୋଖରୀ ପୋତା ହୋଇ ଆପାର୍ଟମେଣ୍ଟ ତିଆରି ହେଲା । ଗ୍ରୀଷ୍ମରେ ଛାତ ଗୁଡ଼ିକ ତାତି ନିଆଁ ବର୍ଷା ହେଲା । ସେହି ଗରମକୁ ସହ୍ୟ କରିବା ପାଇଁ ଫ୍ୟାନ୍, ଏସି, କୁଲର୍, ଇତ୍ୟାଦିର ବ୍ୟବହାର ହେଉଛି । କେବଳ ଭୋଗ ଆଉ ଭୋଗ । ଷାଠିଏ ସତୁରୀ ବର୍ଷର ଜୀବନ ଜିଇଁବା । ମରିବା ପୂର୍ବରୁ ଯେମିତି ସବୁ ଭୋଗ କରିଦେବା । ଆଳୁ ପିଆଜ ଦର ବଢ଼ିଗଲେ ଆନ୍ଦୋଳନ କରିବା । କଳରେ ପାଣି ନ ଆସିଲେ ହାଣ୍ଡି ମାଠିଆ ଧରି ରାଜରାସ୍ତା ଅବରୋଧ କରିବା ସିନା ପୃଥିବୀ ଉତ୍ତପ୍ତ ହେଉଛି ଗାଁ ଗଣ୍ଡା ସହର ଜଙ୍ଗଲ ଗଛ ବୃକ୍ଷ ବିନା

ଖାଁ ଖାଁ ଲାଗୁଛି ସେଥିକୁ ଆନ୍ଦୋଳନ ନାହିଁ କିମ୍ବା କୌଣସି ଚେଷ୍ଟା ନାହିଁ । କେହି ଜଣେ 'ପ୍ରକୃତି ବନ୍ଧୁ' ପୁରସ୍କାର ପାଇଲେ ଖୁସିହେବା । ଆମେ ନିଜେ ପ୍ରକୃତିବନ୍ଧୁ ପୁରସ୍କାର ପାଇବା ପାଇଁ ଚେଷ୍ଟା ନାହିଁ । ଆମେ କେବଳ ଟିଭି ଦେଖିବା ଓ କାନରେ ଫୋନ୍‌ଟା ଲଗାଇ ଆନନ୍ଦ ହେବା । ପ୍ରତି ଗାଁ ରାସ୍ତାରେ ଥିବା ଆମ୍ବ, ଜାମୁ, ନଡ଼ିଆ, ବେଲ, ଲିଚୁ, ତାଳ, ଖଜୁରୀ, କରମଙ୍ଗା ବରକୋଳି, ନରକୋଳି, ଜାମୁକୋଳି, କ୍ଷୀରକୋଳି, ପଣସ ଇତ୍ୟାଦି ତୋଟା ତଥା ଚମ୍ପା, ମନ୍ଦାର, ମଲ୍ଲୀ, ଯୁଇଯାଇ, ହେନା ଓ ଗୋଲାପ ପ୍ରଭୃତି ବଗିଚା ଆଉ ନାହିଁ । କଦବା କେବେ କେହି ଯଦି ଏସବୁ କରି କୃତ୍ରିମ ଜଙ୍ଗଲଟିଏ କରିଥିବେ ତେବେ ରାତି ପାହିଲା ବେଳକୁ ନା ଫଳ ଗଛରେ ଫଳ ଥିବ ନା ଫୁଲ ଗଛରେ ଫୁଲ ଥିବ-ସବୁ ଲଣ୍ଡା ହୋଇଯାଇଥିବ । ତେଣୁ ବର୍ତ୍ତମାନ ଏସବୁ ପାଇଁ ଚୋର ବି ରାତି ରାତି ନ ଶୋଇ ଅନିଦ୍ରା । କର୍ମକୋଢ଼ିଆମାନେ ଗଛ ଲଗାଇବା ପାଇଁ ଅଳସ । ଚୋରିକଲାବେଳକୁ ଷଣ୍ଢର ବଳ । କଳିଗୋଳ କରିବା ପାଇଁ ଶତସିଂହର ବପୁ ।

ବର୍ତ୍ତମାନ ତ ଯହିଁ ଦେଖ ବଡ଼ ବଡ଼ ଘର ଦ୍ୱାର ଦେଖି ଆଖି ଝଲସି ଯାଉଛି । ଗ୍ରୀଷ୍ମ ହିଁ ଗ୍ରୀଷ୍ମ । ଦାଣ୍ଡ ବାରିରେ ଯଦି ଗଛ ଲାଗେ ତେବେ ଇଲେକ୍ଟ୍ରିକ୍ ତାର ଭୟରେ ସବୁ କଟା ହେବାକୁ ବାଧ୍ୟ । କି ସଭ୍ୟତାରେ ଆମେ ଫସିଗଲୁରେ ବାବା । ଏତେ ଲେଖାଲେଖି ଏତେ ଆଲୋଚନା ସରକାରୀ ସ୍ତରରେ ଏତେ ପ୍ରସ୍ତୁତି କିଛି କାମ ଦେଉନି । କେବଳ କାଗଜ କଲମରେ ରହିଯାଉଛି । ଅଳ୍ପ କିଛି ଫଳପ୍ରସୂ ହେଉଛି ତାହା ବି କିଛିଦିନ ପାଇଁ । ଗଛ ଲଗାଇଲା ବେଳେ ଗଛକୁ ଚୋର ଲାଗିଯାଉଛନ୍ତି । ସୁନା ଟଙ୍କାକୁ ଯେଭଳି ଚୋର ଗଛକୁ ସେଭଳି ଚୋରର ଆଖି । ଶୋଇବା ପାଇଁ ଖଟ, ଖାଇବା ପାଇଁ ଟେବୁଲ୍ ଚୌକି ବସିବା ପାଇଁ ସୋଫା ନଥିଲେ ଆଧୁନିକ ଭଳି ଲାଗୁନି । ସହରରେ ଆଉ ଗଛ ଲଗାଇବା ପାଇଁ ଜାଗା ନାହିଁ କେବଳ ବଡ଼ ବଡ଼ ଘର । ଏବେ ସହରୀ ସଭ୍ୟତା ଗାଁରେ ପହଞ୍ଚିଯାଇଛି । ଗାଁ ଲୋକେ ନିଜ ନିଜ ଜମି ବାଡ଼ି ବିଲଡର୍‌ମାନଙ୍କୁ ଦେଇ ମୋଟା ଅଙ୍କର ପଇସା ପାଇଲେଣି । ଆଉ ପରିଶ୍ରମ ପାଇଁ ଇଚ୍ଛା ନାହିଁ । ପିଲାଏ ଦେଶ ବିଦେଶରେ କାମ କଲେଣି । ପଙ୍କ ପାଣି କାଦୁଅରେ କିଏ କାହିଁକି କାମ କରିବ ? ଆଉ ଚାଷବାସ କରିବାକୁ କିଏ ଅଛି ? ଏବେ ସରକାର କେବଳ ତାଙ୍କ କାଗଜପତ୍ରରେ ଚାଷ କରୁଛନ୍ତି । ସରକାରଙ୍କୁ କାହିଁ ସମୟ ଏସବୁ ପାଇଁ, ନେତାମାନେ କେବଳ ରାଜନୀତିରେ ବ୍ୟସ୍ତ । ଟୋକାମାନଙ୍କୁ ନେଇ ରାଜନୀତି କରି କରି ବେକାରୀ କରିଦେଲେଣି । ଯଦି ସରକାରୀ ବାବୁ ଚାକିରିଆମାନେ ଏତେ ବିଳାସ ବ୍ୟସନରେ ରହିଲେ ତେବେ ତାଙ୍କୁ ଦେଖା ଦେଖି ସମସ୍ତେ ବିଳାସମୟ ଜୀବନ ଜିଇଁଲେ । ସରକାର ଚଳାଉଥିବା ନେତାମାନେ ବି କ'ଣ କରିବେ ? ଭୋଟ୍ ପାଇଁ ପାଞ୍ଚବର୍ଷ ଯାକ ତାଙ୍କୁ ମୁଣ୍ଡ ଖେଳାଇବାକୁ ପଡୁଛି ଆଉ ଶାଗୁଆ ପୃଥିବୀ ବା ଶାଗୁଆ ସହର ପାଇଁ କେତେବେଳେ ସେ ଚେଷ୍ଟା କରିବେ ?

ଆସନ୍ତୁ ! ଆମେ ସମସ୍ତେ ମିଶି ସୁନ୍ଦର ଧରିତ୍ରୀ, ସୁନ୍ଦର ସବୁଜ ବଳୟ ତିଆରି କରିବା । ଆହୁରି ତ ଶ୍ରେଷ୍ଠ ହେବ ଯେବେ ଶିକ୍ଷିତ ଯୁବକ ଯୁବତୀ କିଛି ସମୟ ଫାଇଲ୍‌ଚାଷରୁ ବିରତ ହୋଇ ନିଜର କିଛି ମୂଲ୍ୟବାନ ସମୟ ଆମର ସହର ଗାଁ ପରିବେଶ ଭିତରେ ସବୁଜ ବଳୟ ନିଶ୍ଚୟ ସୃଷ୍ଟି କରିବା ହେବେ । ଯଥେଷ୍ଟ ସମୟ ଅଛି । ନିଜ ପରିବେଶ ଭିତରେ କିଛି ଛୋଟ ଚାରା କିଛି ପନିପରିବା ଚାଷ ପ୍ରତି ଛାତ ଉପରେ ବର୍ଷାପାଣି ରହିବା ଭଳି ବ୍ୟବସ୍ଥା କିଛି ଫୁଲଚାରା ପ୍ରତ୍ୟେକ ଛାତରେ କିମ୍ବା ବାଡ଼ି ବଗିଚାରେ ସୃଷ୍ଟି କରିବା ଯେମିତି କି ଶ୍ୟାମଳ ବନାନୀ ହସିଉଠିବ । ଗ୍ରୀଷ୍ମଦିନଟା ଆଉ ଉତ୍ତପ୍ତ ହେବ ନାହିଁ ।

ଆସନ୍ତୁ ଆମ 'ବନ୍ଧୁ' ପରିବାରର ପ୍ରତିଟି ସଦସ୍ୟ ଏ ବିଷୟରେ ଗଭୀର ଭାବରେ ଚିନ୍ତା କରି ଆଜିଠୁ ହିଁ ସବୁଜ ବନାନୀ ସୃଷ୍ଟି କରିବା । ଏ ହେବ ଆମ ପାଇଁ ଗୋଟିଏ ବିଶିଷ୍ଟ ସମାଜ ସେବା । ପ୍ରତି ସ୍କୁଲର 'କିଶୋର ବନ୍ଧୁ'କୁ ଏ ବିଷୟରେ ଚେତନା ଜାଗ୍ରତ କରାଇବା ତଥା ସେମାନଙ୍କୁ ସେ ଦିଗରେ ସାହାଯ୍ୟ କରିବା । କଥାରେ ଅଛି ନା "Rome was not built in day" ଏ ଦିଗରେ ଦୃଢ଼ ସଂକଳ୍ପ ହୋଇ ଏବେଠୁ ଏହି କାର୍ଯ୍ୟରେ ଆଗେଇଯିବା । ଜନସାଧାରଣ ମଧ୍ୟ ଏ ଦିଗରେ ଆଗେଇ ଆସନ୍ତୁ । ସୁନ୍ଦର ଧରିତ୍ରୀ ସବୁଜ ଧରିତ୍ରୀ ପାଇଁ ଆଗେଇ ଆସନ୍ତୁ । ଆମ ହାତରେ ହେବ ପରିବେଶ ସୁରକ୍ଷା ଓ ପ୍ରକୃତି ସୁରକ୍ଷା । ଆମେ ହିଁ ସରକାର । ଆମେ ହିଁ ଆମକୁ ରକ୍ଷା କରିବା । ସମସ୍ତେ ଜଣେ ଜଣେ ପ୍ରକୃତିର ବନ୍ଧୁ ହୋଇ ଜୀବନ ବିତାଇବା ।

*ଇନ୍ଦିରାନଗର, ଶିଳ୍ପାଞ୍ଚଳ*
*ବ୍ରହ୍ମପୁର, ଗଞ୍ଜାମ*
*ପିନ୍-୭୬୦୦୦୮*

# ମୁକ୍ତିତୀର୍ଥ ଗୟା

ସଂଯୁକ୍ତା ଶରଣ (୨୦୧)

ଭାରତୀୟ ସଂସ୍କୃତିରେ ପିତୃଲୋକଙ୍କୁ ପିଣ୍ଡଦାନ କରିବାର ଏକ ମହାନ୍ ପରମ୍ପରା ଚଳିଆସିଛି । ହିନ୍ଦୁମାନଙ୍କର ବିଶ୍ୱାସ ଅଛି ଯେ, ଉତ୍ତରାଧିକାରୀମାନେ ଏହା କଲେ ପିତୃଲୋକର ଅଧିବାସୀଗଣ ମୁକ୍ତିଲାଭ କରନ୍ତି । ଯମଲୋକରୁ ସେମାନେ ବୈକୁଣ୍ଠପୁରକୁ ଗମନ କରନ୍ତି । ଏହି ମହତ୍ କାର୍ଯ୍ୟ ସମ୍ପାଦନ କରି ପିତୃଋଣରୁ ମୁକ୍ତିଲାଭ କରିବାର ବିଶ୍ୱାସ ହିନ୍ଦୁମାନଙ୍କର ରହିଛି ।

ପବିତ୍ର ଭାରତଭୂମିରେ କେତେକ ପ୍ରମୁଖ ତୀର୍ଥସ୍ଥାନ ଅଛି, ଯେଉଁଠି ପିତୃପୁରୁଷଙ୍କୁ ପିଣ୍ଡଦାନ କଲେ ସେମାନଙ୍କ ଆତ୍ମା ତୃପ୍ତି ଲାଭକରେ ଏବଂ ସେମାନେ ବୈକୁଣ୍ଠାଧିବାସୀ ହୁଅନ୍ତି । ପିତୃତୀର୍ଥ ଗୟା (ମଗଧ ରାଜ୍ୟ) ବର୍ତ୍ତମାନ ବିହାର ରାଜ୍ୟର ଅନ୍ତର୍ଗତ ଅଟେ । ପ୍ରାକୃତିକ ସୁଷମା ମଣ୍ଡିତ ସାତଗୋଟି ପର୍ବତମାଳା ପରିବେଷ୍ଟିତ ଗୟା ସହର ସତେ ଯେପରି ଦେବଭୂମିରେ ପରିଣତ ହୋଇଛି । ସହରଟି ପୁରାଣ ପ୍ରସିଦ୍ଧ ଅନ୍ତସଲୀଳା ଫଲ୍‌ଗୁ ନଦୀର ପଶ୍ଚିମ ଦିଗରେ ଅବସ୍ଥିତ । ଶାସ୍ତ୍ର ଅନୁମୋଦିତ ଭାରତର ସାତଗୋଟି ପିତୃତୀର୍ଥ ଭିତରେ ଏହାର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଅଛି । ଏଠାରେ ପ୍ରତ୍ୟେକ ହିନ୍ଦୁ ପ୍ରତିବର୍ଷ ପିତୃପକ୍ଷରେ ଭାଦ୍ରବମାସ ଶୁକ୍ଳ ଚତୁର୍ଦ୍ଦଶୀ ମହାଳୟାଠାରୁ ବିଜୟାଦଶମୀ ପର୍ଯ୍ୟନ୍ତ ପିତୃପୁରୁଷଙ୍କୁ ପିଣ୍ଡଦାନ କରିବାର ବା ଶ୍ରାଦ୍ଧପ୍ରଦାନ କରିବାର ପରମ୍ପରା ରହିଛି । ଅବଶ୍ୟ ବର୍ଷର ଅନ୍ୟ ଧର୍ମମାସ ଗୁଡିକରେ ମଧ୍ୟ ପିତୃଶ୍ରାଦ୍ଧ ନିମନ୍ତେ ଗୟାତୀର୍ଥ ସହର ଲୋକାରଣ୍ୟ ହୋଇଥାଏ । ଇତିହାସରେ ବର୍ଣ୍ଣିତ ଅଛି ଯେ ଏହି ତୀର୍ଥରେ ପିତୃପୁରୁଷଙ୍କୁ ପିଣ୍ଡଦାନ ଲାଗି ୩୬୫ଟି ବେଦୀ ଥିଲା ଯେଉଁଥିରେ ଏହି ପିଣ୍ଡଦାନ କରୁଥିବା ଯାତ୍ରୀ ଓ ଏଠିକାର ଗୟାପାଳ ପଣ୍ଡାମାନଙ୍କ ଦ୍ୱାରା ସମ୍ପନ୍ନ ହୋଇଥାଏ । ଲୋକବାଣୀ ଅନୁସାରେ ଏହି ଗୟାପାଳ ପଣ୍ଡାଙ୍କ ଅନୁପସ୍ଥିତିରେ ପିଣ୍ଡଦାନର ଶୁଭଫଳ ଶୂନ୍ୟ ହୋଇଥାଏ ।

ପ୍ରାଚୀନ ନଦୀ ଫଲଗୁ ବିଶ୍ୱବିଦିତ ଅଟେ । ରାମାୟଣରେ ଏହାର ଖ୍ୟାତି ସମ୍ପର୍କରେ ସୁବିସ୍ତୃତ ସୂଚନା ପ୍ରଦାନ କରାଯାଇଛି । ବନବାସ ସମୟରେ ପ୍ରଭୁ ଶ୍ରୀରାମ ନିଜ ପିତୃପୁରୁଷଙ୍କୁ ପିଣ୍ଡଦାନ କରିବା ପାଇଁ ଅନୁଜ ଲକ୍ଷ୍ମଣଙ୍କ ସହିତ ଜଙ୍ଗଲରୁ ପୁଷ୍ପ ଫଳମୂଳ ସଂଗ୍ରହ କରିବାରେ ବିଳମ୍ବ ଘଟିଲା । ଏଣେ ସୂର୍ଯ୍ୟଙ୍କର ଅସ୍ତାୟମାନ ଗତି ଦେଖି ଦିବଙ୍ଗତ ରାଜା ଦଶରଥ ପିଣ୍ଡଦାନ ପାଇଁ ଅନୁରୋଧ କରନ୍ତେ ଦେବୀ ସୀତା ସ୍ୱାମୀ ଓ ଦେବରଙ୍କ ଅନୁପସ୍ଥିତିରେ ଅନନ୍ୟୋପାୟ ହୋଇ ଫଲଗୁ ନଦୀର ବାଲୁକାଶଯ୍ୟାରେ ବାଲୁକା ଭୋଗ ଦେଇ ପିଣ୍ଡଦାନ କରିଥିଲେ । ପ୍ରଭୁ ଶ୍ରୀରାମ ଏବଂ ଭ୍ରାତା ଲକ୍ଷ୍ମଣଙ୍କ ଫେରିବା ପରେ ସୀତା ପିତୃପୁରୁଷଙ୍କ ପିଣ୍ଡଦାନ ସରିଯାଇଛି ବୋଲି ଉତ୍ତର ଦିଅନ୍ତେ ଶ୍ରୀରାମ ଏ କଥାକୁ ବିଶ୍ୱାସ

କରିନଥିଲେ । ଏ କଥାର ପ୍ରମାଣ ସ୍ୱରୂପ ଫଲଗୁନଦୀ, ଚରୁଥିବା ଗୋମାତା, ପ୍ରସ୍ଫୁଟିତ ମାଳତୀ ଓ ବଟବୃକ୍ଷ ଇତ୍ୟାଦିଙ୍କୁ ସାକ୍ଷୀଭାବେ ପଚାରନ୍ତେ ଏକମାତ୍ର ବଟବୃକ୍ଷ ବ୍ୟତୀତ ଅନ୍ୟ ତିନିଜଣ ନୀରବ ଥିଲେ । ଏଥିପାଇଁ ଦୁଃଖିତା ଓ କ୍ରୋଧିତା ହୋଇ ଦେବୀ ସୀତା ଫଲଗୁ ନଦୀକୁ ଜଳଶୂନ୍ୟ ହେବା ପାଇଁ ଅଭିଶାପ ଦେଲେ । ନିଜର ଦୋଷ ପାଇଁ କ୍ଷମା ପ୍ରାର୍ଥିନୀ ହେବା ପରେ ମା' ଜାନକୀ ତୋର ସ୍ରୋତ ଅନ୍ତ ସଲିଳା ହେଉ ବୋଲି କହି ଫଲଗୁକୁ କ୍ଷମା ଦେଇଥିଲେ । ସେହିଦିନ ଠାରୁ ଏହି ଫଲଗୁ ନଦୀ ଅନ୍ତଃସଲିଳା ହୋଇ ପ୍ରବାହିତ ହେଉଛି ଏବଂ ଗୟା କ୍ଷେତ୍ରରେ ପିତୃପୁରୁଷଙ୍କ ପିଣ୍ଡଦାନାର୍ଥେ ଏକ ପବିତ୍ର ଓ ପ୍ରଶସ୍ତ କ୍ଷେତ୍ରରେ ପରିଣତ ହୋଇଛି । ପୁରାଣ ବର୍ଣ୍ଣନାନୁସାରେ ଫଲଗୁ ନଦୀ ବିନା ଗୟାରେ ପିଣ୍ଡଦାନ ଅସମ୍ପୂର୍ଣ୍ଣ ଅଟେ ।

କାଶୀକ୍ଷେତ୍ର ଦର୍ଶନେସୁ ଗୟାୟାଂ ପିଣ୍ଡଦାନେ,
ସ୍ଥଳେ ଜଳେ ଦ୍ୱୟଂ ତୀର୍ଥେ ପିତୃଲୋକେ ମୁକ୍ତିଫଳ ।
ଜଳେସ୍ଥଳେ ଚାନ୍ତରିକ୍ଷେ ବିଷ୍ଣୁଲୋକେ,
ଶ୍ରୀକ୍ଷେତ୍ରେ ପିତୃଲୋକେ ପିଣ୍ଡଦାନଷ୍ଚ ।

ପ୍ରୋକ୍ତ ଶ୍ଳୋକ ଶ୍ରୀକ୍ଷେତ୍ରର ମହାତ୍ମ୍ୟ ପ୍ରତିପାଦନ କରୁଥିଲେ ମଧ୍ୟ ଗୟାକ୍ଷେତ୍ରର ମହତ୍ୱ ସମ୍ପର୍କରେ ମଧ୍ୟ ସୂଚନା ପ୍ରଦାନ କରିଥାଏ । ଏହା ଶ୍ରାଦ୍ଧ ତର୍ପଣ ଏବଂ ପିଣ୍ଡଦାନ ପାଇଁ ମହତ୍ୱପୂର୍ଣ୍ଣ ସ୍ଥଳୀ ଅଟେ । ପ୍ରାଚୀନ ନଦୀକୂଳ ସଭ୍ୟତା ଦୃଷ୍ଟିରୁ ଆର୍ଯ୍ୟମାନଙ୍କର ନିବାସସ୍ଥଳୀ ଫଲଗୁନଦୀ ଅବବାହିକାର ଗୟା ତୀର୍ଥର ଖ୍ୟାତି ସୁବିସ୍ତୃତ । ଗୋଦାବରୀ ତଟ ନାସିକ, ସରଜୁ ତଟସ୍ଥ ଅଯୋଧ୍ୟା, ମୁଶୀ ନଦୀର ହାଇଦ୍ରାବାଦ, ସିପ୍ରାନଦୀର ଉଜ୍ଜୟିନୀ, କାବେରୀ ନଦୀର କୁମ୍ଭକୋଣମ୍, ମନ୍ଦାକିନୀର ଚିତ୍ରକୂଟ ପ୍ରଭୃତି ପବିତ୍ର ଧାମ ଭଳି ଫଲ୍‌ଗୁ ନଦୀର ଅବବାହିକାସ୍ଥ ଗୟା ତୀର୍ଥ ବିଶ୍ୱବିଖ୍ୟାତ ଅଟେ । ଏହି ତୀର୍ଥର ବୈଶିଷ୍ଟ୍ୟ ଅତୁଳନୀୟ ।

ଫଲ୍‌ଗୁନଦୀର ଉଦ୍‌ଭବ ସମ୍ପର୍କରେ ଏକ ଲୋକକାହାଣୀ ଅଦ୍ୟାବଧି ପ୍ରଚଳିତ । ଭଗବାନ ବିଷ୍ଣୁଙ୍କ ଦକ୍ଷିଣ ପାଦାଙ୍ଗୁଳିରେ ସ୍ଥିତ ଫଲଗୁକୁ ପ୍ରଜାପତି ବ୍ରହ୍ମା ଜଗତ କଲ୍ୟାଣ ଉଦ୍ଦେଶ୍ୟରେ ମର୍ତ୍ତ୍ୟଧାମକୁ ଅଣାଇଥିଲେ । ସେହିଦିନରୁ ଫଲ୍‌ଗୁ ଜନକଲ୍ୟାଣ ଉଦ୍ଦେଶ୍ୟରେ ନିଜକୁ ସମର୍ପିତା କରିଛନ୍ତି ।

ଗୟାତୀର୍ଥର ମହାତ୍ମ୍ୟ ସମ୍ପର୍କରେ ଯେଉଁ ପ୍ରାଚୀନ କାହାଣୀଟି ବର୍ଣ୍ଣିତ ତାହା ଖୁବ୍ କୌତୁହଳପ୍ରଦ । ଏକ ସମୟରେ ନାରଦ ମହର୍ଷି ସୌନକାଦି ଋଷିଙ୍କ ସହିତ ସନତକୁମାରଙ୍କୁ ଅଭୂମିପ୍ରଣାମ କରି ପ୍ରଶ୍ନ କଲେକି, ହେ ମହାତ୍ମା ! ଏପରି ଏକ ତୀର୍ଥର ମହାତ୍ମ ବର୍ଣ୍ଣନା କରନ୍ତୁ ଯେଉଁଠିକୁ ଗତିକଲେ ବା ତୀର୍ଥ ସମ୍ପର୍କରେ ଶୁଣିଲେ ମାନବକୁ ମୁକ୍ତି ମିଳିଥାଏ । ସନତ୍ କୁମାର ନାରଦଙ୍କୁ ଗୟାତୀର୍ଥର କଥା କହିଲେ । ପୁରାଣ ବର୍ଣ୍ଣନାନୁସାରେ ଗୟା ନାମକ ଅସୁର ବଡ ବଳବାନ୍ ଥିଲା । ତା'ର ପ୍ରତାପରେ ଦେବ ମାନବ ଭୀତତ୍ରସ୍ତ ହୋଇଉଠିଥିଲେ । ଗୟାର ଉତ୍ପାତକୁ ଲୁପ୍ତ କରିବା ନିମନ୍ତେ ବ୍ରହ୍ମା ତାଙ୍କର ଶରୀର ଉପରେ

ଧର୍ମଶିଳା ରଖି ଏକ ଯଜ୍ଞ କରିଥିଲେ । ଏହି ଶିଳା ଅଚଳ ହେବା ପାଇଁ ବିଷ୍ଣୁ ଭଗବାନ ଗଦା ଧରି ଉପସ୍ଥିତ ହୋଇଥିଲେ । ଭଗବାନଙ୍କ ସହିତ ଦେବତାମାନେ ଫଲ୍‌ଗୁନଦୀର ଜଳସ୍ରୋତ ସ୍ୱରୂପ ଧାରଣ କରି ବିରାଜିତ ହେଲେ । ବ୍ରହ୍ମା ଯଜ୍ଞ ଅନୁଷ୍ଠାନ କରି ଏକସହସ୍ର ବ୍ରାହ୍ମଣଙ୍କୁ ଗୃହ, ରତ୍ନ, ସ୍ୱର୍ଣ୍ଣ ଆଦି ଦାନ କଲେ । ଗୟା ଯଜ୍ଞ ଶେଷରେ ପ୍ରଭୁଙ୍କ ପାଖରେ ବର ପ୍ରାର୍ଥନା କଲେକି ପ୍ରଭୁ ! ମୋତେ ଏହି ବର ଦାନ କରନ୍ତୁ କି ମୋର ଶରୀର ଉପରେ ଯେଉଁ ପୁତ୍ରମାନେ ଫଲ୍‌ଗୁନଦୀର ଜଳ ସ୍ପର୍ଶ କରାଇ ପିତୃପୁରୁଷଙ୍କୁ ପିଣ୍ଡଦାନ କରିବେ ସେମାନେ ସ୍ୱର୍ଗାଲୋକ ଗମନ କରିବେ । ବର ଗ୍ରହଣ କରିଥିବା ବ୍ରାହ୍ମଣମାନେ ଏହି ପିଣ୍ଡଦାନ ପାଇଁ ଜନସମାଜରେ ସହାୟକ ହେବେ । କିନ୍ତୁ ପରିତାପର ବିଷୟ ଏହା ଯେ ସଂପ୍ରତି ଏହା ଏକ କୌଳିକ ବ୍ୟବସାୟରେ ପରିଣତ ହୋଇଯାଇଛି । ଏଠାରେ ରାଶି ଓ ସମିପତ୍ରରେ ପିଣ୍ଡଦାନ କଲେ ପିତୃପୁରୁଷ ଅକ୍ଷୟ ଲୋକ ପ୍ରାପ୍ତି ହୁଅନ୍ତି ଓ ବ୍ରହ୍ମହତ୍ୟା ଆଦି ପାପରୁ ମୁକ୍ତି ମିଳେ । ଏଠାରେ ପିଣ୍ଡଦାନ କରିବା ପାଇଁ କୌଣସି ସମୟ ବା କାଳର ବିଚାର କରାଯାଏ ନାହିଁ । ଏଠାରେ ମୃତ୍ୟୁବରଣ କଲେ ମୁକ୍ତି ମିଳେ । କାରଣ ଏହା ସପ୍ତପୁରୀରୁ ଗୋଟିଏ ତୀର୍ଥସ୍ଥାନ ଅଟେ । ଏଠାରେ ଲଣ୍ଡା ହେଲେ ସ୍ୱକୁଳ ବୈକୁଣ୍ଠ ଗମନ କରନ୍ତି । ଗୟାରେ ପୃଥିବୀର ସବୁ ତୀର୍ଥ ବିଦ୍ୟମାନ ତେଣୁ ଏହାକୁ ସର୍ବଶ୍ରେଷ୍ଠ ତୀର୍ଥର ମାନ୍ୟତା ଦିଆଯାଇଛି । ଯେଉଁ ମନୁଷ୍ୟମାନେ ମେଷ, କନ୍ୟା, ଧନୁ, କୁମ୍ଭ, ମକର ମାସରେ ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣରେ ଗୟା ଯାଇ ପିଣ୍ଡଦାନ କରନ୍ତି ତାଙ୍କର ମହାନ୍ ପୁଣ୍ୟ ହୁଏ ।

ଥରେ ନାରଦ କହିଲେ, ହେ ସନତ କୁମାର, ମୋତେ ଗୟାସୁରର ଉତ୍ପତ୍ତି ଓ ଏହା ଏପରି ବିଚିତ୍ର କିପରି ହେଲା ଏବଂ ତା' ଉପରେ ବ୍ରହ୍ମା କିପରି ଯଜ୍ଞ କଲେ ଏ ବୃତ୍ତାନ୍ତ ଶୁଣାଅ । ସନନ୍ତ କୁମାର କହିଲେ, ହେ ନାରଦ, ଏକ ସମୟରେ ବ୍ରହ୍ମା ସୃଷ୍ଟି ରଚନା କରିବା ସମୟରେ ଗୟାସୁର ଉତ୍ପନ୍ନ ହୋଇଥିଲା । ଗୟାସୁର କୋଳାହଳ ନାମକ ପର୍ବତରେ ଶ୍ୱାସରୋଧ କରି ଏକ ଗୋଡରେ ଠିଆହୋଇ ବହୁଦିନ ଧରି ତପସ୍ୟା କଲେ । ତା'ର ତପସ୍ୟା ଦେଖି ଇନ୍ଦ୍ର ଓ ଦେବତାମାନେ ଭୟଭୀତ ହେଲେ । ଇନ୍ଦ୍ର ତାଙ୍କର ଇନ୍ଦ୍ରାସନକୁ ଅସୁରକ୍ଷିତ ମନେ କରି ବ୍ରହ୍ମାଙ୍କ ପାଖକୁ ସବୁ ଦେବଗଣଙ୍କୁ ନେଇଗଲେ । ବ୍ରହ୍ମା ଶିବଙ୍କ ପାଖକୁ ଓ ଶିବ ବିଷ୍ଣୁଙ୍କ ନିକଟକୁ ଯାଇ ଗୟାସୁର ବିଷୟରେ କହିଲେ । ହେ ନାଥଃ ଆମ ସମସ୍ତଙ୍କୁ ରକ୍ଷାକର । ବିଷ୍ଣୁ କହିଲେ ତୁମେ ସବୁ ତା' ପାଖକୁ ଯାଅ, ମୁଁ ଗରୁଡ଼ ପୃଷ୍ଠରେ ଯାଉଛି । ବିଷ୍ଣୁ ଗୟାସୁରକୁ ଶଙ୍ଖରେ ସ୍ପର୍ଶ କରି କହିଲେ- ହେ ଦୈତ୍ୟରାଜ, ତୁମ ତପସ୍ୟାରେ ମୁଁ ପ୍ରସନ୍ନ ହୋଇ ତୁମକୁ ବରଦାନ ଦେବା ପାଇଁ ଆସିଅଛି, ତୁମେ କି ବର ମାଗୁଛ ମାଗ ? ଏହା ଶୁଣି ଗୟାସୁର କହିଲା, ହେ ପ୍ରଭୁ ଯଦି ତୁମେ ପ୍ରସନ୍ନ ହୋଇଛ ତେବେ ମୋତେ ଏପରି ବର ଦିଅ- ମୋ ସ୍ପର୍ଶରେ ସୁର, ନର ଅସୁର କୀଟପତଙ୍ଗ ପାପୀ ଋଷୀମୁନି ପ୍ରେତ ସମସ୍ତେ ପବିତ୍ର ହୋଇ ମୁକ୍ତିଲାଭ କରିବେ । ଏହା ଶୁଣି ବିଷ୍ଣୁ ତାଙ୍କ ବରଦାନ କଲେ ଓ ବୈକୁଣ୍ଠପୁରକୁ ଦେବତାଙ୍କୁ ନେଇ ଗମନ କଲେ । ଏହାଫଳରେ ସମସ୍ତେ ମୁକ୍ତିଲାଭ

କଲେ, ଯମପୁରୀ ଜନଶୂନ୍ୟ ହୋଇଗଲା । ଯମ ପୁଣି ଇନ୍ଦ୍ର ଓ ଦେବତାଙ୍କ ସହିତ ବିଷ୍ଣୁଙ୍କ ପାଖକୁ ଗଲେ । ବିଷ୍ଣୁଙ୍କୁ କହିଲେ- ସମସ୍ତେ ତ ବୈକୁଣ୍ଠପୁର ଗଲେଣି । ଏବେ କ'ଣ କରାଯିବ ? ଗୟାସୁର ପାଖକୁ ଯାଇ ଏହାର କିଛି ଗୋଟିଏ ବ୍ୟବସ୍ଥା କରିବା ଉଚିତ୍ । ଏକଥା ଶୁଣି ବିଷ୍ଣୁ ଓ ବ୍ରହ୍ମା ଗୟାସୁର ପାଖକୁ ଯାଇ କହିଲେ, ହେ ଦୈତ୍ୟରାଜ, ମୁଁ ସାରା ପୃଥିବୀ ଘୂରିଆସିଲିଣି ଯଜ୍ଞ କରିବା ପାଇଁ କୌଣସି ପବିତ୍ର ସ୍ଥାନ ପାଇଲି ନାହିଁ । ଯେହେତୁ ତୁମକୁ ବିଷ୍ଣୁ ସ୍ପର୍ଶ କରିଛନ୍ତି ତାହା ପବିତ୍ର ଅଟେ । ସେହି ଶରୀର ଉପରେ ମୁଁ (ବ୍ରହ୍ମା) ଯଜ୍ଞ କରିବାକୁ ଇଚ୍ଛା କରୁଛି ।

ଏହାଶୁଣି ଦୈତ୍ୟ ପ୍ରସନ୍ନ ହୋଇ ଉତ୍ତରଦେଲା- ମୋର ଶରୀର ଯଜ୍ଞ ଦ୍ୱାରା ଆହୁରି ପବିତ୍ର ହେବ, ହେ ନାରଦ । ଗୟାସୁର ଉତ୍ତରକୁ ମୁଣ୍ଡକରି ଶୋଇରହିଲା, ତା' ଉପରେ ସବୁ ଋଷିମାନେ ବ୍ରହ୍ମାଙ୍କ ସହିତ ଯଜ୍ଞକଲେ । ଯଜ୍ଞ ସମାପ୍ତି ପରେ ବ୍ରହ୍ମା ସରୋବରରେ ସ୍ନାନ କରି ଉପସ୍ଥିତ ହେଲେ । ଏହି ସମୟରେ ତାର ଶରୀର ହଲିବାକୁ ଲାଗିଲା । ଏହାଦେଖି ବ୍ରହ୍ମା ଧର୍ମରାଜଙ୍କ ଠାରୁ ଏକ ଦେବମୟୀ ପ୍ରସ୍ତର ଗୟାସୁର ମସ୍ତକରେ ଥୋଇଥିଲେ । ତଥାପି ଅସୁର ସ୍ଥିର ହୋଇନଥିଲା । ଏ ସମସ୍ତ ଦେଖି ବିଷ୍ଣୁ ନିଜ ଶରୀରରୁ ଏକ ବିଷ୍ଣୁରୂପ ବାହାର କରି ଏହି ଶିଳା ଉପରେ ଗଦାଧରି ବିରାଜମାନ ହେଲେ । ବ୍ରହ୍ମା ମଧ ପାଞ୍ଚରୂପ ଧାରଣ କରିଥିଲେ । ପ୍ରପିତାମହ, ପିତାମହ, ଫଳବାୟିର, କେଦାରନାଥ, କନକେଶ୍ୱର ହୋଇରହିଲେ । ଗଣେଶ ଗଜଧାରଣ କରି ଗଦାନଶ୍ୱର ନାମରେ ଦକ୍ଷିଣାୟନ, ଉତ୍ତରାୟନ ସୂର୍ଯ୍ୟସ୍ନାନ ନାମରେ, ଲକ୍ଷ୍ମୀ, ସରସ୍ୱତୀ, ସାବିତ୍ରୀ ସରସ୍ୱତୀ ନାମରେ, ଇନ୍ଦ୍ର ବୃହସ୍ପତି, ବସୁଯଜ୍ଞ ଗନ୍ଧର୍ବ ଓ ସବୁ ଦେବତା ନିଜନିଜ ଶକ୍ତି ଗୟାସୁର ଶରୀରରେ ରହିଲେ । ଏହାଦ୍ୱାରା ଗୟାସୁର ଶରୀର ସ୍ଥିର ହେଲା । ଏସବୁ ଦେଖି ବିଷ୍ଣୁ ଗୟାସୁରଉପରେ ପ୍ରସନ୍ନ ହୋଇ ପୁନଃ ବରଦେବାକୁ ଚାହିଁବାରୁ ଗୟାସୁର କହିଲା, ହେ ଦେବ! ତୁମେ ଯଦି ମୋ ଉପରେ ପ୍ରସନ୍ନ ଅଛ ତେବେ ମୋତେ ଏ ବର ପ୍ରଦାନ କର ଯେତେଦିନ ପର୍ଯ୍ୟନ୍ତ ଆପଣ ମୋ ଉପରେ ବିରାଜମାନ କରୁଥିବେ ମୋର ନାମ ଅନୁସାରେ ଏ ସ୍ଥାନ ଏକ ମହତ୍ୱପୂର୍ଣ୍ଣ ସ୍ଥାନ ହେବ । ଏଠାରେ ଦାନ ପୁଣ୍ୟ ସ୍ନାନ କଲେ ପାପୀମାନେ ମୁକ୍ତିଲାଭ କରିବେ, ଏଠାରେ ପିଣ୍ଡଦାନ କଲେ ପିତୃଲୋକେ ମୁକ୍ତିଲାଭ କରିବେ ।

ଏତିକିରେ ପବିତ୍ର ଗୟାତୀର୍ଥର ଐତିହାସିକ ଓ ଭୌଗୋଳିକ ବିବରଣୀ ଓ ମହାତ୍ମ୍ୟ ସୀମିତ ନୁହେଁ । ଏଭଳି ତୀର୍ଥର ବର୍ଣ୍ଣନା କବି ଓ ପୁରାଣ କଥାକାରମାନେ ସେମାନଙ୍କ ରଚନାରେ କରି ଯାଇଛନ୍ତି । ଏ ଅଧୀନ କେବଳ ସମୁଦ୍ରର ବାଲୁକାବେଳାରୁ ଶାମୁକାଟିଏ ମାତ୍ର ସଂଗ୍ରହ କରିଛି । ଏହି ପ୍ରବନ୍ଧଟି ପାଠକପାଠିକାଙ୍କୁ ଗୟାତୀର୍ଥ ପାଇଁ ଆକର୍ଷଣ ଓ ମମତା ବୃଦ୍ଧି କରିପାରିଲେ ଶ୍ରମ ସାର୍ଥକ ହେବ ।

*ଗାନ୍ଧୀ ମନ୍ଦିର ରୋଡ୍, ଢେଙ୍କାନାଳ-୭୫୯୦୦୧*

# ଲିଙ୍ଗରାଜଙ୍କ ଲିଙ୍ଗ

**ଭାଗୀରଥି ମହାସୁଆର (୪୬)**

(ବହୁବର୍ଷ ପୂର୍ବେ 'ଧରିତ୍ରୀ'ରେ ଲେଖିଥିଲି 'ଲିଙ୍ଗବିହୀନ ଲିଙ୍ଗରାଜ'। ଏହା ବିସ୍ମୟ ଓ ପ୍ରଶ୍ନ ସୃଷ୍ଟି କରିଥିଲା, ମାତ୍ର ଲିଙ୍ଗରାଜଙ୍କୁ ଲିଙ୍ଗ ମିଳିଲା ନାହିଁ। ସେବାୟତ, ଭକ୍ତ, ବେପାରୀ, ପ୍ରଶାସକ ଓ ରାଜ୍ୟନେତାଙ୍କ ବହୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଉପକାରରେ ଲିଙ୍ଗରାଜ ବ୍ୟବହୃତ। କେହି କିନ୍ତୁ ତାଙ୍କ ଲିଙ୍ଗହାନିରେ ବ୍ୟସ୍ତ ନୁହନ୍ତି।)

ଶ୍ରୀ ଲିଙ୍ଗରାଜ ହରିହର ଭାବେ ପୂଜିତ ହେବା ପୂର୍ବରୁ ଶକ୍ତିବେଷ୍ଟିତ ଲିଙ୍ଗ ଭାବେ ପୂଜିତ ହେଉଥିଲେ। ଏ ଲିଙ୍ଗ ବର୍ତ୍ତମାନ ନାହିଁ ଏବଂ ଜନଶ୍ରୁତି ରହିଛି ଯେ କଳାପାହାଡ଼ ଲିଙ୍ଗକୁ ଭାଙ୍ଗି ଦେଇଥିଲା। ମାତ୍ର ଏହି କାହାଣୀ ସପକ୍ଷରେ ସମର୍ଥିତ ପ୍ରାମାଣ ନଥିବାରୁ କେବଳ ନିପାତନସିଦ୍ଧ ଭାବେ ଗ୍ରହଣ କରି ନିଆଯାଇଛି। କାରଣ କଳାପାହାଡ ଆକ୍ରମଣ ସମୟରେ ମନ୍ଦିରର ଅନେକ କାରୁକାର୍ଯ୍ୟ ଓ ମୂର୍ତ୍ତି ଖଣ୍ଡିତ, କ୍ଷୟିତ ହୋଇଥିବାର ଜଣାଯାଏ।

ପ୍ରଭୁଙ୍କ ଲିଙ୍ଗର ପୂର୍ବ ଅବସ୍ଥା ଓ ପରବର୍ତ୍ତୀ କ୍ଷତି ସମ୍ବନ୍ଧରେ ଇତିହାସ ଓ ଜନଶ୍ରୁତି ନିରବ। ଶକ୍ତିଟି ଗ୍ରାନାଇଟ୍ ପଥରର ଏବଂ ପୋଲା। ଏଣୁ ଏହା ମଧ୍ୟ ଫାଟିଛି। କଳାପାହାଡ଼ ଆକ୍ରମଣ ଜନିତ ଲିଙ୍ଗ ଉତ୍ପାଟନ ବା ଅନ୍ୟ ଯେ କୌଣସି କାରଣରୁ ଏହା ଫାଟିଥିବା ସମ୍ଭବ। ପୋଲା ଶକ୍ତିଟି ଏକ ଘୋଡ଼ଣୀ ଏବଂ ତା' ଭିତରେ କ'ଣ ଅଛି, ତାହା କେବେ ବି ଜଣାପଡ଼ିବ ନାହିଁ। ଏଣୁ ତାକୁ ନେଇ ନିର୍ବିଘ୍ନରେ ଅନେକ ମନଗଢ଼ା ଗପ ପ୍ରଚାରିତ। ଶକ୍ତି ପରିଧିର ଦୃଶ୍ୟମାନ ଗର୍ତ୍ତରେ ଏକ ଗୋଲାକାର ଅସମତଳ ପ୍ରସ୍ତର ରହିଛି, ଯାହାକୁ ଲିଙ୍ଗର ଭଗ୍ନାବଶେଷ କୁହାଯାଇପାରେ। ମାତ୍ର ଏ ଭଗ୍ନାବଶେଷ ଅନେକ ପ୍ରଶ୍ନ ସୃଷ୍ଟି କରିଥାଏ। ପ୍ରଥମତଃ ଏହା ମନ୍ଦିର ନିର୍ମାଣରେ ସାଧାରଣତଃ ବ୍ୟବହୃତ କନ୍ଦା ପଥର କିମ୍ବା ବାଲି ପଥରର। ଗର୍ତ୍ତାଂଶକୁ ପରିଷ୍କାର କରି ଶୁଷ୍କ କରାଗଲାବେଳେ ଏହା ସ୍ପଷ୍ଟ ଚିହ୍ନି ହୁଏ। ଅଥଚ କେତେକ ଐତିହାସିକଙ୍କ ମତରେ ଲିଙ୍ଗଟି ଗ୍ରାନାଇଟ୍ ବା ସ୍ଫଟିକ ପଥରର ଥିଲା। ପୁରାଣ ବର୍ଣ୍ଣନାରେ ଲିଙ୍ଗଟି ତ୍ରିରଙ୍ଗ ବିଶିଷ୍ଟ ସ୍ଫଟିକ ପଥରର ଥିଲା। ପ୍ରଶ୍ନ ହେଉଛି ଯଦି ଲିଙ୍ଗ ସ୍ଫଟିକ ପଥରର ଥିଲା, ତେବେ ଏ କନ୍ଦା ପଥରଟି କ'ଣ? ଏଇ ବିଲକ୍ଷଣ ସନ୍ଦେହରୁ ଅନେକ ଅନୁମାନିକ ସୂତାଖିଅ ଯୋଡ଼ିହେବ; ଅଥଚ ସେ ଯୋଡ଼ାଯୋଡ଼ି କୌଣସି ପ୍ରମାଣିକ ନିଷ୍କର୍ଷ ଦେବ ନାହିଁ। ଲିଙ୍ଗ ଓ ଶକ୍ତିକୁ ନେଇ ଏଇ ସୁଯୋଗରେ ସେବାୟତମାନେ କେତେ ପ୍ରକାର ଗଳ୍ପ କହନ୍ତି, ଯେଉଁଗୁଡ଼ିକ ଆମ ବିଚାରରେ ପୂରାପୂରି ମନଗଢ଼ା।

ଲିଙ୍ଗରାଜଙ୍କୁ ସ୍ୱୟମ୍ଭୁ କୁହାଯାଏ। ଏହାଙ୍କ ଲିଙ୍ଗ ସ୍ୱତଃ ପାତାଳରୁ ଉତ୍‌ଥିତ ଏବଂ

ମାଟିତଳୁ ଆବିଷ୍କୃତ । ପୂର୍ବରୁ ଏହା ଉପରେ ଗାଈଟିଏ ଆପେ ଚିରରୁ କ୍ଷୀର ବୁହାଉଥିବା କଥା ମଧ୍ୟ ଉପପୁରାଣମାନଙ୍କରେ ଅଛି । ଠିକ୍ ଏଇ କାହାଣୀ ଭାରତର ବଡ଼ ବଡ଼ ତୀର୍ଥ କ୍ଷେତ୍ରରୁ ଆରମ୍ଭ କରି ମଫସଲ ଗାଁ ପର୍ଯ୍ୟନ୍ତ ଅନ୍ୟୁନ ୧୦୦ ଗୋଟି ଶିବଲିଙ୍ଗଙ୍କ କ୍ଷେତ୍ରରେ ପ୍ରଚଳିତ । ସେହି ସ୍ୱତଃ ଉଦ୍ଭବ କଥା ଏବଂ ଗାଈ ଆପେ କ୍ଷୀର ଢାଳିବା କଥା । ସମସ୍ତ ସ୍ଥାନରେ ଭକ୍ତ ଓ ସେବାୟତମାନେ ହକ୍ ନିଜେ ଦେଖିଥିବା ଭଳି ଏ କାହାଣୀକୁ ଜିଦ୍ କରି ସତ ବୋଲି କହନ୍ତି । ମାତ୍ର ଏ କାହାଣୀ ପ୍ରତ୍ୟେକ କ୍ଷେତ୍ରରେ ଭିତ୍ତିହୀନ ଏବଂ ଏକ ଧର୍ମ ବିଶ୍ୱାସ ଉତ୍ପନ୍ନକାରୀ ଉପଲକ୍ଷ୍ୟ ବ୍ୟତୀତ ଅନ୍ୟ କିଛି ନୁହେଁ । ପ୍ରତ୍ୟେକ ମନ୍ଦିର ଓ ଲିଙ୍ଗ କେହି ନା କେହି ଗଢ଼ାଇଛନ୍ତି ।

ଏଇଠି ପ୍ରଶ୍ନ ଉଠେ ଯେ ଲିଙ୍ଗରାଜଙ୍କ ଲିଙ୍ଗ ଗଲା କୁଆଡ଼େ ? ଏହା ପ୍ରକୃତରେ କିପରି ଥିଲା ଏବଂ ବିନା ଲିଙ୍ଗରେ ଲିଙ୍ଗରାଜ ପୂଜା କିପରି ଓ କାହିଁକି ଚାଲିଛି ? ଲିଙ୍ଗଟି କିପରି ଥିଲା ତାହାର ପ୍ରକୃତ ପ୍ରମାଣ ମିଳୁନାହିଁ ଏବଂ ଯାହା କୁହାଯାଉଛି, ତାକୁ ଆହ୍ୱାନ କଲା ଭଳି ପ୍ରଶ୍ନ ଆସିପାରୁଛି । 'ଏହା କୁଆଡ଼େ ଗଲା' ପ୍ରଶ୍ନଟିର ଉତ୍ତର ନାହିଁ । ଏହି ସୁଯୋଗରେ ଅନେକ ଗପ ତିଆରି କରି ଲୋକେ ନିଜ ମତକୁ 'ଶାବଳ ସତ' ବୋଲି ଦାବି କରୁଛନ୍ତି । ମନ୍ଦିର ବେଢ଼ାରେ ଥିବା ୨/୩ଟି ଲିଙ୍ଗ ଲିଙ୍ଗରାଜଙ୍କ ମୂଳ ଲିଙ୍ଗ ବୋଲି ଯାତ୍ରୀଙ୍କୁ କୁହାଯାଉଛି । କେହି କେହି କହନ୍ତି ଲିଙ୍ଗଟିକୁ ନେଇ ଏକାମ୍ରେଶ୍ୱର ମନ୍ଦିର ନିର୍ମିତ । ବିନ୍ଦୁସାଗର ଉଝଳା ବେଳେ ଲିଙ୍ଗଟିଏ ବାହାରିଲା, ତାକୁ ମଧ୍ୟ ଲିଙ୍ଗରାଜଙ୍କ ଉତ୍ପାଟିତ ଲିଙ୍ଗ ବୋଲି କହି ପ୍ରଚାର ଚାଲିଲା । ସେ ଲିଙ୍ଗଟି କୁଆଡ଼େ ଗଲା, ଆଉ ଜଣା ନାହିଁ । କଟକରୁ ଖବର ପାଇଲୁ ଯେ ଯୋବ୍ରା ଆଗକୁ ଥିବା ହରିଣ ପାର୍କ ନିକଟସ୍ଥ ଏକ ଆଶ୍ରମରେ ଏକ ଉଦ୍ଧାର ହୋଇଥିବା ଲିଙ୍ଗ ପୂଜା ପାଉଛନ୍ତି । ନିଜେ ଗଲୁ ଦେଖିବାକୁ । ଲିଙ୍ଗଟି କେଉଁ ପଥରରେ ନିର୍ମିତ, ତାହା ଦେଖେଇ ଦିଆଗଲା ନାହିଁ । ସୁନ୍ଦର ତମ୍ବା ଘୋଡ଼ଣୀ ଭିତରେ ଏହା ପୂଜା ପାଉଛି । ଏହା କିନ୍ତୁ ଲିଙ୍ଗରାଜଙ୍କ ଶକ୍ତି ମଝିରେ ଥିବା ଗୋଲ ଗାତକୁ ଖାପ ଖାଇଲାଭଳି ଲାଗେ । ପଚାରିବାରୁ ଉତ୍ତର ମିଳିଲା, ଏହା ଚୌଦ୍ୱାର ନିକଟସ୍ଥ ଏକ ଜଙ୍ଗଲିଆ ସ୍ଥାନରୁ ଉଈହୁଙ୍କା ଭିତରୁ ଆବିଷ୍କୃତ ହୋଇଥିଲା ଏବଂ ବହୁ ପୂଜା ଅର୍ଚ୍ଚନା ପରେ ଏଠାକୁ ଅଣାଯାଇଛି । ଏ ପ୍ରସଙ୍ଗରେ ସତମିଛ କେବଳ ଲିଙ୍ଗରାଜଙ୍କୁ ଜଣା ।

ବର୍ତ୍ତମାନ ଦେଖିବା ବିନା ଲିଙ୍ଗରେ ଲିଙ୍ଗରାଜଙ୍କୁ ପୂଜା କରି କି ସନ୍ତୋଷ ମିଳୁଛି ବା ଧର୍ମାର୍ଜନ ହେଉଛି ? ନଥିବା ଲିଙ୍ଗ ଉପରେ ଶ୍ରାବଣ ମାସରେ ସହସ୍ରାଧିକ କାଉଡ଼ିଆ କିଭଳି ଜଳାଭିଷେକ କରୁଛନ୍ତି ? ସେବାୟତ, ଭକ୍ତ, ପ୍ରଶାସନ ଓ ପ୍ରତ୍ନତତ୍ତ୍ୱ ବିଭାଗ ଲିଙ୍ଗରାଜଙ୍କୁ ଅସମ୍ପୂର୍ଣ୍ଣ ରଖି କି ଆନନ୍ଦ ପାଉଛନ୍ତି ? ସୁଲତାନ ମାମୁଦଙ୍କ ଦ୍ୱାରା ଧ୍ୱଂସପ୍ରାପ୍ତ ସୋମନାଥ ମନ୍ଦିର ସମ୍ପୂର୍ଣ୍ଣ ନିର୍ମାଣ ହୋଇପାରିଲା ଏଇ ଭାରତରେ । ଅଥଚ ଓଡ଼ିଶା ପ୍ରଦେଶ

ବୋଲି ହୁଏତ ଲିଙ୍ଗରାଜଙ୍କର ଗୋଟିଏ ନୂଆ ଲିଙ୍ଗ ନିର୍ମାଣ ହୋଇ ପାରିଲା ନାହିଁ । ଏ ବିଷୟରେ ଅନେକ କଥା ଦୃଷ୍ଟିକୁ ଆସିଛି ଯାହା କଟୁ ଏବଂ ବିବାଦୀୟ । ତଥାପି କିଛି ଏଠାରେ ଉଲ୍ଲେଖ କରିବା । ଭକ୍ତମାନଙ୍କର ଏ ଲିଙ୍ଗ ଥିଲେ ନଥିଲେ କିଛି ଯାଏ ଆସେ ନାହିଁ । ତାଙ୍କ ସାମ୍ନାରେ ଯାହାଙ୍କୁ ଥୋଇଦେବ, ସେ ତାଙ୍କୁ ମୁଣ୍ଡିଆ ମାରିବେ । ଏଇ କ୍ରମରେ ଓଡ଼ିଶାରେ ୫ଟି ନୂଆ ଦେବଦେବୀ, ଜନ୍ମ ନେଇଛନ୍ତି କିଛି ବର୍ଷରେ । ଲିଙ୍ଗ ଥିଲେ ବା ନଥିଲେ ସେବାୟତଙ୍କର ବା ପ୍ରଶାସନର ଆୟରେ ହ୍ରାସବୃଦ୍ଧି ଘଟିବାର ନାହିଁ । କେତେକ କହନ୍ତି ଲିଙ୍ଗ ନିର୍ମାଣ କରିଦେଲେ ଲିଙ୍ଗରାଜ ପୁଣି ହରିହରରୁ ଶିବ ପାଲଟିଯିବେ । ଏହା ଏକ ବକ୍‌ବାଜ୍ କଥା । କାରଣ ଶିବଲିଙ୍ଗ ଥାଇ (କଳାପାହାଡ଼ ଆକ୍ରମଣ ପୂର୍ବରୁ) ଲିଙ୍ଗରାଜ ହରିହର ଭାବେ ପ୍ରତିଷ୍ଠିତ ହୋଇଥିଲେ ଗଙ୍ଗ ଶାସନ ଅମଳରେ । ଏ ମତକୁ ଜଣେ ଦୁଇଜଣ ଗଣ୍ଡଗୋଳିଆ ସେବାୟତ ମାନନ୍ତି ନାହିଁ । ତାଙ୍କ ମତରେ ଏହି ଭଗ୍ନ ଲିଙ୍ଗ ହିଁ 'ସ୍ୱୟମ୍ଭୁ' ଏବଂ 'ସ୍ୱୟମ୍ଭୁ'ର ଅର୍ଥ ହରିହର । ଏହି ମତ ଅନ୍ୟ ଏକ ମୂର୍ଖତାର ଉଦାହରଣ । ଗୋଟିଏ ଗୋଷ୍ଠୀ ଲିଙ୍ଗର ପୁନଃ ସଂଯୋଗ ବା ଭଗ୍ନ ଶକ୍ତିର ମରାମତିରେ ଆଦୌ ଆଗ୍ରହୀ ନୁହଁନ୍ତି ବରଂ ଏହି ଭଗ୍ନ ଦେବତାଙ୍କ ଚାରିପଟେ ଏକ ସୁବିଧାଜନକ ବାଡ଼ ବୁଲାଇ ତା' ଭିତରେ କୌଶଳଗତ ଭାବେ ଗୋଷ୍ଠୀଗତ ମାଲିକାନା ଜାହିର କରିବାକୁ ଚେଷ୍ଟିତ । ପ୍ରଶାସନ କେବେ ବି ଲିଙ୍ଗ ପୁନଃସଂସ୍ଥାପନ କଥା ଚିନ୍ତା କରିନାହିଁ ଏବଂ ବିଭିନ୍ନ ବ୍ୟାପାରରେ ନିରପେକ୍ଷତା ରକ୍ଷା କରିପାରିନାହିଁ । କାରଣ ଏଠାରେ ଗୋଷ୍ଠୀତୋଷଣ ଏଇ ଆବଶ୍ୟକତା, ଯେହେତୁ ମନ୍ଦିରର ରୀତିନୀତି ଅବ୍ୟାହତ ରଖିବାକୁ ହେବ ସମସ୍ତଙ୍କୁ ମନାଇ ।

ପ୍ରତ୍ନତତ୍ତ୍ୱ ବିଭାଗର ନୀତି ଦିଲ୍ଲୀ ପାଇଁ ଓ ଭୁବନେଶ୍ୱର ପାଇଁ ଅଲଗା ଅଲଗା । ଦିଲ୍ଲୀରେ କବରମାନଙ୍କର ଯେତେ ଯତ୍ନ ନିଆଯାଏ, ଓଡ଼ିଶାରେ ମନ୍ଦିରମାନଙ୍କର ସେପରି ନିଆଯାଏ ନାହିଁ । ଉଦାହରଣ ସ୍ୱରୂପ, ଏବେ ଲିଙ୍ଗରାଜ ମନ୍ଦିରର କଳସ ଫାଟିଥିବାର ଦେଖାଗଲା । ପ୍ରତ୍ନତତ୍ତ୍ୱ ବିଭାଗ କହିଲା ଏହା ମହାଦୀପ ତାତିରେ ଫାଟିଛି । ୧୦୦୦ ବର୍ଷର ମହାଦୀପ ତାତି ହଠାତ୍ ୨୦୧୩ରେ ଏହାକୁ ଫଟାଇଦେଲା ? ପୂର୍ବରୁ କ'ଣ ମହାଦୀପର ନିଆଁ ଶୀତଳ ଥିଲା ? ସମାଧାନ ଦିଆଗଲା ଯେ ଦୀପ ଆଉ ଚୂଡ଼ାକୁ ଯିବ ନାହିଁ, ମନ୍ଦିର କାନ୍ଧରେ ରଖାଯିବ । ଏହାର ଅର୍ଥ, ମହାଦୀପ ଦେବା ନ ଦେବା ସମାନ । କାନ୍ଧରେ ନିଆଁ ଜଳିଲେ ଅଁଳାବେଢ଼ା ମଧ୍ୟ ପ୍ରଭାବିତ ହେବାର ସମ୍ଭାବନା ରହିଛି । ମୂଳକଥା ହେଲା, ସମ୍ପୃକ୍ତ ବିଭାଗ ଯଥାପୂର୍ବଂ ନୂଆ କଳସଟିଏ ସ୍ଥାପନ କରିବାକୁ ସମୟ ଓ ଅର୍ଥ ବିନିଯୋଗ କରିବାକୁ ଅନିଚ୍ଛୁକ । ଏପରି ବିଭାଗ ଲିଙ୍ଗ ସ୍ଥାପନ କରି ଲିଙ୍ଗରାଜଙ୍କୁ ପୂର୍ଣ୍ଣାଙ୍ଗ କରିବା ପାଇଁ ଚାହିଁବ ବା କାହିଁକି ?

ଲେଖକ ନିଜେ ଜଣେ ସେବାୟତ, ଲିଙ୍ଗରାଜ ମହାପ୍ରଭୁଙ୍କର । କିନ୍ତୁ ନିଜ ଇଷ୍ଟଙ୍କୁ ନେଇ କୌଣସି ମିଛ ଖେଳ ଖେଳିବାର ପକ୍ଷପାତୀ ନୁହେଁ । ଆମେ ପ୍ରକୃତ ଭକ୍ତି, ଅନୁରକ୍ତି ଓ ଆନୁଗତ୍ୟରେ ବିଶ୍ୱାସୀ । ବିଶ୍ୱପ୍ରସିଦ୍ଧ ଦ୍ୱିତୀୟ କାଶୀ ଲିଙ୍ଗରାଜଙ୍କର ଲିଙ୍ଗ ନଥିବା ଓ ତାହା ପୂଜାହେବା ନିଶ୍ଚୟ ଆମ ପୂର୍ବପୁରୁଷଙ୍କ ଲଜ୍ଜାକର ସହନଶୀଳତା ବୋଲି ଭାବୁ । ମନ୍ଦିର ନଗରୀକୁ ପୁନଃବିନ୍ୟାସ କରିବାକୁ ଯାଉଥିବା ପ୍ରଶାସନ ଏ ନଗରୀର ମୂଳପିଣ୍ଡ 'ଲିଙ୍ଗ'କୁ ପାଶୋରି ଦେଇଥିବା କଥାଟି ମଧ୍ୟ ଦୁର୍ଭାଗ୍ୟଜନକ । ଏ ଦିଗରେ ଜନତା ଜନାର୍ଦ୍ଦନ ଦୃଢ଼ ମତ ସୃଷ୍ଟି କରି ପ୍ରଭୁ ଲିଙ୍ଗରାଜଙ୍କ ଲିଙ୍ଗ ପୁନଃ ସଂସ୍ଥାପନ ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରନ୍ତୁ ବୋଲି ଆମରି ଆକାଂକ୍ଷା ଏବଂ ଅନୁରୋଧ ।

*ଜି-୧୫, ମହାଦେବ କଟେଜ,*
*ମହତାବ ରୋଡ଼, ଭୁବନେଶ୍ୱର-୭୫୧୦୦୨*
*ମୋ- ୭୭୩୫୫୦୭୯୫୧*

# କେତୋଟି ଅଭୁଲା ଅନୁଭୂତି

ପଦ୍ମଜା ଦେବତା (୬୭୨)

ମଣିଷ ଭଗବାନଙ୍କର ଏକ ଆଶ୍ଚର୍ଯ୍ୟ ସୃଷ୍ଟି । ଛପନକୋଟି ଜୀବଜନ୍ତୁ ମଧ୍ୟରେ ଏକ ସ୍ୱତନ୍ତ୍ର ପ୍ରାଣୀ । ମଣିଷ ହିଁ ଏକମାତ୍ର ଜୀବ ଯିଏ ସମସ୍ତପ୍ରକାର ସ୍ଥିତିକୁ ଅନୁଭବ କରିପାରେ, ବିକାଶ କରିପାରେ ଏବଂ ବ୍ୟବସ୍ଥାକୁ ନିୟନ୍ତ୍ରଣ ମଧ୍ୟ କରିପାରେ । ମାତ୍ର ତା ପାଖରେ ପିମ୍ପୁଡ଼ି ଭଳି ସମଷ୍ଟିଗତ ନିଃସ୍ୱାର୍ଥପର ଭାବନା ରହିଥିବାବେଳେ ସିଂହ ବ୍ୟାଘ୍ରଆଦି ହିଂସ୍ରଜନ୍ତୁମାନଙ୍କର ସ୍ୱାର୍ଥପରତା, ହିଂସ୍ର ପ୍ରବୃତ୍ତି ଓ ସୈତାନର କଷଣ ସମଭାବରେ ରହିଛି । ସେ ଚାହିଁଲେ ସମଷ୍ଟିଗତ ଭାବନାରେ ସମାଜକୁ ସ୍ୱର୍ଗୀୟ ଆନନ୍ଦରେ ପୂର୍ଣ୍ଣ କରିପାରିବ ଏବଂ ଚାହିଁଲେ ସମାଜକୁ ନରକରେ ପରିଣତ କରିପାରିବ । ଏଣୁ ସମାଜକୁ ନଷ୍ଟଭ୍ରଷ୍ଟ କରିବାରେ ମଣିଷର ଯୋଗଦାନ ଯେତିକି, ସମାଜକୁ ସୁଧାରିବାରେ ମଧ୍ୟ ମଣିଷର ଅବଦାନ ସେତିକି । ପତିତ ଲୋକମାନଙ୍କର ଉଦ୍ଧାର ଦ୍ୱାରା ସମାଜ ସରସ ସୁନ୍ଦର ହୋଇପାରିବ । ମଣିଷଟିଏ ପ୍ରତିକୂଳ ପରିବେଶ ଭିତରେ ଜନ୍ମହୋଇ ନିଜକୁ ପ୍ରତିଷ୍ଠିତ କରିବାରେ କେତେ ଯେ କଷ୍ଟ ସାଧନ କରେ ତାହା କେବଳ ଅନୁଭବୀ ହିଁ ଜାଣେ । ପିଲାଟିବେଲୁ ଭାବନାସ୍ତର ବଢ଼ିବା ସହ ଏଭଳି ଚିନ୍ତା ମୋ ମନରେ ବାରମ୍ବାର ଆସେ । ଆଜି ବି ପାଞ୍ଚ ଛଅ ପ୍ରକାର ସୁସ୍ୱାଦୁ ଖାଦ୍ୟ ଗୋଟିଏ ଥାଳିରେ ପରିବେଷଣ ବେଳେ ମୋର ପ୍ରଥମେ ମନେ ପଡ଼େ ଗରିବ ଲୋକଟିର କନ୍ୟା ଯିଏ ଭାତ ଆଳୁ ସିଝା କିମ୍ବା ଶାଗରେ କାମ ଚଳାଉଛି । ଭୋଜି ଭାତ ସ୍ୱୟଂ ପରଷିବା ପଦ୍ଧତିରେ ମଧ୍ୟ କେତେ ସୁସ୍ୱାଦୁ ଖାଦ୍ୟ ଫୋପଡ଼ା ହେଉଛି । ପିଲାବେଳେ ଦଶହରା ପୂଜା ସମୟରେ ପିତାମାତଙ୍କ ସହ ନୂଆଲୁଗା କିଣିବା ପାଇଁ ପ୍ରବଳ ଆଗ୍ରହରେ ବଜାରକୁ ଯାଏ । ମାର୍କେଟ ଯିବା ପାଇଁ ରିକ୍ସାରେ ବସିଲାବେଳେ ରିକ୍ସାବାଲାରେ ଛିଣ୍ଡା ଫଟା ସାର୍ଟ, ରାସ୍ତାର ଦୁଇଧାରରେ ଛିଣ୍ଡାଲୁଗା ପିନ୍ଧା ପିଲାଙ୍କୁ ଦେଖିଲେ ମୋର ଆଉ ଲୁଗାକିଣିବାର ସ୍ପୃହା ରହେନାହିଁ । ସ୍କୁଲରେ ପଢ଼ିଲାବେଳେ ଶ୍ରେଣୀର ମଧ୍ୟବିତ୍ତ ଓ ଗରିବ ଝିଅମାନଙ୍କ ପ୍ରତି ସହାନୁଭୂତି ଥାଏ । ସେମାନେ ମଧ୍ୟ ମୋତେ ଭାରି ଭଲପାଆନ୍ତି । କିଏ କ'ଣ ଭଲ ଜିନିଷ ଟିକେ ମୋ ପାଇଁ ଘରୁ ବଡ଼ ଶ୍ରଦ୍ଧାରେ ଆଣିଥିବେ ଓ ଅନ୍ୟକୁ ଲୁଚାଇ ମୋତେ ଦେବେ ଖାଇବା ପାଇଁ । ସାଥୀମାନଙ୍କର ବଡ଼ ବଡ଼ କଥା, ଲୁଗାସଫା, ଫେସନଫାସନ କଥାରେ ମୋର ରୁଚି ନଥାଏ ।

ଟିକିଏ ବଡ଼ହେବା ପରେ ଗ୍ରାମାଞ୍ଚଳରେ ଗରିବ ଲୋକମାନେ ଚିକିତ୍ସାରୁ ବଞ୍ଚିତ ଥିବା ମୋର ଦୃଷ୍ଟି ଆକର୍ଷଣ କଲା । ଡାକ୍ତର ହୋଇ ସେମାନଙ୍କ ସେବା କରିବାର ଇଚ୍ଛା

ମୋ ମନରେ ଜାଗ୍ରତ ହୋଇଥିଲା । ଯୋଗକୁ ବି.ଏସ୍‌ସି ଫାଇନାଲ୍ ଇୟର ବର୍ଷ ଜଣେ ଡାକ୍ତରଙ୍କ ସହ ମୋର ବିବାହ ହୁଏ । ମୋର ପୂଜନୀୟ ସ୍ୱର୍ଗତ ଶ୍ୱଶୁର ସେତେବେଳେ ସେ ଅଞ୍ଚଳର ଜଣେ ଗଣ୍ୟ ମାଣ୍ୟ ସମାଜସେବୀ ଓ ରାଜନୈତିକ ନେତା । ତେଣୁ ଗ୍ରାମରେ ଘର ହେଲେ ମଧ୍ୟ ଗୃହକୁ ସବୁବେଳେ ଲୋକ ଯିବା ଆସିବା ଗହଳି ମୋତେ ଭାରି ଭଲଲାଗେ । ମୋର ସ୍ୱାମୀ ଭାରି ପରୋପକାରୀ । ତେଣୁ ଡାକ୍ତର ହିସାବରେ ଯେଉଁଠି ଯେମିତି ଲୋକଙ୍କୁ ସାହାଯ୍ୟ କରିହେବ- ମୁଁ ତାଙ୍କୁ ଉତ୍ସାହିତ କରେ । ୧୯୮୭ ମସିହାରେ ମୋ ସ୍ୱାମୀଙ୍କର ହାଇଦ୍ରାବାଦରୁ ଆସାମ ବଦଳି ହେଲା । ଏବେ ଆମର ମୁଖ୍ୟ ସମସ୍ୟା ହେଲା ପିଲାମାନଙ୍କର ବାରମ୍ବାର ସ୍କୁଲ ପରିବର୍ତ୍ତନ । ତେଣୁ ଭୁବନେଶ୍ୱରରେ ସ୍ଥିରଭାବେ ରହିବାର ଚିନ୍ତା ବ୍ୟକ୍ତ କଲି । ସ୍ୱାମୀ କିନ୍ତୁ ଅରାଜି ହେଲେ କହିଲେ ତୁମେ କ'ଣ ସେଠାରେ ଏକା ରହିପାରିବ ? ଦିନ ଦ୍ୱିପ୍ରହରରେ ରାସ୍ତାରେ ସ୍ତ୍ରୀଲୋକମାନଙ୍କୁ ଟଣାଟଣି ହେଉଥାଏ । ସ୍ୱର୍ଗତ ଜାନକୀ ବଲ୍ଲଭ ପଟ୍ଟନାୟକ ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥାଆନ୍ତି । ତେଣୁ ମୋର ମନରେ ଗୋଟିଏ ପ୍ରତିକ୍ରିୟା ଆସିଲା- ରାଜନୈତିକ ନେତାମାନେ ଭ୍ରଷ୍ଟାଚାରୀ ହେବାରୁ ସମାଜରେ ଅପରାଧର ମାତ୍ରା ବଢୁଛି । କଂଗ୍ରେସ ପାର୍ଟିର ନୀତି ଆଦର୍ଶ ଆଉ ପୂର୍ବପରି ନାହିଁ । ମୋର ବାପା ଶ୍ୱଶୁର ସମସ୍ତେ କଂଗ୍ରେସ ଦଳର ନେତା ଥିଲେ । କିନ୍ତୁ ସେମାନେ ଏପରି ନଥିଲେ । ଆଜିକାଲି ରାଜନୀତିକୁ ଯେଉଁମାନେ ଆସିଲେ ସେମାନେ ଭ୍ରଷ୍ଟାଚାରୀ, ଟାଉଟର, ଦୋମୁହାଁ । ତେଣୁ ଭଲ ଲୋକମାନେ ରାଜନୀତିରୁ ଦୂରେଇଯିବା ଦେଖାଯାଉଛି । ସେତେବେଳେ ମୁଁ ସ୍ଥିର କଲି ଦିନେ ନା ଦିନେ ମୁଁ ରାଜନୀତିରେ ପ୍ରବେଶ କରିବି । ପ୍ରଶ୍ନ ଉଠିଲା, କେଉଁ ଦଳରେ ଯୋଗଦେବି । ସେତେବେଳେ ବିଜେପି ନୂଆ ନୂଆ ଓଡ଼ିଶାରେ ପାଦ ଥାପୁଥାଏ । ଜୟପ୍ରକାଶ ନାରାୟଣଙ୍କ କଥା ଟିକେ ଟିକେ ମୁଣ୍ଡରେ ପଶୁଥାଏ । ମୁଁ ଏକପ୍ରକାର ଚିନ୍ତାକଲି ଯଦି କେବେ ରାଜନୀତିରେ ପ୍ରବେଶ କରେ ଭାରତୀୟ ଜନତା ପାର୍ଟିରେ ଯୋଗ ଦେବି । ୧୯୯୮ ମସିହାରେ ସ୍ୱାମୀ ସୈନ୍ୟ ବିଭାଗରୁ ଅବସର ନେଲା ପରେ ଆମେମାନେ ଭୁବନେଶ୍ୱର ନିଜ ଗୃହରେ ରହିଲୁ । ମୁଁ ଗୋଟିଏ ଏନ୍‌ଜିଓ ଗଢି କାର୍ଯ୍ୟ କରିବାକୁ ଆରମ୍ଭ କଲି । ହାତରୁ ପଇସା ଖର୍ଚ୍ଚକରି ପାଖ ବସ୍ତୀମାନଙ୍କରେ- ଆକ୍ୟୁପ୍ରେସର ଓ ଆକ୍ୟୁପଞ୍ଚରର ଚିକିତ୍ସା ସେବା ଦେବା ଆରମ୍ଭ କଲି । ଏଥିରେ ମୋର ସ୍ୱାମୀ ମଧ୍ୟ ମୋତେ ବହୁତ ସହଯୋଗ କରୁଥାନ୍ତି । କାର୍ଯ୍ୟକ୍ରମ ଭିତରେ ବସ୍ତିର ବିଶୃଙ୍ଖଳିତ ପୁଅପିଲାମାନେ ତାସ ଖେଳ, ଜୁଆଖେଳ ମଦ, ଗଞ୍ଜେଇ, ଡ୍ରଗସ୍ ଆଦି ବିଭିନ୍ନ ନିଶାସେବନରେ ଲିପ୍ତ ଥିବାର ଦେଖି ସେମାନଙ୍କୁ ଯୋଗାଭ୍ୟାସ କରାଇ ଭଲ ମଣିଷ ହେବା ପାଇଁ ଉତ୍ସାହିତ କଲି । କିଛିଦିନ ଭିତରେ ତା' ଭିତରେ ଗୋଷ୍ଠୀକନ୍ଦଳ ପଶିଲା ।

ଇତିମଧ୍ୟରେ ମୁଁ ରାଜନୀତିରେ ମଧ୍ୟ ପ୍ରବେଶ କରିଥାଏ । ପାର୍ଟିର ବିଭିନ୍ନ ମିଟିଂରେ

ଯୋଗଦେବା ପରେ ଧୀରେ ଧୀରେ କିଛି ଦାୟିତ୍ୱ ମିଳିଲା । ଅନିଚ୍ଛା ସତ୍ତ୍ୱେ ଗ୍ରହଣ କଲି । ପୁରାପୁରି ସମୟ ରାଜନୀତିରେ ଦେବାରେ ମୋର ରୁଚି ନଥାଏ । ପ୍ରଥମେ ପରିବାର ପଛେ ରାଜନୀତି । ନିଜର ସ୍ୱାର୍ଥକୁ ନେଇ ରାଜନୀତି କରିବା କିମ୍ବା ରାଜନୈତିକ ପଦ ପଦବୀ ହାସଲ କରିବାରେ ମୋର ବିଶ୍ୱାସ ନାହିଁ । ମୋର ଲକ୍ଷ୍ୟ ସାଧାରଣଲୋକଙ୍କୁ କେମିତି ସାହାଯ୍ୟ କରିହେବ ଯାହା ପ୍ରକୃତରେ ରାଜନୀତିର ମୂଳ ଉଦ୍ଦେଶ୍ୟ । ଏହା ହେଉଛି ନୀତି ଭିତରେ ରାଜା ଅର୍ଥାତ୍ ଜଣେ ରାଜନୀତିଜ୍ଞ ସମସ୍ତ ସଦ୍‌ଗୁଣର ଅଧିକାରୀ ହେବା ଦରକାର । ଲାଭକ୍ଷତିର ହିସାବ ନଥାଏ ତା' ଭିତରେ ।

ଭାରତୀୟ ଜନତା ପାର୍ଟିର ନିର୍ମାଣ ପାଇଁ ବଳିଦାନ ଦେଇଥିବା ଦୀନଦୟାଲ ଉପାଧ୍ୟାୟ ଓ ଶ୍ୟାମପ୍ରସାଦ ମୁଖାର୍ଜୀଙ୍କର ଜୀବନୀ ଏବଂ ଦଳକୁ ଆଗକୁ ନେଇଥିବା ବରିଷ୍ଠନେତା ଶ୍ରୀଯୁକ୍ତ ଅଟଳବିହାରୀ ବାଜପେୟୀଙ୍କର ବ୍ୟକ୍ତିତ୍ୱ ମୋତେ ଅଧିକ ପ୍ରଭାବିତ କରିଥିଲା । ମଣ୍ଡଳ ସଭାନେତ୍ରୀ ଠାରୁ ଜିଲ୍ଲା ଉପସଭାନେତ୍ରୀ ତା'ପରେ କଟକ ଜିଲ୍ଲାର ଉପସଭାନେତ୍ରୀ ହୋଇ ସାଧାରଣ ଲୋକମାନଙ୍କ ପାଇଁ କିଛି କାମ କରିବା ପାଇଁ ମୋତେ ସୁଯୋଗ ମିଳିଲା । ଲୋକମାନଙ୍କର ବାର୍ଦ୍ଧକ୍ୟ ଭତ୍ତା, ବିଧବା ଭତ୍ତା, ଲୋକମାନଙ୍କର ଜମିର ପଟା ତହସିଲଦାର ପାଖେ ବସି କରାଇଦେବାରେ ବହୁତ କଷ୍ଟ ହେଲେ ମଧ୍ୟ ଆତ୍ମ ସନ୍ତୋଷ ମିଳୁଥାଏ । ମଝିରେ ମଝିରେ ବନ୍ୟା ବାତ୍ୟାରେ ଲୋକମାନଙ୍କୁ ସାହାଯ୍ୟ ସହଯୋଗ କରିବାର ସୁଯୋଗ ମଧ୍ୟ ମିଳେ ।

ସବୁଠାରୁ ସଫଳ ଜନତା ସେବା ମୋ ଜୀବନରେ ହେଲା ୧୯ ସେପ୍ଟେମ୍ବର ୨୦୦୮ ମସିହାରେ । କଟକ ଜିଲ୍ଲା ବାଙ୍କୀ ନିର୍ବାଚମଣ୍ଡଳୀରେ ହଠାତ୍ ବନ୍ୟା ଆସିଲା । ମହାନଦୀ ବନ୍ଧ ଠାଏ ଠାଏ ଅତଡ଼ା ଖସି ପାଣି ପଶିଲା । ରଣନଦୀ (ମହାନଦୀର ଶାଖା) ରେ ପାଣି ଆସି ପୂର୍ବବାଙ୍କୀ ଓ ପଶ୍ଚିମବାଙ୍କୀକୁ ସମ୍ପୂର୍ଣ୍ଣ ଜଳମଗ୍ନ କଲା । ବାଙ୍କୀ ଅଞ୍ଚଳ କଟକ ଓ ଖୋର୍ଦ୍ଧା ଉଭୟପଟୁ ବିଚ୍ଛିନ୍ନ ହୋଇରହିଲା । ତୁଳସୀପୁର-ଡଁସର-ବାଙ୍କୀ ରାସ୍ତା ବ୍ରହ୍ମପୁର-ବାଙ୍କୀ ରାସ୍ତା ସବୁ ଜଳମଗ୍ନ । ଏ ଖବର ପାଇ ମୁଁ ମୋର ବଡ଼ପୁଅ ରାଧାକାନ୍ତକୁ ଧରି ବାହାରି ପଡ଼ିଲି ବାଙ୍କୀ ଅଭିମୁଖେ । ଆମେ ଯାଇ କଳାପଥର କଲେଜ ପାଖେ ପହଞ୍ଚିଲୁ । ଆଗକୁ ଆଉ ଗାଡ଼ି ଯାଇପାରିବ ନାହିଁ । ଅକାତକାତ ପାଣି । ସ୍ତ୍ରୀଲୋକମାନେ ୨୦/୨୫ ଦିନର କଅଁଳା ଶିଶୁକୁ ଧରି ବଡ଼ କଷ୍ଟରେ ବନ୍ଧ ଉପରେ ଚାଲି ଚାଲି ଆସୁଥାଆନ୍ତି । ଦିନ ୨/୩ଟା ବେଳକୁ କଳାପଥର କଲେଜ ଓ ସ୍କୁଲ ଘରେ ୫/୬ ହଜାର ଲୋକ । ପୁରୁଷ ଲୋକମାନେ ଘର ଜଗି ଚାଳ ଉପରେ ବସିଥାନ୍ତି । ମୁଁ ବୁଝିପାରୁନଥାଏ କ'ଣ କରାଯିବ ? ତା'ପରେ ଚିନ୍ତା କଲି ଆଜି ତ ଏନ୍.ଏ.ସିର ନିର୍ବାଚନ । କେହି ଜଣେ ନିର୍ବାଚନ ଛାଡ଼ି ଆସିବେ ନାହିଁ । ଲୋକଙ୍କୁ କିଏ ସାହାଯ୍ୟ କରିବ । ମୋତେ କିଛି ଗୋଟାଏ

ତ କରିବାକୁ ପଡ଼ିବ । ସଙ୍ଗେ ସଙ୍ଗେ ରାଜସ୍ୱମନ୍ତ୍ରୀଙ୍କୁ ଫୋନ୍ କଲି । ଲୋକମାନଙ୍କ ଘରଛାଡ଼ି ଜୀବନ ବିକଳରେ ଖାଲି ହାତରେ ଆସିଛନ୍ତି । ସେମାନଙ୍କ ପାଇଁ ଯେମିତି ହେଲେ ରନ୍ଧାଖାଦ୍ୟ ଦରକାର । ରାଜସ୍ୱ ମନ୍ତ୍ରୀ ସେ କଥାର ଗୁରୁତ୍ୱ ବୁଝିପାରିଲେ ଏବଂ ସଙ୍ଗେ ସଙ୍ଗେ ରନ୍ଧନ ଖାଦ୍ୟ ପାଇଁ ସିଧା ଉପଜିଲ୍ଲାପାଳ ଓ ସରପଞ୍ଚଙ୍କୁ ନିର୍ଦ୍ଦେଶ ଦେଲେ । ମୁଁ ଆଶଙ୍କା କଲି ବହୁ ସଂଖ୍ୟାରେ ସ୍ତ୍ରୀଲୋକ ଅଛନ୍ତି । ଏଣୁ ଅନ୍ଧକାର ହୋଇଗଲେ କିଛି ଅଘଟଣ ହୋଇପାରେ । ଆଗ ଲାଇଟ୍‌ର ବ୍ୟବସ୍ଥା ଦରକାର । ପ୍ରଶାସନର କେହି ଜଣେ ହେଲେ ସେଠାକୁ ଆସିଲେ ନାହିଁ- ବିରୋଧୀଦଳର ରାଜନୈତିକ ଇଙ୍ଗିତରେ । ମୁଁ ମୋର ସହଯୋଗୀ ଭାଇମାନଙ୍କୁ ଧରି ଲାଇନ ମେନ୍ ଆଣି ସବୁଆଡ଼େ ଲାଇଟ୍‌ର ବ୍ୟବସ୍ଥା ସନ୍ଧ୍ୟାପୂର୍ବରୁ କରି ସାରିବା ପରେ ଶାନ୍ତିର ନିଶ୍ୱାସ ମାରିଲି ।

ତା'ପରେ ଖାଦ୍ୟ ବ୍ୟବସ୍ଥାର ପର୍ବ ଆରମ୍ଭ ହେଲା । ଦଳମତ ନିର୍ବିଶେଷରେ ସ୍ଥାନୀୟ ସରପଞ୍ଚ, ସମିତି ସଭ୍ୟ, ଜିଲ୍ଲା ପରିଷଦ ଆମ ସହ ସହଯୋଗ କରିବାରୁ ଖାଦ୍ୟ ପ୍ରସ୍ତୁତ ହେଲା । ସନ୍ଧ୍ୟାବେଳେ ସ୍ଥାନୀୟ ବଜାରରୁ ବିସ୍କୁଟ ଆଣି ଭୋକରେ ରହିଥିବା ଲୋକମାନଙ୍କୁ ଦିଆଗଲା । ବିସ୍କୁଟ ଖାଇ ପାଣି ଟିକେ ପିଇ ସେମାନେ ସାଷ୍ଟାଙ୍ଗ ହୋଇ ବସିଲେ । ରାତି ୧୧ଟା ବେଳକୁ ଭାତ ଓ ଡାଲମା ରନ୍ଧା ସରିବା ପରେ ସମସ୍ତେ ପେଟ ପୂରାଇ ଖାଇଲେ । ରାତି ୨ଟା ଯାଏ ଅକ୍ଳାନ୍ତ ପରିଶ୍ରମ ସତ୍ତ୍ୱେ ଭାରି ଆନନ୍ଦ ଲାଗୁଥାଏ । ଆମେମାନେ ମଧ୍ୟ ସକାଳୁ ରାତି ୨ଟା ପର୍ଯ୍ୟନ୍ତ କିଛି ଖାଇନଥାଉ । ଏହି ଦୁଃସ୍ଥ ଲୋକମାନଙ୍କୁ ସାହାଯ୍ୟ କରିବାରେ ଆମ ପେଟ ପୂରିଯାଉଥାଏ । ପ୍ରଶାସନର ବିନା ସହଯୋଗରେ ଏତେ କଥା ହୋଇପାରିଲା । ତା'ଠାରୁ ବଡ଼କଥା କ'ଣ ହୋଇପାରେ । ସେଦିନ ମୋର ଅନୁଭବ ହେଲା ଆନ୍ତରିକ ଇଚ୍ଛାଶକ୍ତି ବଳରେ ଲୋକମାନଙ୍କୁ ସାହାଯ୍ୟ ଯୋଗାଇ ଦିଆଯାଇପାରିବ । କୁଆଡୁ ଚାଉଳ, ଡାଲି ପରିବା ଆସି ପହଞ୍ଚୁଥାଏ । ଉତ୍କଳ ବିପନ୍ନ ସହାୟତା ସମିତି ମଧ୍ୟ ଯଥେଷ୍ଟ ସାହାଯ୍ୟ କରିଛି । ଦୀର୍ଘ ୪ଦିନ କାଳ ସକାଳେ ବିସ୍କୁଟ ଦ୍ୱିପ୍ରହରରେ ଭାତ ଓ ସନ୍ଧ୍ୟାରେ ଚୁଡ଼ାଗୁଡ଼ ଦିଆଯାଉଥିଲା । ସେମାନେ ସେଠାରୁ ବିଦାୟ ହେଲାବେଳେ ସମସ୍ତଙ୍କୁ ବନ୍ୟା ପରବର୍ତ୍ତୀ ବେମାରୀ, ଜ୍ୱର ଓ ଝାଡ଼ା ଔଷଧ ଓ ବନ୍ୟା ଦ୍ୱାରା ଦୂଷିତ ଓ ପାଣିକୁ ପରିଷ୍କାର କରିବା ପାଇଁ ହାଲୋଜେନ ବଟିକା ଦେଇ ଘରକୁ ବିଦା କରିଥିଲୁ । ଦୂଷିତ ପାଣି ନ ପିଇବା ପାଇଁ ଆମର ସ୍ୱେଚ୍ଛାସେବୀ ଭାଇମାନେ ଲୋକମାନଙ୍କୁ ବାରମ୍ବାର ବୁଝାଉଥିଲେ ଓ ବଟିକା ଦ୍ୱାରା ପାଣି ପରିଷ୍କାର କରି ପିଇବା ପାଇଁ କହିଥିଲେ । ଆମର ପରିଶ୍ରମ ସଫଳ ହୋଇଥିଲା । ପରେ ମୁଁ ପଞ୍ଚାୟତରେ ମଧ୍ୟ ଖବର ନେଇଥିଲି ଯେ କେହି ଲୋକ ବନ୍ୟାର ଦୂଷିତପାଣି ପିଇ ବେମାର ହୋଇନାହାନ୍ତି । ଶେଷ ପର୍ଯ୍ୟନ୍ତ ପ୍ରଶାସନର ସାହାଯ୍ୟ ନେତାମାନଙ୍କ ଇଙ୍ଗିତରେ ମୋତେ ବିରୋଧ କରି କ୍ୟାମ୍ପରେ ପହଞ୍ଚିନଥିଲା । କିନ୍ତୁ

ବୋଧହୁଏ ଭଗବାନ ମୋର ସତ ଇଚ୍ଛାକୁ ପୂର୍ଣ୍ଣ କରିବାରେ ସାହାଯ୍ୟ କରୁଥିଲେ ।

ବନ୍ୟା ପ୍ରପୀଡ଼ିତ ଲୋକମାନଙ୍କ ପାଇଁ ଗୃହକୁ ଫେରିବା ପରବର୍ତ୍ତୀ କାର୍ଯ୍ୟକ୍ରମ ଥିଲା ଭଙ୍ଗାଘର ପାଇଁ ସରକାରୀ ସହାୟତା ଯୋଗାଇବା । ଏହି କାମକୁ ମଧ୍ୟ ମୁଁ ନିଜେ ତଦାରଖ କରିଥିଲି । ତହସିଲଦାରଙ୍କୁ ବାରମ୍ବାର ଆକଟ କରି ପ୍ରତିଟି ଲୋକଙ୍କୁ ଘରଭଙ୍ଗା ରାଶି ମିଳିବାରେ ଯେମିତି ଅନିୟମିତତା ନହୁଏ ସେଥିପାଇଁ ସଚେତନ କରିବା ଦ୍ୱାରା ତହସିଲଦାର ଦଳମତ ନିର୍ବିଶେଷରେ ସମସ୍ତଙ୍କୁ ଘରଭଙ୍ଗା ରାଶି ଠିକ୍ ଭାବେ ପ୍ରଦାନ କରିଥିଲେ । ଏମିତିକି ପୂର୍ବ ବାଙ୍କୀରେ କିଛି ଘରଭାଙ୍ଗି ନଥିବା ଲୋକମାନଙ୍କୁ ରାଶି ପ୍ରଦାନ ଏବଂ ପ୍ରକୃତ କ୍ଷତିଗ୍ରସ୍ତଙ୍କୁ ଆଦୌ ପ୍ରାପ୍ୟ ନ ମିଳିବା ପରିସ୍ଥିତିକୁ ମଧ୍ୟ ମୁଁ ତହସିଲଦାରଙ୍କୁ କହି ସୁଧାରି ପାରିଥିଲି । ବନ୍ୟା ପ୍ରପୀଡ଼ିତ ଲୋକଙ୍କୁ ଏପରି ସାହାଯ୍ୟ କରିବା ଦ୍ୱାରା "ରାଜନୀତି ମାଧ୍ୟମରେ ସମାଜସେବା" ମୋ ପାଇଁ ଏକ ବଡ଼ ସଫଳତା ଥିଲା । ଲୋକମାନଙ୍କୁ ସେବା କରିବା ପାଇଁ ରାଜନୀତିରେ ପ୍ରବେଶର ଉଦ୍ଦେଶ୍ୟ କିଛି ପରିମାଣରେ ହାସଲ ହୋଇଥିଲା । ବିଶେଷ ଭାବେ ସେତେବେଳର ରାଜସ୍ୱ ମନ୍ତ୍ରୀଙ୍କୁ ଏବଂ ମୋର ସହକର୍ମୀମାନଙ୍କୁ ବହୁତ ବହୁତ ଧନ୍ୟବାଦ ।

୨୦୦୫ ମସିହାର କଥା । ପୂର୍ବବାଙ୍କୀର ଗୟଳବାଙ୍କ ଓ ପାଥପୁର ପଞ୍ଚାୟତର ମଦୁଆ ମାତାଲଙ୍କ ସଂଖ୍ୟା ଏଭଳି ବୃଦ୍ଧି ପାଇଥିଲା ଯେ ଦିନ ଦ୍ୱିପ୍ରହରରେ ମହିଳାମାନେ ରାସ୍ତାରେ ଚାଲିବା ଅସମ୍ଭବ ହୋଇପଡ଼ିଥାଏ । ସେଠାରେ ଦେଶୀମଦ ତିଆରି ହୋଇ ବିକ୍ରି ହେଉଥାଏ । ମହିଳାମାନେ ଅତି ଦୟନୀୟ ଅବସ୍ଥାରେ ଥାଆନ୍ତି । ଦେଶୀମଦ ପାଉଚରେ ଉପଲବ୍ଧ ହେଉଥିବାରୁ ୧୨/୧୩ ବର୍ଷର ପିଲାମାନେ ମଧ୍ୟ ପିଇବା ଆରମ୍ଭ କରିଥାଆନ୍ତି । ଦିନେ ସେପଟେ ଯିବା ରାସ୍ତାରେ ମହିଳାମାନେ ପାଟିତୁଣ୍ଡ କରିବା ଦେଖି ମୁଁ ସେ ଅଞ୍ଚଳକୁ କୌତୁହଳବଶତଃ ଗଲି । ମହିଳାମାନେ ମୋତେ ଦେଖି କାକୁତି ମିନତି ହୋଇ ଗୋଡ଼ ତଳେ ପଡ଼ି କହିଲେ- ମ୍ୟାଡମ ଆମ ପରିବାରକୁ ବଞ୍ଚାନ୍ତୁ, ଆମେ ବୁଡ଼ିଗଲୁ । ଏପରି କହି କ୍ରନ୍ଦନ କରିବା ଆରମ୍ଭ କଲେ । ମୁଁ ଏତେ ଭାବବିହ୍ୱଳ ହୋଇପଡ଼ିଲି ମୋ ସ୍ୱାମୀଙ୍କୁ ଅନୁରୋଧ କଲି ତୁମେ ଅପେକ୍ଷା କର, ମୁଁ ଏମାନଙ୍କୁ ନିରାଶ କରିପାରିବି ନାହିଁ । ସେହି ରାତିରେ ମହିଳାମାନଙ୍କୁ ନେଇ ବାଙ୍କୀ ଥାନାରେ ମଦ ତିଆରି କରି ବିକ୍ରି କରୁଥିବା ଲୋକମାନଙ୍କ ନାମରେ ଏଫ୍ଆଇଆର ଦାଖଲ କଲି । ଧନ୍ୟବାଦ ଦେବି ସେଠିକାର ଥାନା ଇନ୍‌ସପେକ୍ଟରଙ୍କୁ । ସେ ତହିଁ ପରଦିନ ଦେଶୀ ମଦ ଦୋକାନୀକୁ ଆରେଷ୍ଟ କଲେ ଏବଂ ସେହି ଅଞ୍ଚଳରେ ମଦ ଦୋକାନ ସବୁ ଭଙ୍ଗାଯାଇଥିଲା । ସେଠାରେ ମହିଳାମାନଙ୍କୁ ଧରି "ନିଶା ବିରୋଧୀ ଅଭିଯାନ" ଆରମ୍ଭ କରିଥିଲୁ ଏବଂ ପ୍ରାୟ ତିନିଶହ ମହିଳା ଏଥିରେ ଯୋଗଦେଇଥିଲେ । ଏହା ଫଳରେ ଗାଁର ବୁଢ଼ା ଓ ସ୍ତ୍ରୀଲୋକମାନେ ଶାନ୍ତିରେ ନିଶ୍ୱାସ ମାରିଲେ ।

ଏହାପରେ ପୁଣି ସେହି ପଞ୍ଚାୟତର ସ୍ତ୍ରୀଲୋକମାନେ (ବାଉରୀ) ଆମେ କେମିତି ରୋଜଗାର କରିବୁ ବାଟ ବତାନ୍ତୁ କହିବାରୁ ସେମାନଙ୍କୁ ସ୍ୱୟଂ ସହାୟକ ଗୋଷ୍ଠୀ କରାଇ କିଛି ମହିଳାଙ୍କୁ କୌଶଲ୍ୟାଗଙ୍ଗରେ ମାଛଚାଷର ପ୍ରଶିକ୍ଷଣ ଦିଆଇଲି । ସେମାନେ ଅବିଭକ୍ତ କଟକ ଜିଲ୍ଲାରେ ମାଛଚାଷ ପ୍ରଶିକ୍ଷଣରେ ସବୁ ଗ୍ରୁପ୍‌ମାନଙ୍କ ଭିତରେ ପ୍ରଥମ ସ୍ଥାନ ପାଇଥିଲେ । ପୁରସ୍କାର ସ୍ୱରୂପ କଟକ କଲେକ୍ଟର ସେମାନଙ୍କୁ ମାଛ ଚାଷ ପାଇଁ ୫ ଲକ୍ଷ ଟଙ୍କାର ପାଟ ମାଗଣାରେ ଦେଇଥିଲେ । ସେଥିରେ ପୁଣି ବାଧକ ସାଜିଲେ ରାଜନୈତିକ ବିରୋଧୀ ଗୋଷ୍ଠୀ । ମୁଁ ସେମାନଙ୍କ ପାଇଁ ମିଶନ ଶକ୍ତି ଠାରୁ ପଞ୍ଚାୟତିରାଜ ମନ୍ତ୍ରୀ ପର୍ଯ୍ୟନ୍ତ ଲଢ଼ିଲି । ମାତ୍ର ଏହି ଯୋଜନା ସ୍ଥଗିତ ରହିଲା ଏବଂ ସେମାନେ ଆଉ ମାଛ ଚାଷ କରିପାରିଲେ ନାହିଁ । ଏହି ମହିଳାମାନଙ୍କର ନେତୃତ୍ୱ ନେଉଥିବା ମହିଳା (ଟୁନୁ ଗୋଛାୟତ)କୁ ତା'ର ପୁଅ ହରାଇବାକୁ ପଡ଼ିଲା । ତା'ପରେ ମୋ ମନ ଟିକେ ଭାଙ୍ଗିଗଲା । ମୁଁ ନୀରବ ରହିବା ଉଚିତ ମନେକଲି । କାରଣ ଆମଦଳ ସେତେବେଳେ କ୍ଷମତାରେ ନଥାଏ ସେ ଅଞ୍ଚଳରେ । ଅଯଥାରେ ଲୋକମାନେ କ'ଣ ପାଇଁ ରାଜନୈତିକ ଆକ୍ରୋଶର ଶିକାର ହେବେ ।

ଏହା ଭିତରେ ବହୁ ସମୟ ବିତିଯାଇଛି । କେବେ କେବେ ଅନୁଭବ ହୁଏ ସମାଜ ପାଇଁ ଆଉ ବିଶେଷ କିଛି କରିପାରିବି ନାହିଁ । ତଥାପି ଆଶା ରହିଛି ।

*ନୀଳକଣ୍ଠ ନଗର, ଭୁବନେଶ୍ୱର*

# ଏଇ ମନ ବୃନ୍ଦାବନ

ଗୌରହରି ବେହେରା (୫୮୦)

ବିଶ୍ୱବିଜୟୀ ସ୍ୱାମୀ ବିବେକାନନ୍ଦଙ୍କ ଭାଷାରେ, "ବିସ୍ତାର ହିଁ ଜୀବନ" । ବିସ୍ତାର ଅର୍ଥ ମନର ବିଶାଳ ପରିଧି । ଏତିକି କହିହେବ ଯେ ମନ ଜଳ ପରି ତରଳ, ସାଗର ପରି ଅଥଳ । ନିଜେ ଅବଶ୍ୟ ଅରୂପ, କିନ୍ତୁ ବାୟୁ ପରି ବ୍ୟାପକ, ଅଗ୍ନିପରି ଉଦ୍ଦୀପକ । ଆତ୍ମସାଧନା ବଳରେ ପ୍ରତିଟି ବସ୍ତୁରେ ବ୍ରହ୍ମଭାବନା, ବିଷୟାମୁକ୍ତ ଭାବନାକୁ ଗ୍ରହଣ କଲେ ମନ ତଥା କର୍ମ ବନ୍ଧନରୁ ମୁକ୍ତିମିଳେ । ସମସ୍ତ ପ୍ରକାର ସଂକୀର୍ଣ୍ଣତାର ଉର୍ଦ୍ଧ୍ୱକୁ ଉଠି ସମସ୍ତଙ୍କ ପ୍ରତି ସମଭାବାପନ୍ନ ଦେଖାଇଲେ ମନର ବିସ୍ତାର ହୋଇଥାଏ । ଏହି ବିସ୍ତାର ହିଁ ପ୍ରକୃତ ଜୀବନ । ଭାଗବତରେ ଭଗବାନ ଶ୍ରୀକୃଷ୍ଣ ମନର ବିଶେଷଣ ସମ୍ବନ୍ଧରେ ଉଦ୍ଧବକୁ କହିଛନ୍ତି ।

ମନ ତୋହର ନିଜ ଗୁରୁ ।     ଉଦ୍ଧବ କେତେ ତୁ ପଚାରୁ ।।

ମନର ବ୍ୟାପକତା ସେଇ ମନ ହିଁ ନିର୍ଣ୍ଣୟ କରିଥାଏ । ମନ ଅତ୍ୟନ୍ତ ଦିବ୍ୟ ତଥା ମହତ୍ତ୍ୱର ମହିମାରେ ମଣ୍ଡିତ ହୋଇଗଲେ କୌଣସି ପରିସ୍ଥିତିରେ ବିରକ୍ତି ବା ଘୃଣାବୋଧ ଭଳି ଆବେଗ ଉଦ୍ରେକ ହୋଇନଥାଏ । ଭାଗବତର ସିଦ୍ଧ ପୁରୁଷ ଅବଧୂତଙ୍କ ଜୀବନରେ ବାସ୍ତବରେ ଏହି ସ୍ଥିତି ପ୍ରତିଫଳିତ ହେବାର ଦେଖାଯାଏ । ସେ ବାୟୁ ଠାରୁ ଆରମ୍ଭ କରି ପିଙ୍ଗଳା ବେଶ୍ୟା ପର୍ଯ୍ୟନ୍ତ ଚବିଶ ଗୁରୁ କରିଥିଲେ । ତାଙ୍କ ମନର ବ୍ୟାପକତା ସୁଦୂର ପ୍ରସାରୀ । ସେଥିରେ ଅସୁନ୍ଦର ବୋଲି କିଛି ନାହିଁ । ଯାହା ସାଧାରଣ ମଣିଷ ପାଇଁ ବୀଭତ୍ସ, ତହିଁରେ ସେ ଦେଖିଛନ୍ତି ସୌନ୍ଦର୍ଯ୍ୟ, ଧୂଳିକଣା ଭିତରେ ଦେଖିଛନ୍ତି ବିଶ୍ୱ, ବଣମଲ୍ଲୀ ଭିତରେ ଦେଖିଛନ୍ତି ସ୍ୱର୍ଗ । ସେ ହାତ ମୁଠା ଭିତରେ ଅସୀମକୁ ଅଟକାଇପାରିଛନ୍ତି ଓ ମୁହୂର୍ତ୍ତକୁ ଚିରନ୍ତନ ମଧ୍ୟରେ ବାନ୍ଧିପାରିଛନ୍ତି । ଅହଙ୍କାରୀ ମଣିଷ ଗୋଲାପ ମଧ୍ୟରେ କଣ୍ଟା ଦେଖୁଥିବା ସମୟରେ ଦିବ୍ୟ ମାନସିକତା ଯୁକ୍ତ ମଣିଷଟି ତା'ର ସୌନ୍ଦର୍ଯ୍ୟ ଓ ସୌରଭ ଅନୁଭବ କରେ । ଏପରି ଅନୁଭବ ମଣିଷର ନିର୍ଦ୍ଦିଷ୍ଟ ମାନସିକତା ଉପରେ ନିର୍ଭର କରିଥାଏ ।

ମାନବ ଏକ ମନ-ପ୍ରଧାନ ପ୍ରାଣୀ । ମନଦ୍ୱାରା ଚିନ୍ତାକରେ, ଭଲ ମନ୍ଦ ବିଚାର କରେ, ଯୁକ୍ତିତର୍କ ଆଲୋଚନା ଦ୍ୱାରା ବିଭିନ୍ନ ସମସ୍ୟା ସମାଧାନ କରିଥାଏ । ତା'ର ଭାବ, ଅଭାବ, ସନ୍ତୋଷ, ଅସନ୍ତୋଷ, ଆଶା, ହତାଶ ସବୁଥିରେ ପ୍ରାଣସତ୍ତାର ଭୂମିକା ଥିଲେ ମଧ୍ୟ ଚେତନାରେ ଏ ସବୁକୁ ଅଧିକ ଜାହିର କରେ ମନ । କବି ଗଙ୍ଗାଧରଙ୍କ ଭାଷାରେ-     ଯା' ମନ ଯେପରି ତା' ପାଇଁ ସେପରି ଫଳ ରଖିଥାଏ ବିଶ୍ୱ ।

ଉଚ୍ଚମନା ଉଚ୍ଚେ ଅମୃତ ଲଭଇ ନୀଚମନା ଲଭେ ବିଷ ।।

ଦିନକର ଘଟଣା, ବାଟୋଇଟି ପଥଶ୍ରମ ପାଇ କ୍ଲାନ୍ତ ହୋଇପଡ଼ିଲା । ଦେଖିଲା ଏକ ଝଙ୍କାଳିଆ ବରଗଛ, ଶାଖା ପ୍ରଶାଖା ପତ୍ରରେ ଲଦି ହୋଇଯାଇଛି । ତାହାର ସୁଶୀତଳ ଛାୟା ବାଟୋଇକୁ ଗଛ ମୂଳକୁ ଟାଣିନେଲା । ସେ ଯାଇ ସେଠି ବିଶ୍ରାମ ନେଲା । କିଛି ସମୟ ପରେ ସେ ମନେ ମନେ ଚିନ୍ତାକଲା ସୁନ୍ଦରୀ ସ୍ତ୍ରୀଟିଏ ଭୋଜନ ନେଇ ଆସନ୍ତା କି ! ଭୁରି ଭୋଜନ କରି ଅବସାଦ ମେଣ୍ଟାନ୍ତି । ସତକୁ ସତ ଜଣେ ନାରୀ ଭଳିକି ଭଳି ସୁସ୍ୱାଦ ବ୍ୟଞ୍ଜନ ନେଇ ହାଜର । ଆକଣ୍ଠ ଭୋଜନ ପରେ ଅବଶ ଲାଗିଲା, ମୁଣ୍ଡରେ ବାନ୍ଧିଥିବା ଗାମୁଛା ଖଣ୍ଡ କାଢ଼ି ବିଛେଇ ଦେଇ ଶୋଇ ପଡ଼ିଲା । ନିଦ୍ରାଦେବୀ କେଉଁଠି ଥିଲେ କୋଳେଇ ନେଲେ । ସନ୍ଧ୍ୟା ଉତ୍ତାରେ ନିଦ ଭାଙ୍ଗିଲା । ଏବେ ମନରେ ଭୟ, ନିର୍ଜନ ସ୍ଥାନ, ହିଂସ୍ରଜନ୍ତୁ ପୂର୍ଣ୍ଣ । ବାଘ ଆସିଲେ ଘୋଷାଡ଼ି ନେବ, ଖାଇଯିବ । ସେଇକ୍ଷଣି କାହିଁ ଥିଲା ଆଖି ପିଛୁଳାକେ ବାଘଟିଏ ଆସି ଘୋଷାଡ଼ି ନେଇଗଲା । ଆଶ୍ରୟ ନେଇଥିବା ବଟ ବୃକ୍ଷଟି କଳ୍ପବୃକ୍ଷ ଥିଲା । ମନୁଷ୍ୟର ଅଧିକାଂଶ ଭାବନା ସତକୁ ସତ କାର୍ଯ୍ୟରେ ପ୍ରତିଫଳିତ ହୋଇଥାଏ ।

ଆତ୍ମବିଶ୍ୱାସ ଓ ଦୃଢ଼ ମନୋବଳ ମନୁଷ୍ୟର ସବୁଠାରୁ ବଡ ଶକ୍ତି । ଆତ୍ମବିଶ୍ୱାସ ବିହୀନ ବ୍ୟକ୍ତି ସକଳ ବିଫଳତାକୁ ଆମନ୍ତ୍ରଣ କରିଥାଏ । ଲୋକସେବକ ମଣ୍ଡଳର ପ୍ରତିଷ୍ଠାତା ପଞ୍ଜାବ କେଶରୀ ଲାଲା ଲଜପତ ରାଏ କହିଛନ୍ତି, "ମୋର ଅଦାଲତ ମୋର ଅନ୍ତଃକରଣ, ମୋର ସମ୍ପତ୍ତି ମୋର କଲମ, ମୋର ମନ୍ଦିର ମୋର ମନ, ଏବଂ ମୋର ଲକ୍ଷ୍ୟ ସଦା ସର୍ବଦା ଯୁବକ । ଜାତୀୟତାବାଦ ମୋର କାମ୍ୟ । ପଣ୍ଡିତ ଶ୍ରୀରାମ ଶର୍ମା ଆଚାର୍ଯ୍ୟଙ୍କ ମତ, "ଗଭୀର ଆତ୍ମବିଶ୍ୱାସ ସହ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦନ କଲେ ଆଉ ଏକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ନିମନ୍ତେ ଦ୍ୱାର ଉନ୍ମୁକ୍ତ ହୋଇଯାଏ ।

ଆତ୍ମାକୁ ଚିହ୍ନିବା ବାଟରେ ଦୁଇ ପ୍ରଚଣ୍ଡ ପ୍ରତିବନ୍ଧକ ହେଉଛନ୍ତି ପ୍ରାଣ ଓ ମନ । ଦୁହେଁ ନିଜ ନିଜ ବାସନା, କାମନା, ପସନ୍ଦ, ରୁଚି ଓ ଚାହିଦା ଜାହିର କରି ଚାଲିଥାଆନ୍ତି । ଚେତନା ସମ୍ପନ୍ନ ବ୍ୟକ୍ତିର ମନରେ ସର୍ବଦା ଶାନ୍ତି, ସନ୍ତୋଷ ପରିପୂର୍ଣ୍ଣ ହୋଇ ରହିଥାଏ । ଅଯଥା ସମସ୍ୟାର ସମାଧାନ ନିମନ୍ତେ ଚିନ୍ତାର ଝଡଝଞ୍ଜା ସହିବାର ପ୍ରଶ୍ନ ଉଠେନି, ସେମାନଙ୍କର ମନ ସଦାବେଳେ ନୀରବ, ସ୍ଥିର ଏବଂ ସ୍ୱଭାବ ଶାନ୍ତ ।

ବେଳ ବେଳେ ମନ ହିଁ ସର୍ବଶକ୍ତିମାନ ହୋଇ ଉଠେ । ବିଶ୍ୱ ବ୍ରହ୍ମାଣ୍ଡକୁ ହାତରେ ରଖିବାକୁ ଚାହେଁ । ମଣିଷର ବିବେକ ହୁଗୁଳା ଧରେ । ଯେତେ ଘୋଡାଇଲେ ବି ମନର ପ୍ରଭାବ ଶେଷକୁ ଫୁଟି ଉଠେ । ସଫଳତା, ବିଫଳତା ତଦନୁସାରେ ମିଳିଥାଏ । ମଣିଷର କାର୍ଯ୍ୟରେ ମନର ଭାବ ଉକୁଟି ଉଠେ । ପଞ୍ଚଇନ୍ଦ୍ରିୟ ମାଧ୍ୟମରେ ବହିଃ ଜଗତର ଶବ୍ଦ, ଗନ୍ଧ, ସ୍ପର୍ଶ, ରୂପ, ରସ ମନ ଉପରେ ପ୍ରଭାବ ବିସ୍ତାର କରେ, ଆଭ୍ୟନ୍ତରୀଣ ଓ ବାହ୍ୟିକ ଅସଂଖ୍ୟ

ପ୍ରବୃତ୍ତି ସୃଷ୍ଟି କରାଏ । ଫଳରେ ଜଟିଳତା ବଢ଼େ । ମନକୁ ଶାନ୍ତ କରିବାକୁ ଯାଇ ମଣିଷ କଣ୍ଟାଗଛ ପୋତେ । ମନର ପ୍ରଚ୍ଛନ୍ନ ଅବସ୍ଥା ହିଁ ଶରୀରର ରୋଗ ବଇରାଗର କାରଣ ହୁଏ । ଶରୀରର ରୋଗକୁ ବ୍ୟାଧି, ଆଉ ମନର ରୋଗକୁ ଆଧି କୁହାଯାଏ । ଗୋଟେ ଇଚ୍ଛା ପୂରଣ ବା ଦମନ ନହେଉଣୁ ଆଉ ଗୋଟେ ଉଙ୍କିମାରେ । ମଣିଷ ଈଶ୍ୱର ହେବାକୁ ଇଚ୍ଛା କରେ, ଅନନ୍ତ କାଳ ପର୍ଯ୍ୟନ୍ତ ବଞ୍ଚି ରହିବାକୁ ମନ ବଳାଏ । ଘଡ଼ିକେ ଘୋଡା ଛୁଟାଇ ଚଉଦ ଭୁବନ ବୁଲି ଆସେ । ଚପଳ ମନ ଚପଳା ଠାରୁ ଆହୁରି ଚଞ୍ଚଳ । ତାକୁ କୌଣସି ଅଞ୍ଚଳରେ ବାନ୍ଧି ରଖିବା ସମ୍ଭବ ହୁଏନି । କେତେବେଳେ ଐରାବତ ପିଠିରେ ସବାର ହୁଏତ, କେତେବେଳେ ସୁନା ହରିଣର ପିଛାକରେ । ପାଇଲେ ଖୁସି ନ ପାଇଲେ ଯାଏ ରୁଷି । ପୁଣି ଶରୀରଟା ମହୋଦଧିରେ ସ୍ନାନ କରୁଥିବାବେଳେ ବ୍ରେନଟା ବେଜିଂରେ, ମନଟା ମସ୍କୋରେ ବୁଲୁଥାଏ ।

ମଣିଷର ମନ ଏମିତି ଯେ, ଜୀବନ ଉପବନରୁ ଅଫୁଟା କଢ଼ିକୁ କାଢ଼େ, ଜୀବନରେ ଅସୁମାରି ଆଶାକୁ ବାଢ଼େ । ସୁନେଲି ସ୍ୱପ୍ନ ଦେଖାଏ । ଫୁଲ ଫୁଟିବ, ହସିବ, ସୁବାସରେ ଦିଗ ଚହଟେଇବ, ସାଧନା ଫଳ ଫଳିବ । ମନ ସାଧନା ବାଟକୁ ଗଲେ ଜୀବନ ପକ୍ୱଫଳ ଚାଖେ, ଅବାଟରେ ଗଲେ ମହାକାଳ ଫଳ ମିଳିଯାଏ । ଅମାନିଆ ମନ କଥାବାର୍ତ୍ତା ବେଳେ ଭଲରେ ଭେଲ ଭର୍ତ୍ତି କରେ । ଜୀବନ ଫୁଲରେ ଫଳ ଧରିବା ପରିବର୍ତ୍ତେ ଏହା ଝାଉଁଳି ଝଡ଼ିପଡେ । ମଣିଷ ଧନ, ମାନ, ଜୀବନ ଯୌବନ ସାମର୍ଥ୍ୟକୁ ଭୁଲିଯାଏ । ଅସମ୍ଭବକୁ ସମ୍ଭବ କରିବା ନିଶାରେ ଦିଶା ହୁଡେ, ଦୁର୍ନୀତି ହାବୁଡରେ ପଡ଼େ, ଚଲାପଥରେ ଝୁଣ୍ଟିପଡ଼େ । କଲମ ଧରା ହାତ ବଲମ ଧରେ, ସାମର୍ଥ୍ୟ ବିହୀନ ଜୀବନ ଦୁଃଖ ଅମଳ କରେ । ଯଯାତି ପରି ଯୌବନ ଲକ୍ଷ୍ୟରେ ଧାଏଁ, ନିଜେ ଦୁଃଖ ପାଇ ଅନ୍ୟକୁ ସୁଖ ଦିଏ ।

କ୍ଷୀର ଉତୁରିଲେ ନିଆଁରେ ମରେ, ଝରଣା ଉତୁରିଲେ ନଈକୁ ଭରେ । ନଈ ଉତୁରି ସାଗରରେ ସରେ, ମନ ଉତରି ମଣିଷର ବ୍ୟକ୍ତିତ୍ୱ ମାରେ, ବଂଶ ମର୍ଯ୍ୟାଦା ହାନି କରେ । ଶେଷରେ ଜୀବନ ଥିବା ପର୍ଯ୍ୟନ୍ତ ମଣିଷ ଝୁରି ଝୁରି ମରେ ।

ମଣିଷକୁ ଚଳାନ୍ତି ତିନି ରଥୀ- ମନ, ବୁଦ୍ଧି ଓ ବିବେକ । ପ୍ରତ୍ୟେକ କାମ କଳ୍ପନା ରୂପରେ ପ୍ରଥମେ ମନକୁ ଆସେ, ଭାବନାରେ ପଶେ । ଚଞ୍ଚଳ ମନ ହୁତୁ ହୁତୁ ହୁଏ ଧୈର୍ଯ୍ୟ ହରାଏ, ଅବାଟରେ ଯାଏ । ମନ ବେଳେବେଳେ ଧନ୍ଦିହୁଏ, ବୁଦ୍ଧିକୁ ଡାକେ । ବୁଦ୍ଧି କାମଟିର ପରୀକ୍ଷା କରେ, ବାଟ ଖୋଜେ । ଅହଙ୍କାରୀ ମନ ବେଳେ ବେଳେ କୁଳ ବୁଡ଼ାଇଦିଏ । ଏହା ମହାଭାରତରେ ପ୍ରବଳ ପରାକ୍ରମୀ କୌରବ କୁଳକୁ ନ ବୁଡ଼ାଇ ଛାଡ଼ିନି । ମନକୁ ଆୟତ୍ତରେ ନ ରଖିଲେ ଏହା ଚୁଗୁଲିଆ ପାଲଟିଥାଏ । କବିଙ୍କ ଭାଷାରେ-

"ଯେତେ ବୁଝାଇଲେ ଚିତ୍ତ
ଆୟତ୍ତେ ନାହିଁ କିଞ୍ଚିତ
ଦୀନବନ୍ଧୁ ଜାଣିବା ଉଚିତ
ମନ ଭଗାରି ହେଲେ ମମତାରେ ଗରଳଭରେ
ଜୀବନକୁ ଅକ୍ଳେଶରେ ସାରେ । "

ବିଶାଳ ବଳବାନ୍, ପ୍ରବଳ ମାରଣା ଷଣ୍ଢଟିଏ ଆଖି ଲାଲ ଲାଲ, ନାକରୁ ବହୁଥାଏ ଫଁ ଫଁ ଅଣଚାଶ ପବନ । ଶିଂଘ ଦୁଇଟି ତେଣ୍ଟାପରି ମୁନିଆ । ସ୍ୱଭାବରେ ଭାରି ଦୁଷ୍ଟ । ଯାହାକୁ ଦେଖିଲେ ମାରି ଗୋଡାଏ । ଲୋକେ ଷଣ୍ଢ ଭୟରେ ଅତିଷ୍ଠ ହୋଇ ପଡୁଥାନ୍ତି । ଦିନେ ଡାକିଲେ ଜଣେ ବଳୁଆ ଯୋଦ୍ଧାକୁ ମୁକାବିଲା ସକାଶେ । ଯୋଦ୍ଧା ଷଣ୍ଢ ଆଗରେ ଛିଡ଼ାହୋଇ କୁଦା ମାରିଲା, ଦୁଇ ଶିଙ୍ଘକୁ ଧରି ଝୁଙ୍କେଇଲା । କିନ୍ତୁ ଷଣ୍ଢ କି ଛାଡ଼ିବା ଜନ୍ତୁ, ଏମିତି କଚାଡ଼ି ଦେଲା ଯେ, ମୁକାବିଲା ସେଇଠି ଶେଷ,ଆଣ୍ଠୁ ଗଣ୍ଠି ଭାଙ୍ଗି ଚୁରମାର୍ । ଏହି ସମୟରେ ସେହି ବାଟ ଦେଇ ଗୋଟିଏ ଭଅଁର ଉଡିଯାଉଥିଲା, ପଚାରିଲା, ଆରେ ଭାଇ, କ'ଣ ହେଲା । ଲୋକେ ଷଣ୍ଢର ଗୁଣଗ୍ରାମ ବଖାଣି ବସିଲେ । କହିଲା, ମୁଁ ଆପଣମାନଙ୍କୁ ସାହାଯ୍ୟ କରିପାରିକି ? ସମସ୍ତେ ହସିଲେ କହିଲେ "ବଡ ବଡ ଗଲେ ଫସର ଫାଟି, ସାନ କହୁଛି ମୁଁ ଦେବି ବେସର ବାଟି । ଭଅଁର କହିଲା- ଭୁଲିଯାଉଛ ବୁଦ୍ଧିଆ ସବୁବେଳେ ଜିତାପଟ ନେଇଥାଏ । ହସି ଉଡାଇ ଦିଅନା, ବସ, ଦେଖ, ମୁଁ କ'ଣ କରୁଛି । ଏହା କହି ଉଡିଯାଇ ଷଣ୍ଢର ଦୁଇ ଶିଙ୍ଘର ମଧ୍ୟଭାଗରେ ବସି ପଡ଼ିଲା, ଗୁଣୁ ଗୁଣୁ ଗୀତ ଗାଇବାକୁ ଲାଗିଲା । ଷଣ୍ଢ ରାଗିଗଲା, ଛାର ଭଅଁରର ଏଡେ ବହପ, ମୁଣ୍ଡରେ ଚଢ଼ିବ । ଶିଙ୍ଘ ହଲେଇ ମାରିବାକୁ ଚେଷ୍ଟା କଲା, ପାରିଲା ନାହିଁ । ଅସଫଳ ହେବାରୁ ରାଗି ବିରକ୍ତ ହୋଇ ଏଣେ ତେଣେ ଦୌଡିଲା, ମାଟି ତାଡିଲା, କଚାଡି ହେଲା । କିନ୍ତୁ ଭଅଁରର କିଛି କ୍ଷତି ଘଟାଇପାରିଲା ନାହିଁ । ମନ ମତାଣିଆ ଷଣ୍ଢକୁ ଭଅଁର ରୂପକ ବିବେକ ଶାସନ କରିବାରେ ସକ୍ଷମ । ବିବେକ ସର୍ବଦା ଗୁଣୁ ଗୁଣୁ ହୋଇ ଲଗାମ ଲଗାଇ ମନକୁ ବାଟକୁ ଆଣିଥାଏ ।

କର୍ମଟିଏ କରି ଫଳ ପାଇବା ବେଳେ ସୁଫଳକୁ ପୁଣ୍ୟ ଏବଂ କୁଫଳକୁ ପାପ ବୋଲି ବିବେଚନା କରାଯାଇଥାଏ । ପାପ ଦେହରେ ନଥାଏ, ଥାଏ ମନରେ । ମନରେ ଯେମିତି ପଶେ, ଚିନ୍ତାରେ ସେମିତି ଆସେ, ଶରୀରରେ କାର୍ଯ୍ୟକାରୀ ହୁଏ । ପାପ ପୁଣ୍ୟର ସ୍ଥାନ ହିଁ ମନ । ଶୃଙ୍ଖଳା ଏବଂ ବିଶୃଙ୍ଖଳାର ମୂଳସୂତ୍ର ଖୋଜିବସିଲେ, ଜଣାଯାଏ ଯେ, ଏ ସବୁର ଆଧାର ସେହି ମନ । ଧର୍ମଶାସ୍ତ୍ର ଅନୁଯାୟୀ ମନଟି ମାୟାରେ କବଳିତ ହେବା ଦ୍ୱାରା ନାନାଦି ବିଭ୍ରାଟ ସୃଷ୍ଟି ହୋଇଥାଏ । ବୌଦ୍ଧ ଦର୍ଶନରେ ଏହାକୁ ଭ୍ରାନ୍ତି ବା ଅବିଦ୍ୟା

ରୂପେ ଦର୍ଶାଯାଉଛି । ସୁଖ ସନ୍ତୋଷ କୌଣସି ବସ୍ତୁ ନୁହେଁ, ଏହା ଏକ ମାନସିକ ସ୍ଥିତି । ଦର୍ପଣ ସମ୍ମୁଖରେ ବସ୍ତୁଟିଏ ଥୋଇଲେ ତା'ର ଅବିକଳ ପ୍ରତିବିମ୍ବ ଦୃଶ୍ୟମାନ ହୋଇଥାଏ । ସେହିପରି ମନୁଷ୍ୟର ମନ ମଧ୍ୟରେ ଯେଉଁ ଛବି ସ୍ଥାନ ଦେବ ତାହା ସେଇ ଛବି ପ୍ରତିବିମ୍ବିତ କରାଇବ । ସାଧୁସଙ୍ଗ କରାଇବ ତ ମନରେ ସାତ୍ତ୍ୱିକ ଭାବ ଜାଗ୍ରତ ହେବ, କୁସଙ୍ଗ କଲେ ମନରେ ତମ ବା ରଜ ଗୁଣ ପ୍ରକାଶ ପାଇବ । ଯାହା ସତ୍ ଶିକ୍ଷାରେ ମିଳେ ତାହା ହଜାରେ ଡରାଇଲେ, ଧମକାଇଲେ ବା କୋଟିଏ ଟଙ୍କା ଦେଇ ହାସଲ କରିବା ସମ୍ଭବ ହୋଇନଥାଏ । ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା, ଦେଶର ଉନ୍ନତି ତଥା ପ୍ରଗତି ପଥର ପ୍ରଧାନ ମାର୍ଗ ହେଉଛି ଜ୍ଞାନର ବିକାଶ । ଆଧ୍ୟାତ୍ମିକ ତଥା ନୈତିକ ଶିକ୍ଷା ବିନା ମଣିଷର ବିକାଶ ଅସମ୍ଭବ ।

ମନ ମାନିଗଲେ ଅସମ୍ଭବକୁ ସମ୍ଭବ କରିପାରେ । ଯୋଗଗୁରୁ ବଶିଷ୍ଠ କହିଛନ୍ତି, "ମନୋନାଶ ହେଲେ ଅସମ୍ଭବ ସମ୍ଭବ ହୁଏ । ଦୁଃଖକୁ ଅଣଦେଖାକରି ମାନସିକ ସ୍ତରରେ ସୁଖଶାନ୍ତି ଆଦାୟ କରିଥାଏ । କାହାର ଧନ ଦଉଲତ ଦେଖି ହାଇଁପାଇଁ ହୁଏ ନାହିଁ । ଯେତେ ପ୍ରତିକୂଳ ପରିସ୍ଥିତି ଆସିଲେ ବି ମନ ପ୍ରସନ୍ନ ରହି ଆତ୍ମସନ୍ତୋଷ ଲାଭ କରିଥାଏ । କଟୁ କଥାରେ ମିଠା ଉତ୍ତର ଦେଇ ଅନ୍ୟର ହୃଦୟକୁ ଶାନ୍ତ କରିଦିଏ । ମିଠା କଥାରେ କଟୁ ଉତ୍ତର ଦେଇ ପରିବେଶ ଓ ପରିସ୍ଥିତିକୁ ବଦଳାଇ ଅନ୍ୟର ହୃଦୟକୁ ଆଘାତ କରେ ନାହିଁ । ବାସ୍ତବିକ ମନର ବିବିଧତା ବଡ ବିଚିତ୍ର । ନିଜକୁ ଧନୀ, ମାନୀ, ଜ୍ଞାନୀ ଏମିତି କେତେ ରୂପରେ ସଜେଇ ହୁଏ । କଳ୍ପନା ବିଳାସରେ ବୁଡିରହି ସାମୟିକ ଇନ୍ଦ୍ରିୟ ସୁଖ ଲାଳସାରେ ମାତିଥାଏ । ମନ ମୁତାବକ ଫଳ ନମିଳିଲେ ଦୁଃଖରେ ଭାଙ୍ଗିପଡ଼େ । କଳ୍ପନା ରାଜ୍ୟରେ ଭାସିନଯାଇ, ବାସ୍ତବ ରାଜ୍ୟରେ ବିଚରଣ କଲେ ଦୁଃଖ ସହିବାର ଶକ୍ତି ସଂସାର ଚାଳକ ବତାଇ ଦିଅନ୍ତି । ସବୁଠୁ ବଡ଼ କଥା ହେଲା ନିଜକୁ ନିଜେ ଚିହ୍ନିବା, ତଦନୁସାରେ ମନକୁ ସଂଯତ ରଖି ଦୁଆରେ ପାଦ ଥାପିବା । ଅଜ୍ଞାନ ବ୍ୟକ୍ତି ଉପବାସ ରହି, ତପସ୍ୟା ସାଧନ ଆଦିରେ ନିଜ ଦେହକୁ କଷ୍ଟ ଦିଏ । କିନ୍ତୁ ବିଜ୍ଞଜନମାନେ ବିକାରକୁ ତଡି ମନକୁ ନିୟନ୍ତ୍ରିତ କରିଥାନ୍ତି । ଯେମିତି ପାହାର ଖାଉଥିବା କୁକୁର ରାଗରେ ବାଡିକୁ କାମୁଡିଥିବାବେଳେ, ସିଂହ ଧନୁ ବା ବନ୍ଧୁକକୁ ନ କାମୁଡି ଶିକାରୀକୁ ଆକ୍ରମଣ କରିଥାଏ । ଆମେ ସବୁ ମନକୁ ଆୟତ୍ତ କରି ନପାରି କୁକୁର ଭଳି ବାଡିକୁ କାମୁଡୁଛେ । ବୁଝିବାକୁ ହେବ ଯେ, ବାଡି ଆମକୁ ବାଡଉ ନାହିଁ । କଂସ ଯେପରି କଅଁଳ ଶିଶୁମାନଙ୍କୁ ଶିଳାରେ ପିଟିଥିଲା ସେଥିରେ ଲାଭ କ'ଣ ? ବରଂ ମୂଳକୁ ଖୋଜ, ଆଧାରକୁ ଡେଜ ।

ମନଟା ଭାରି ଉତ୍ପାତିଆ, କିନ୍ତୁ ବିବେକ ଭାରି ଶାନ୍ତଶିଷ୍ଟ । ଦୁଇଟି ମଧ୍ୟରେ ଥିବା ଗୁଣ ପରସ୍ପରର ବିରୋଧି । ଏମାନେ ପରସ୍ପରର ବନ୍ଧୁ ନୁହେଁ ବଇରୀ । ତଥାପି ବିବେକ

ହାର ମାନିବା ଲୋକ ନୁହେଁ । ମନକୁ ଆୟତ୍ତକୁ ଆଣିବାକୁ ଗୁଣୁ ଗୁଣୁ ସ୍ୱରରେ ଅହରହ ନୀତିବାଣୀ ଶୁଣାଏ, ବାଟକୁ ଆଣେ, ଅଯଥାରେ କଣ୍ଟା ବାଡରେ କାନି ପକାଇ କଳି ଭିଆଇବାକୁ ବାରଣ କରେ । ମନବୋଧ ଚଉତିଶାର ବାଣୀ:-

"କହଇ ମନ ଆରେ ମୋ ବୋଲ କର- କଳା ଶ୍ରୀମୁଖ ବାରେ ଦେଖିବା ଚାଲ
କେତେଦିନକୁ ମନ ବାନ୍ଧିଛୁ ଆଣ୍ଟ - କି ଘେନି ଯିବୁ ତୋର ଛୁଟିଲେ ଘଟ ।"

ଯେଉଁଠି ବିବେକ ହାରମାନେ ସେଇଠି ଲୋକେ କହନ୍ତି "ବିବେକଟା ବାଉଳା ହେଲାଣି ସ୍କ୍ରୁଟା ଢିଲା ଧରିଲାଣି ।"

ଆମ ଜୀବନ ପାରିବାରିକ, ସାମାଜିକ, ମାନସିକ ସ୍ଥିତି ଦେଇ ଗତି କରେ । ଭାବନା, ଚିନ୍ତା, ବିଚାର ମନର ଗୋଟିଏ ଗୋଟିଏ ଅଙ୍ଗ । ମାନସିକ ସ୍ତରରେ ମୁକ୍ତିରୁ ହିଁ ଆନନ୍ଦ ମିଳିଥାଏ । ପରମାନନ୍ଦ ସେତେବେଳେ ମିଳେ ଯେତେବେଳେ ଜଗତ ପ୍ରେମମୟ ହୋଇଯାଏ, ଶତ୍ରୁ ମିତ୍ରପାଲଟେ, ପ୍ରତିକୂଳ ଅନୁକୂଳ ଓ ଅଭିଶାପ ଆଶୀର୍ବାଦ ହୋଇ ଉଠେ । ଏଣୁ କୁହାଯାଇଛି

"ଏଇ ମନ ବୃନ୍ଦାବନ ଏଇମନ କାଶୀ
ଏଇ ମନ ବଦ୍ରିନାଥ ପୁରୀ ବାରଣାସୀ ।"

କଥାରେ କହନ୍ତି- ମନ ଜାଣେ ପାପ, ମାଆ ଜାଣେ ବାପ । ପାପ ଛଡ଼େଇବାକୁ ଗଙ୍ଗା ଯାଅ, ଗୋଦାବରୀ ଯାଅ, ସଙ୍ଗମରେ ବୁଡ ପକାଅ । ହେଲେ ମନ ଅଗାଧୁଆ ରହିଯାଏ । ଶଙ୍ଖତୀର୍ଥ ଯାଅ କି ଚକ୍ରତୀର୍ଥ ଯାଅ, ଦେହ ଥକ୍କା ହୁଏ, କିନ୍ତୁ ମନ ଥକ୍କା ହୁଏନା । ତୀର୍ଥର ଥଣ୍ଡା ଜଳରେ ଦେହ ବୁଡିଲା ବେଳେ ମନ ଆଉ କୁଆଡେ ଡିଆଁ ମାରୁଥାଏ । ଫଳରେ ତୀର୍ଥଯାତ୍ରା ସୁଫଳ ବଦଳରେ ଶୂନ୍ ହୋଇଥାଏ । ଯାହା ପାଇଁ ଏତେ ଫନ୍ଦା ଫିକର ସେ ବନ୍ଧା ପଡେନି ବନ୍ଧା ପଡେ ଦେହ । ଦେହ ବୁଡୁଛି ଗଙ୍ଗାରେ, ମନ ବୁଡୁଛି ଦଙ୍ଗାରେ । ପାଦ ଛୁଉଁଛି ତୀର୍ଥର ପବିତ୍ର ମାଟି, ମନ ଛୁଉଁଛି ବେଶ୍ୟାବାଟୀ । ମନ ପାଇଁ ଗାଧୁଆ ଅଗାଧୁଆ, ପବିତ୍ର ଅପବିତ୍ରର କିଛି  ମାନେ ନଥାଏ । କେହି କେହି କହନ୍ତି, ଯାହାର ମନ ନିର୍ମଳ ତା ପାଇଁ ଗାଡିଆ ଜଳ ଗଙ୍ଗା ଜଳ ପାଲଟେ, ମନ କଳୁଷିତ ହେଲେ ଗଙ୍ଗା ଭିତରେ ମଳ ନର୍ଦ୍ଦମାକୁ ଭେଟେ ।

ଶୀତରେ ଥର ଥରି ବୁଡ ପକାଇ ଫେରୁଥିବା ଲୋକଟି ଦେଖିଲା, ତା'ର ବନ୍ଧୁ କତରା ଘୋଡି ଶୋଇଛି । କହିଲା, "ପୁଣ୍ୟ କାର୍ତ୍ତିକ ମାସରେ ଭୋରୁ ସ୍ନାନ ନ କରି ଘୁଙ୍ଗୁଡି ମାରୁଛୁ ।" ଭିତରେ ଥାଇ ବନ୍ଧୁଟି ଉତ୍ତର ଦେଲା, "କତରା ଭିତରେ ମାଧୋଇ, ମୁଁ କିଆଁ ଯିବି ଗାଧୋଇ ।" ମନ ସିନା ଚତୁର୍ଦ୍ଧା ମୂରତିରେ ମୂଢ଼ ମତି । ଏଇ ମନ ପାଷାଣ ମଧ୍ୟରେ ପ୍ରଭୁଙ୍କୁ ଦର୍ଶନ କରେ, ପୁଣି କଳ୍ପବଟକୁ ମଧ୍ୟ ସାଧାରଣ ବୃକ୍ଷ ବୋଲି ଭାବେ,

ସତକୁ ମିଛ ମିଛକୁ ସତ ମଣେ । ମନ ହିଁ ସବୁରି ମୂଳ, ତାକୁ ଧରିବା ପାଇଁ, ମନେଇବା ପାଇଁ ଯୁଗ ଯୁଗ ଧରି ମୁନିଋଷିମାନେ ତପସ୍ୟା କରିଥାନ୍ତି । କେତେ ଯୋଗ କେତେ ପ୍ରାଣାୟମର ଆଶ୍ରୟ ନିଅନ୍ତି । ମଠ, ମନ୍ଦିର, ମସ୍‌ଜିଦ୍ ଘୂରି ବୁଲନ୍ତି ।

ଇଚ୍ଛାକୁ ଦମନ କରିବା କଷ୍ଟ । ଚିତ୍ତ ଚାହେଁ ସର୍ବଦା ଚିକାଗୋ ଯାଇ ଚିକେନ୍ ଖାଇବ । ଭୋଗ ବିଳାସ ଜୀବନ ଭିତରେ ଅଜ୍ଞାନତାରେ ବଶୀଭୂତ ରାଜାଙ୍କୁ ଥରେ ଜଣେ ସନ୍ଥ କହିଥିଲେ, "ହେ ରାଜନ! ଯାହାର ତୃଷ୍ଣା ଯେତେ ଅଧିକ ସେ ସେତେ ଦରିଦ୍ର । ମନ ଯାହାର ତୃପ୍ତ ଓ ସନ୍ତୁଷ୍ଟ ହୋଇଯାଇଛି ତା' ପାଇଁ ଧନ, ମାନ ଓ ଦରିଦ୍ରତା, ଅପମାନ ସବୁ ସମାନ । ଜୀବନକୁ ଅଣନିଶ୍ୱାସ କରି ମରୀଚିକା ପଛରେ ଗୋଡାଉଥିବା ସଇତାନ ହେଲା କାମନା । ମନ ଚାହୁଁଛି ତ ଦୋସ୍ତ ବନିଯାଅ । ମନ ତୃପ୍ତ ହୋଇଗଲେ ଆଉ ହାଇଁ ପାଇଁ ହେବନି । ମିଠା ଖାଇବାକୁ ବିକଳ ହେଉଥିବା ମନକୁ ଅତ୍ୟଧିକ ମିଠା ଖୁଆଇଦେଲେ କିଛି ସମୟ ପାଇଁ ସିନା ତୃପ୍ତି ମିଳିବ, ତା' ପର ମୁହୂର୍ତ୍ତରେ ପୁଣି ଲାଳସା ଉଦ୍ରେକ ହେବ । କାମନା, ବାସନା ଶୁପ୍ତ ଅବସ୍ଥାରେ ପହଞ୍ଚିଗଲେ ମନ ଆପେ ଆପେ ଗଭୀର ନିଦ୍ରାରେ ବୁଡିଯାଏ ।

କାମାଗ୍ନିରେ କାମନା ଆହୁତି ଦେଲେ ତାହା ବଢ଼ିଯାଏ । ଉଚ୍ଛୃଙ୍ଖଳ, ଅନିୟନ୍ତ୍ରିତ ଓ ଉଦଣ୍ଡ ମନ ମନୁଷ୍ୟକୁ ପଶୁଠାରୁ ଜଘନ୍ୟ କାର୍ଯ୍ୟ କରାଇଥାଏ । ତଥାପି ମନକୁ ଦୁଧ ଭାତ ଦେଇ ମଣିଷ ଆଉଁଷୁ ଥାଏ, ତାଡନାକୁ ବୁଝୁ ନଥିବା ଓ ମାନୁ ନଥିବା ମନ ଜେଲଖାନା ଭାଙ୍ଗି ପଳାଏ । ମଣିଷ ମାଂସ ଖାଇ ବାଘ ଓଲିଆ ହେବା ପରେ ତାକୁ ଆଉ କିଛି ରୁଚେନା । ଆଜିର ମଣିଷ ଭୋଗେଚ୍ଛାରେ ଓଲିଆ । ନୈରାଶ୍ୟ ଜର୍ଜରିତ ମନ ନ୍ୟାୟ ଅନ୍ୟାୟ ବିବେଚନା ଶକ୍ତି ହରାଇଥାଏ ।

ମନକୁ ଆୟତ୍ତ କରିବା ଏକ କଳା, ସର୍ବୋପରି ଏକନିଷ୍ଠ ସାଧନା । ବିବେକ ରୂପକ ଲଗାମ ଦେଇ ମନ ଘୋଡାଇ ବେଗକୁ ଆୟତ୍ତ କରିବା ବୁଦ୍ଧିମାନର କାର୍ଯ୍ୟ । ଯୋଗର ନିର୍ବିକଳ୍ପ ସମାଧିରେ ମନ ଲଗାଇଲେ ମୋକ୍ଷ ମିଳିବ । ଯାହାର ମନ ଯେତେ ତାହର ପ୍ରଭୁ ତେତେ । ମନ ସ୍ୱଚ୍ଛନ୍ଦରେ ଖେଳାଲୀଳା କରେ । ଅନେକ ଭଣ୍ଡବାବା ନିଜ ଜାଲ ବିଛାଇ ଥୋପ ପକାଇ ବସିଥାନ୍ତି । ସୁମନରୁ ଦେବଗୁରୁ ବୃହସ୍ପତି ଓ କୁମନରୁ ଅସୁରଙ୍କ ମୋକ୍ଷାର୍ଥେ ଶୁକ୍ରାଚାର୍ଯ୍ୟ ମିଳନ୍ତି । ବାଟ ହୁଡିଲେ କିଏ ସାହା ହେବ ? ବିଷୟାସକ୍ତ ମନକୁ ଅନାସକ୍ତରେ ପରିଣତ କରାନ୍ତି ସଦଗୁରୁ । ମନ ଶରୀରକୁ ନିୟନ୍ତ୍ରଣ କରୁଥିବାବେଳେ ଗୁରୁ ଶିଷ୍ୟର ମନକୁ ନିୟନ୍ତ୍ରଣ କରାନ୍ତି । ମନକୁ ଶାସନ କଲେ ଶରୀର ହୁଏ ଅନୁଶାସିତ, ମନୋବଳ ଅସାଧ ସାଧନ କରେ, ପଙ୍ଗୁ ଗିରି ଲଙ୍ଘିବାକୁ ବାଟ ବତାଏ । ଗୁରୁଙ୍କ ଆଶୀର୍ବାଦରୁ ମନୋବଳ ବଢ଼େ । ଗୁରୁ ଶିଷ୍ୟକୁ ଅତିମାନସ ଶକ୍ତି ଆହରଣ କରିବାର ବାଟ ବତାଇ ଥାଆନ୍ତି ।

କଳୁଷିତ ମନ ଅସ୍ୱଚ୍ଛ ଦର୍ପଣ ପରି । ଗୁରୁଙ୍କ ଗୋଇଠାରେ ବଇଠା ଜଳାଇ ପ୍ରତିବିମ୍ବ ସ୍ୱଚ୍ଛ କର । ଆଶୀର୍ବାଦର ସ୍ୱରୂପ ବୁଝିଗଲେ ମନର ବିସ୍ତାର ବଢ଼ିଯାଏ । ମନକୁ ନିୟନ୍ତ୍ରଣ କରିବା କଳା ପୂର୍ବେ ଆଶ୍ରମ ଶିକ୍ଷାରେ ଥିଲା । ମନକୁ ସଂଯତ କରିବା ସକାଶେ ଖାଦ୍ୟପେୟ, ପୋଷାକ ପରିଚ୍ଛଦ, ଚାଲିଚଳଣିରେ ଶୁଦ୍ଧତା ବାଧ୍ୟତାମୂଳକ । କାକ ସ୍ନାନ, ବକ ଧ୍ୟାନ, ଶ୍ୱାନ ନିଦ୍ରା, ଅଳ୍ପାହାରୀ, ଗୃହତ୍ୟାଗୀ ବିଦ୍ୟାର୍ଥୀର ପଞ୍ଚଲକ୍ଷଣ ଭାବେ ପରିଗଣିତ । ପରିବେଶ ମନ ଓ ବୁଦ୍ଧିକୁ ପ୍ରଭାବିତ କରେ । ମନର ଖାଦ୍ୟ ହେଲା ସତ୍‌ସଙ୍ଗ, ସତ୍ ଗ୍ରନ୍ଥ ପଠନ, ସତ୍ ଚିନ୍ତନ, ସତ୍ ମନନ୍ । ଆଶ୍ରମ ଶିକ୍ଷାକାଳରେ ମାତାଗୁରୁ, ପିତାଗୁରୁ, ଶିକ୍ଷାଗୁରୁ ଊର୍ଦ୍ଧ୍ୱରେ ଥାଆନ୍ତି ମନଗୁରୁ । ସେ ହିଁ ନୀତିଗତ ନିଷ୍ପତ୍ତି ନେଇ ଉତ୍ତମ ମାର୍ଗ ଦର୍ଶନ କରାନ୍ତି । ଡାକ୍ତର ରୋଗ ଲକ୍ଷଣ ଦେଖି ବାହ୍ୟ ରୋଗକୁ ସୁସ୍ଥ ରଖିଲାବେଳେ ଆଶ୍ରମ ଗୁରୁ ମନ ରୋଗର ଚିକିତ୍ସକ ପାଲଟି ନିରୋଗ କରାନ୍ତି ।

ଦୁନିଆ ଦାଉରୁ ରକ୍ଷା ପାଇବାକୁ ହେଲେ ପ୍ରଥମେ ମନକୁ ସଂଯତ କରି ଏହାକୁ ପରେ ଆୟତ୍ତ କରିବାକୁ ପଡିବ । ଦୁଇଜଣଙ୍କ ମଧ୍ୟରେ କଳି ତକରାଳ ଲାଗିଲେ ନିଜେ ଚୁପ୍ ରହ, ଦରକାର ପଡିଲେ ଘରୁ ବାହାରି ସୁସ୍ଥ ପରିବେଶ ଯୁକ୍ତ ସ୍ଥାନ ଯଥା:- ମନ୍ଦିର, ମସଜିଦ୍ ବା ଚର୍ଚ୍ଚକୁ ଚାଲିଯାଅ, ଫୁଲ ବଗିଚା କିମ୍ବା ନିରୋଳା ସ୍ଥାନକୁ ଯାଇ ମାନସ ମନ୍ଥନ କରିପାର । ମନକୁ ନିର୍ମଳ ରଖ, ପଙ୍କରେ ପଶି ମନକୁ ଗୋଳିଆ କରନା, ନିଜକୁ ଗୁଣୀ ଜ୍ଞାନୀ ସର୍ବବିଶାରଦ ମନେକରି ଅହଂକାରକୁ ଡାକି ଆଣନା । ଜ୍ଞାନ ଆହରଣରେ ସବୁ କିଛି ମିଳିଯାଏନା, ଅସଲ ଉପଲବ୍ଧି ହେଲା ନିର୍ମଳ ମନ । ମନ ପବିତ୍ର ନହୋଇ କଳୁଷିତ ହୋଇଗଲେ ସକଳ ଜ୍ଞାନ ବ୍ୟର୍ଥ ହୋଇଥାଏ । କିଛି କାମ କରିବା ପଛରେ ପ୍ରେରଣା ଦିଏ ମନ । ମନ ଭଲ ଅଛିତ କାମ ଭଲରେ ଭଲରେ ସମ୍ପାଦିତ ହୋଇଯିବ । ମନ ଭଲ ନାହିଁ ତ କାମରେ ବେଙ୍ଗା । ଶରୀରରେ ଶକ୍ତି, ସାମର୍ଥ୍ୟ ଥାଇ ମନ ବେଙ୍ଗା ଧରିଲେ କାମ ଡେଙ୍ଗା ହେବନି । ସ୍ଥୂଳ ଶରୀରକୁ ପରିଚାଳନା କରିବାରେ ମନର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପରିବାରରେ ସଦସ୍ୟଙ୍କ ମନାନ୍ତର ହେଲେ ଅଶାନ୍ତି ବଢ଼େ, ଅନୁଷ୍ଠାନରେ କର୍ମଚାରୀଙ୍କ ମନରେ ଫାଟ ଦେଖାଦେଲେ ଅନୁଷ୍ଠାନରୁ ନାହିଁ ନଥିବା କ୍ଷତି ହୁଏ । ମନକୁ ଆୟତ୍ତ କରିବାକୁ ସନ୍ଥଜନମାନେ ବିଭିନ୍ନ ମାର୍ଗ ବତାଇ ଯାଇଛନ୍ତି । କିଏ କହନ୍ତି ଯୋଗ, କିଏ ପ୍ରାଣାୟମ ତ କିଏ କହେ ଧ୍ୟାନ । କିଏ ବତାନ୍ତି ଜପ ତ କିଏ ତପ, କିଏ କୀର୍ତ୍ତନ ତ କିଏ ସତ୍‌ସଙ୍ଗ ବା ସତ୍‌ଗ୍ରନ୍ଥ ପଠନ । ମନକୁ ବୋଲ ମନେଇ ପାରିଲେ ଆୟତ୍ତରେ ରହିବ ।

ଜଣେ ସନ୍ଥଙ୍କ ସଙ୍ଗରେ ତିନିଜଣ ଶିଷ୍ୟଥିଲେ । ସେମାନେ ସର୍ବଦା ଅଶାନ୍ତ, ବ୍ୟସ୍ତ, ବିବ୍ରତ ଦେଖାଯାଉଥିଲେ । ଦିନେ ସନ୍ଥ ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ବାଛୁରି ଦେଇ

କହିଲେ "ଏଇ ବାଛୁରିକୁ ଦୁଇମାସ ଲାଳନ ପାଳନ କରିବା ଦାୟିତ୍ୱ ତୁମର । ପୋଷା ମନେଇବା ତୁମର କାମ । ପୋଷା ମାନିଗଲେ ତୁମର ବିଦ୍ୟା ସଫଳ ହୋଇଛି ବୋଲି ବୁଝିବ । "ଶିଷ୍ୟମାନେ ପ୍ରଶ୍ନ କଲେ ବିଦ୍ୟା ସହିତ ବାଛୁରିର କି ସମ୍ପର୍କ । ଗୁରୁ କହିଲେ ଏହା ତୁମେ ପରେ ବୁଝିପାରିବ । ଜଣେ ବାଛୁରିକୁ ପଘାରେ ବାନ୍ଧିଲା, ଖାଇବା ପିଇବାକୁ ଦେଲା, ପିଠି ଆଉଁଷିଲା, ସେବା ଯତ୍ନ ବି କଲା । କିଛିଦିନ ପରେ ଆଉ ବାନ୍ଧିବାକୁ ପଡିଲା ନାହିଁ । ବାଛୁରିଟି ସୁନ୍ଦର ଦେଖାଗଲା, ବୋଲ ମାନିଲା, ଡାକିଲାକ୍ଷଣି ପାଖରେ ଆସି ପହଞ୍ଚିଯାଇଥିଲା । ଦ୍ୱିତୀୟ ଶିଷ୍ୟ ତା' ବାଛୁରିକୁ ଖାଇବାକୁ ପିଇବାକୁ ଦେଲାନି ଖାଇଲେ ବାଡେଇଲା, ସବୁବେଳେ ପଘାରେ ବାନ୍ଧି ରଖୁଥିଲା । କିଛିଦିନ ପରେ ଦେଖାଗଲା, ବାଛୁରି ଡରୁଛି, ଠିକ୍‌ରେ ଖାଉନି, ଦୁର୍ବଳ ଦେଖାଯାଉଛି । ଡାକିଲେ ଆସିବା ବଦଳରେ ଭୟରେ ଧାଇଁଛି । ତୃତୀୟ ଜଣକ ବାଛୁରିକୁ ଅନେକ ଉପାୟରେ ପୋଷା ମନାଇବାକୁ ଚେଷ୍ଟା କଲା, କିନ୍ତୁ ପାରିଲାନି । ଶେଷରେ କହିଲା "ଗୁରୁଜୀ ଆପଣଙ୍କ ବାଛୁରି ନିଅନ୍ତୁ । "ଆମ ମନ ବାଛୁରି ଭଳି । ତାକୁ ଜପ, ତପ, ଧ୍ୟାନ, ଧାରଣା ରୂପକ ପଘାରେ ବାନ୍ଧିଲେ ମନ ମାନିଯିବ ବୋଲ ବି କରିବ । ପଘା ଫିଟାଇଦେଲେ ବି ପାଖକୁ ଆସିବ । ଆଘାତ ଦେଲେ ମନ ଫିଟିକି ଯାଏ, ବିଷୟା ବିଷୟରେ ହଜିଯାଏ । ମନକୁ ଗୁରୁ ବା ଗଗନ ଭୁବନ ମାଲିକଙ୍କ ନିକଟରେ ସମର୍ପଣ କରିଦେଲେ ମନ ପରମାତ୍ମାଙ୍କର ହୋଇଯିବ, ଆଉ କିଛି ସମସ୍ୟା ରହିବ ନାହିଁ ।

ସଂସାର ଗୋଟିଏ ସମୁଦ୍ର । ନିଜ ଜୀବନକୁ ଏଠି ମନ୍ଥନ କରିବାକୁ ହୁଏ । ମନ୍ଥନରୁ ମିଳେ ଜ୍ଞାନ ଓ ଭକ୍ତି ରୂପକ ଅମୃତ । ମଣିଷର ମନ ମନ୍ଦର ପର୍ବତ ଓ ତା'ର ପ୍ରେମର ଡୋରି ହେଉଛି ବାସୁକି ନାଗ । ମନରୂପୀ ମନ୍ଦରକୁ ସ୍ଥିର କରିପାରିଲେ ମଣିଷ ସଂଯମୀ ହୋଇପାରିବ, ଜୀବନ ଅମୃତର ସ୍ୱାଦ ଚାଖିପାରିବ । ମନ୍ଦର ପର୍ବତ କ୍ରମଶଃ ବୁଡ଼ିଯାଉଥିବାବେଳେ ଭଗବାନ କଚ୍ଛପ ହୋଇ ନିଜ ପିଠିରେ ପର୍ବତକୁ ଧାରଣ କରିନିଅନ୍ତି । ସେହିପରି ସଂସାର ସମୁଦ୍ରରେ ନାନାଦି ସମସ୍ୟା ନେଇ ବୁଡିଯିବାକୁ ପଡିଥାଏ । ଏମିତି ପରିସ୍ଥିତିରେ ବିଚଳିତ ନ ହୋଇ ଈଶ୍ୱରଙ୍କ ନିକଟରେ ମନ ଲଗାଇଲେ ସମସ୍ୟା ସମାଧାନ ହୋଇଯାଏ । ମନ୍ଥନରୁ ପ୍ରଥମେ ବିଷ ବାହାରିପାରେ, କିନ୍ତୁ ପରେ ଅମୃତ ମିଳିବ ହିଁ ମିଳିବ । ପ୍ରଥମେ ନିନ୍ଦା ମିଳିପାରେ, କିନ୍ତୁ ପରେ ପ୍ରଶଂସା ନିଶ୍ଚୟ ମିଳିବ ।

ଆମ ଦେହ ଭିତରେ ମନ ଅଛି, ପ୍ରାଣ ବି ଅଛି । ମନର ଗତି ଚଞ୍ଚଳ, । ମାତ୍ର ପ୍ରାଣ ଧୀର ସ୍ଥିର । ଦେହ ଥରେ ପ୍ରାଣ ଶକ୍ତିର ଆୟତ୍ତକୁ ଆସିଗଲେ ସକଳ ଅସମ୍ଭବ ସମ୍ଭବ ହୋଇପାରିବ । ମନ ସହିତ ଧ୍ୟାନର ଗଭୀର ସମ୍ବନ୍ଧ । ଧ୍ୟାନର ସରଳ ଅର୍ଥ ହେଲା ମନକୁ ପରମାତ୍ମାଙ୍କ ଆଡକୁ ନେଇଯିବା । ବିଷୟ ବାସନାରୁ ମନକୁ ହଟାଇ କିଛି ସମୟ ସ୍ଥିର

ହୋଇ ରହିବା । ସିଦ୍ଧ, ସନ୍ଥ, ଯୋଗୀ, ମୁନି, ଋଷିମାନେ ଅନେକ ସମୟ ଧରି ଧ୍ୟାନସ୍ଥ ହୋଇଥାଆନ୍ତି । ପରମାନନ୍ଦଙ୍କ କୃପା ଯୋଗୁଁ ବିଶେଷ ଆନନ୍ଦ ମିଳିଥାଏ, ଯାହାକୁ କହନ୍ତି ବ୍ରହ୍ମାନନ୍ଦ । ସାଧାରଣତଃ ଆମ୍ଭେମାନେ ଗୋଟିଏ କାମ କରୁଥିବାବେଳେ ମନ ଅନ୍ୟ କିଛି ଭାବୁଥାଏ । ଏପରିକି ଭୋଜନବେଳେ ଅନ୍ୟ ଚିନ୍ତା ମୁଣ୍ଡରେ ସବାର ହୋଇଥାଏ । କିନ୍ତୁ ଯେଉଁ କାର୍ଯ୍ୟ କରୁଥିବ, ସେହି କାର୍ଯ୍ୟରେ ମନ ବୁଡି ରହିଲେ କର୍ମରେ ସୁଫଳ ମିଳେ । ମନ ପରମାତ୍ମାଙ୍କ ଚିନ୍ତନରେ ରହିଲେ ସୁଖ, ଶାନ୍ତି ରୂପକ ସମ୍ପଦ ମିଳିଥାଏ । ଦ୍ୱାପର ଯୁଗରେ ଗୋପୀମାନେ ସର୍ବଦା କୃଷ୍ଣଙ୍କ ଚିନ୍ତନରେ ବୁଡି ରହୁଥିଲେ । କୃଷ୍ଣ ଥିଲେ ସେମାନଙ୍କ ପ୍ରାଣବଲ୍ଲଭ । ତାଙ୍କର ବାଣୀ, ତାଙ୍କର ଠାଣି, ତାଙ୍କର ଚହାଣୀ ସେମାନଙ୍କୁ ପାଗଳ କରି ରଖୁଥିଲା । ଶୟନେ, ସପନେ, ଜାଗରଣେ ଭାବି ଭାବି ଝୁରି ହେଉଥିଲେ । ସେହି ଅବସ୍ଥାରେ ସେମାନେ ସ୍ଥୁଳ ଜଗତରୁ ବିଚ୍ଛିନ୍ନ ହୋଇ ପରମାନନ୍ଦଙ୍କୁ ଭେଟୁଥିଲେ । ଗୋପୀମାନଙ୍କ ଅବସ୍ଥା ଲଭିବାକୁ ଯୋଗୀ, ଋଷି ତପସ୍ୱୀମାନେ ମାସ ମାସ ବର୍ଷ ବର୍ଷ ଧରି ସାଧନା କରୁଥିଲେ । ନାରଦ, ଉଦ୍ଧବଙ୍କ ପରି ଭକ୍ତମାନେ ସେଥିଲାଗି ଗୋପୀମାନଙ୍କୁ ପ୍ରଶଂସା କରିଥାଆନ୍ତି । ଯେଉଁ ମନରେ ପରମାନନ୍ଦ ବାସ କରିଥାଆନ୍ତି, ସେଇ ମନରେ ସଂସାରର ଚିନ୍ତା ଚେତନା, ଜଞ୍ଜାଳ ରହେ ନାହିଁ, ରହିଥାଏ ପରମଶାନ୍ତି ଅପାର ତୃପ୍ତି ।

ଶରୀର ଥିଲେ ତ ରୋଗ ଅଛି । ଶରୀର ବ୍ୟାଧିଠାରୁ ମନର ଆଧି ଅଧିକ ମାରାତ୍ମକ । ଆଧିର ଔଷଧି ହେଉଛି ଉପାସନା । ଉପବାସ ବା ବ୍ରତ ଦ୍ୱାରା ଏକାଗ୍ରତା ଆସେ, ମନ ତୃପ୍ତି ପାଏ । ଏକାଗ୍ର ଚିତ୍ତରେ ଉପବାସ ରହି ପରମାତ୍ମାଙ୍କ ସହିତ ସମ୍ବନ୍ଧ ରଖିପାରିଲେ ଜଣେ ବ୍ୟକ୍ତି ତା ଜୀବନରେ ସୁଖ ପାଇବ, ଶାନ୍ତି ପାଇବ ।

*ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ*
*ଶିମିଳିପଡ଼ା, ଚର୍ଚ୍ଚ ଲାଇନ୍,*
*ଅନୁଗୋଳ - ୭୫୯୧୨୨*
*ମୋ:- ୭୭୩୫୧୦୫୯୯୪*

# ଶ୍ୱେତ ବିପ୍ଳବ

**ତପସ୍ୱିନୀ ଦାଶ (୩୨୬)**

ସୃଷ୍ଟିର ପ୍ରାକ୍ କାଳରୁ ମାନବ ସଭ୍ୟତାର ଅନେକ ବିପ୍ଳବ ସଂଘଟିତ ହୋଇଯାଇଛି । ବଣ ଜଙ୍ଗଲରେ ବାସ କରିବା ଠାରୁ ମହାକାଶର ଗ୍ରହ ନକ୍ଷତ୍ରକୁ ଚିହ୍ନଟ କରିବା ପର୍ଯ୍ୟନ୍ତ ମଣିଷକୁ ଅନେକ ବିପ୍ଳବ କରିବାକୁ ପଡିଛି । ତେବେ ଭାରତ ବର୍ଷରେ ବିକାଶର ବିଭିନ୍ନ ଦିଗ ପ୍ରତି ଦୃଷ୍ଟିପାତ କଲାବେଳେ ଗୋସମ୍ପଦର ମହତ୍ୱ ପ୍ରତି ସ୍ୱତଃ ଦୃଷ୍ଟି ଆକର୍ଷିତ ହୋଇଯାଏ । କାରଣ ଦେଶରେ ଏହାର ପର୍ଯ୍ୟାପ୍ତ ରକ୍ଷଣାବେକ୍ଷଣ କରି ଶ୍ୱେତ ବ୍ଲିପବ ଆଣିବା ସମାଜ ପାଇଁ ଜରୁରୀ ହୋଇପଡ଼ିଛି ଏଥିରେ ସନ୍ଦେହ ନାହିଁ ।

ଭାରତୀୟ ସମାଜରେ ଗୋଜାତିର ଗୌରବମୟ ସ୍ଥିତିକୁ ଆଲୋଚନା କଲେ ଜଣାପଡେ ବୈଦିକ ଆର୍ଯ୍ୟମାନେ ଗାଈକୁ ଗୋମାତାର ଆସନ ଦେଇଥିଲେ । ଗୋରୁର ଚାରି ଖୁରାକୁ ଚାରୋଟି ଯୁଗର ଧର୍ମ ସହ ସମାନ ମନେ କରାଯାଏ । ତା'ର ପ୍ରତ୍ୟେକ ଲୋମ ମୂଳରେ ଦେବତାମାନେ ବାସ କରନ୍ତି ବୋଲି ପ୍ରବାଦ ଅଛି । ଗାଈ କେବଳ ଏକ ଗୃହପାଳିତ ପଶୁ ନୁହେଁ, ଏହା ପ୍ରତ୍ୟେକ ଭାରତୀୟର ଦେବତା ତୁଲ୍ୟ । ଗୋସେବାକୁ ପରମ ଧାର୍ମିକ କର୍ତ୍ତବ୍ୟ ବୋଲି ବିବେଚନା କରନ୍ତି ଭାରତୀୟମାନେ । ଗୋସେବା କରି ସୂର୍ଯ୍ୟବଂଶୀୟ ନରପତି ଦିଲ୍ଲୀପ ପୁତ୍ରଲାଭ କରିବା ତଥା ମହର୍ଷି ବଶିଷ୍ଠଙ୍କ ଆଶ୍ରମର କାମଧେନୁ ନନ୍ଦିନୀର କାହାଣୀକୁ ଏବେବି ଭାରତୀୟମାନେ ମନରୁ ପାଶୋରି ନାହାନ୍ତି । ସେଇଥିପାଇଁ ତ ଗହ୍ମାପୂର୍ଣ୍ଣିମା, କାଳୀପୂଜାରେ ଗୋରୁମାନଙ୍କର ହୁଏ ବିଶେଷ ପୂଜନ । କାର୍ତ୍ତିକ ଶୁକ୍ଳ ଅଷ୍ଟମୀ ତିଥିକୁ ଗୋଷ୍ଠାଷ୍ଟମୀ ବୋଲି ପାଳନ କରାଯାଏ । ମୃତ୍ୟୁପରେ ତପ୍ତ ବୈତରଣୀ ପାର ହୋଇଯିବା ଲାଗି ଆଜ ବି ଭାରତୀୟମାନେ ଗୋଦାନ କରିଥାନ୍ତି । ଗୃହ ସାମ୍ନାରେ ରଖିଥାଆନ୍ତି ଗୁହାଳ । କାରଣ ଗାଈର ଗୋମୟ ଗୋମୁତ୍ର ଉପରେ ଚାଲି ଆସିଲେ ସବୁ ଅପବିତ୍ର, ଅଶୂଚି, ପବିତ୍ର ଓ ଶୂଚି ହୋଇଯାଏ । ଏବେ ବି ଗାଁ ଗଣ୍ଡାରେ ପ୍ରତି ସକାଳରେ ଗୋମୟ ସିଂଚନ କରି ବାଡି ଅଗଣା ଖରକି ପବିତ୍ର କରିବାର ପରମ୍ପରା ଅଛି ।

ଗୋଜାତି ସୁଖ ସମୃଦ୍ଧିର ପ୍ରତୀକ । ଗୋଜାତିକୁ ଆମେ ଗୋଧନ ମଣିବା ସଙ୍ଗେ ସଙ୍ଗେ ତାଠୁ ପାଉ ଅନେକ ଉପକାର । ଜୀବନ କାଳ ମଧ୍ୟରେ ତା'ର ପ୍ରତ୍ୟେକଟି ଅଂଗ ଆମ କାମରେ ଲାଗେ । କୃଷିର ଉନ୍ନତି ପାଇଁ ଗୋଜାତିର ଦାନ ଅତୁଳନୀୟ । ଏହାର ଗୋବର ଉନ୍ନତ ଖତ ଓ ଜାଳେଣି ରୂପେ ବ୍ୟବହାର ହୁଏ । ଗୋବର ଗ୍ୟାସ ଏକ ପ୍ରଦୂଷଣ ମୁକ୍ତ ଜାଳେଣି । ଗାଈର କ୍ଷୀର, ଦହି, ଲହୁଣୀ, ଛେନା, ରାବିଡି ଆଦି ପୁଷ୍ଟିକର ଖାଦ୍ୟ ।

ତାଛଡା ଏହା ସମାଜର ଅର୍ଥନୀତିରେ ମଧ୍ୟ ସୁଧାର ଆଣେ । ଗୋରୁ ଚମଡାରେ ବ୍ୟାଗ୍, ଜୋତା, ସିଙ୍ଗରେ ପାନିଆ, ଖେଳନା, ସାର ଇତ୍ୟାଦି ନାନା ପ୍ରକାର ଜିନିଷ ତିଆରି ହୁଏ । ଯଦିଓ ପ୍ରଯୁକ୍ତି ବିଜ୍ଞାନରେ ଯଥେଷ୍ଟ ଆଗକୁ ଯାଇପାରିଥିବା ମଣିଷ ଆଜି ଗୋରୁର ବିନା ସହାୟତାରେ ହଳ କର୍ଷଣ, ଭାର ବହନ ଇତ୍ୟାଦି କାମ କରିପାରୁଛି ତଥାପି ଏ ଦୁଇଟି କାମ ପାଇଁ ଦିନେ ଏଇ ଗୋରୁ ହିଁ ମୁଖ୍ୟ ଆବଶ୍ୟକତା ଥିଲା । ଏତେ ସବୁ ଉପକାରରେ ଆସୁଥିବା ଜୀବଟି ପ୍ରତି ମଣିଷ ଏତେ ନୃଶଂସ ହୋଇପଡେ ଯେ କେତୋଟି ଉଦାହରଣ ତାହାର ଜ୍ୱଳନ୍ତ ପ୍ରମାଣ ।

ମଣିଷ ସବୁ ଜାଣି ଅଜଣା, ସବୁ ବୁଝି ଅବୁଝା । ନିଜ ସୁବିଧାବାଦୀ ଓ ସ୍ୱାର୍ଥପର ଗୁଣ ଯୋଗୁ ନିତି ପ୍ରତିଦିନ ମଣିଷ ଘଟାଇ ଚାଲିଛି ଗୋଚାଲାଣ, ଗୋ ହତ୍ୟା ପରି ସମ୍ବେଦନଶୀଳ ଘଟଣା । ଗୋହତ୍ୟା ଆମ ହିନ୍ଦୁ ଧର୍ମରେ ଏକ ମହାପାପ । ଏ ସମ୍ପର୍କରେ ସମ୍ବିଧାନରେ କଡା ନିୟମ ରହିଛି । କିନ୍ତୁ ଆଇନ ପଛ ପଟେ ଚାଲିଛି ଖୁଲମଖୁଲା ଆଇନ ଉଲ୍ଲଙ୍ଘନ । ସରକାର ମଧ୍ୟ ବେଳେ ବେଳେ ଅନ୍ଧ ହୋଇଯାଆନ୍ତି । ଫସଲ ନଷ୍ଟ କରିବା କାରଣରୁ ବିହାରରେ ନିକଟରେ ୨୦୦ ଅମୂଲ୍ୟ ନୀଳଗାଈଙ୍କୁ ଗୁଳିକରି ହତ୍ୟା କରାଗଲା । ତାହା ପୁଣି କେନ୍ଦ୍ର ପରିବେଶ ମନ୍ତ୍ରଣାଳୟର ଅନୁମତି କ୍ରମେ । ଏଥିରେ ପରିବେଶବିତ୍ ମେନକା ଗାନ୍ଧୀ କ୍ଷୋଭ ପ୍ରକାଶ କରନ୍ତେ ପରିବେଶ ମନ୍ତ୍ରୀ ପ୍ରକାଶ ଜାଭଡେକରଙ୍କ ମତ ଥିଲା ଯେ ଯଦି ବନ୍ୟଜନ୍ତୁ କୃଷକର ଫସଲ ନଷ୍ଟ କରୁଥାଏ ତେବେ ସରକାରଙ୍କର ଏହି ବନ୍ୟଜନ୍ତୁଙ୍କୁ ସୀମିତ ସଂଖ୍ୟାରେ ମାରିବାର ଅଧିକାର ଅଛି । ତେବେ ଏଇଠି ଗୋଟିଏ ପ୍ରଶ୍ନ ମନରେ ଆସେ ୨୦୦ଟି ନୀଳ ଗାଈ କଅଣ ସୀମିତ ସଂଖ୍ୟକ । ମନୁଷ୍ୟର ଏଇ ନିଷ୍ଠୁର ଆଚରଣ କ'ଣ କ୍ଷମଣୀୟ ।

ନିକଟରେ ମୟୁରଭଞ୍ଜ କଳାବାଡିଆ ଅଞ୍ଚଳରେ ଏକ ଷଣ୍ଢ ମାରି ଦୁଇଜଣଙ୍କ ମଧ୍ୟରେ ଭାଗ ହେଉଥିବା ବେଳେ ବନବିଭାଗ ଦ୍ୱାରା ଧରା ପଡିଲେ । ଏଇଠି ଦେଖନ୍ତୁ ମଣିଷର ନୃଶଂସତା । ଷଣ୍ଢକୁ ଆମେ ଶିବଙ୍କ ବାହନ କହି ନିତି ପ୍ରଣାମ ହେଉଛୁ । ଆଉ ସେପଟେ ତାକୁ ମାରି ନିଜର କ୍ଷୁଧା ମେଣ୍ଟାଉଛୁ, ଅର୍ଥ କମଉଛୁ ।

ସମ୍ବାଦପତ୍ର ତଥ୍ୟ ଅନୁସାରେ ଆଦିବାସୀ ବହୁଳ ବାମନଘାଟୀ ଉପଖଣ୍ଡରୁ ହେଉଛି ବ୍ୟାପକ ବେଆଇନ ଗୋରୁ ଚାଲାଣ । ଏହି ଉପଖଣ୍ଡର ବାଦଡା, ପଡିଆ, ତେଣ୍ଟପୋଷି, ଢ଼ାବା, ଦେଓଗାଁ, କୁସୁମୀ, ବଡାମକୁରାଡିହି ତଥା ପଞ୍ଚପୀଢ଼ ଉପଖଣ୍ଡର ଅଙ୍ଗାରପଦା, ସାନନଈ, ଚଢ଼େଇଭୋଳ ଇତ୍ୟାଦି ଅଞ୍ଚଳରୁ ଦୈନିକ ଟ୍ରକ୍, ପିକ୍ଅପ୍ ଯୋଗେ ଅବାଧ ଗୋଚାଲାଣ ହେଉଚି । ସପ୍ତାହକୁ ୩୦୦୦ରୁ ଉର୍ଦ୍ଧ୍ୱ ଗାଈଗୋରୁ ବିଭିନ୍ନ ଅଞ୍ଚଳକୁ ଚାଲାଣ ହେଉଅଛି । ସେପଟେ ଗୋଟିଏ ଟ୍ରକ୍‌ରେ ୮୦ରୁ ୧୦୦ ଗୋରୁ ଓ ଗୋଟିଏ ପିକ୍ଅପ୍‌ରେ

୧୦ରୁ ୧୨ ଗାଈ ଗୋରୁ ବୋଝେଇ ହୁଅନ୍ତି । ଥରେ ଭାବନ୍ତୁ ତ କେତେ ସଙ୍କଟରେ ଚାଲାଣ ହୁଅନ୍ତି ଆମ ଗୋମାତା । ସେମାନେ ପୁଣି କେତେ ନିର୍ମମ ଭାବରେ ହତ୍ୟା ହେଉଥିବେ ଆଉ ଦାନ କରି ଦେଉଥିବେ ନିଜର ହାଡ, ମାଂସ, ରକ୍ତ, ଖୁରା, ଶିଂଘ ଇତ୍ୟାଦିକୁ ଏ ମଣିଷ ଜାତି ପାଇଁ । ମଣିଷ ନିଜ ସ୍ୱାର୍ଥ ସାଧନ ପାଇଁ ଦେଶର ଐତିହ୍ୟ, ପରମ୍ପରା, ଧାର୍ମିକ ଭାବନାକୁ ଅତି ସହଜରେ ନଷ୍ଟ କରିପାରେ । ଗାଡି ଚକା ତଳେ ନିଜର ଛେଳି ଛୁଆଟିର ମରଣ ହେଲେ ଏଇ ମଣିଷ ସୁନ୍ଦର ରାଜନୀତି କରିପାରେ । କ୍ଷତିପୂରଣ ନ ଦେଲା ଯାଏ ରାସ୍ତା ଅବରୋଧ କରେ । ଏମିତିକି ଜନନୀ ସୁରକ୍ଷା କି ଆମ୍ବୁଲାନ୍ସ ଗାଡ଼ିକୁ ମଧ୍ୟ ବାଟ ଛାଡେ ନାହିଁ । ପ୍ରଶାସନ ସବୁଜାଣି ନୀରବ ରହେ, କାରଣ ଏହି ହତାବେପାରୀଙ୍କଠୁଁ ମିଳେ ଭଲରକମର ପକେଟ ଖର୍ଚ୍ଚ ।

ନିକଟରେ ଓମ୍‌ଫେଡ୍ ସଂସ୍ଥା କ୍ଷୀର ଚାଷୀଙ୍କଠୁ କ୍ଷୀର ନ କିଣିବା ଯୋଗୁଁ ହଜାର ହଜାର ଲିଟର କ୍ଷୀର କିପରି ରାଜରାସ୍ତାରେ ଢ଼ଳାଗଲା ତାହା ସମସ୍ତ ରାଜ୍ୟବାସୀ ଅବଗତ ଅଛନ୍ତି । ଯେଉଁ ଦେଶରେ ଶହ ଶହ ଗରୀବ ଶିଶୁ, ବୃଦ୍ଧାଙ୍କର ଭୋକରେ ପ୍ରାଣ ହାନି ଘଟୁଛି ସେ ଦେଶରେ ଏ ପ୍ରକାର କାର୍ଯ୍ୟ କେତେ ଯୁକ୍ତିଯୁକ୍ତ ତାହା ସମସ୍ତ ଶିକ୍ଷିତ ଜନତାଙ୍କ ପାଇଁ ଭାବିବାର ବିଷୟ ।

ପଶୁମାନେ ମଧ୍ୟ ସ୍ନେହ ଶ୍ରଦ୍ଧା ଖୋଜନ୍ତି । କିନ୍ତୁ ମଣିଷର ଅତ୍ୟଧିକ ନୃଶଂସତା ତାଙ୍କୁ ଅଧିକରୁ ଅଧିକ କ୍ରୁର କରିଦେଉଛି । ଯାହାର ପରିଣାମ ସଦୃଶ୍ୟ ହାତୀ, ବାଘ, ଭାଲୁ ଆକ୍ରମଣରେ ପ୍ରତିବର୍ଷ ଶହ ଶହ ଲୋକଙ୍କ ପ୍ରାଣହାନି ଘଟୁଛି । ଦେଶରେ ଶହ ଶହ ମଦ ଦୋକାନ ଖୋଲିବା ପାଇଁ ସରକାର ପରମିଟ୍ ଦେଉଛନ୍ତି । ଫଳ ସ୍ୱରୂପ ଦେଶର ରାଜସ୍ୱ ବଢୁଛି ସତ କିନ୍ତୁ ଶହ ଶହ ଲୋକଙ୍କର ପ୍ରାଣହାନି ଘଟୁଛି, ଶହ ଶହ ପରିବାର ଉଜୁଡି ଯାଉଛି । ସେଇ ସ୍ଥାନରେ ଗାଈଗୋରୁଙ୍କ ପାଇଁ ଖୁଆଡଘର କରି ସେମାନଙ୍କୁ ରଖିଲେ ଶ୍ରେଷ୍ଠ ମାନବିକତାର ପରିଚୟ ହେବ । ବନ୍ୟପ୍ରାଣୀ ତଥା ଗୋସମ୍ପଦ ଭାରସାମ୍ୟ ରଖିଲେ ପରିବେଶ ସନ୍ତୁଳନ ଠିକ୍ ରହିବା ସଙ୍ଗେ ସଙ୍ଗେ ଦେଶର ଅର୍ଥନୀତି ମଧ୍ୟ ସୁଦୃଢ଼ ହେବ । ଗୋରୁ ଗାଈ ଖୁବ୍ କମ୍ ଖାଇ ସାରା ଜୀବନ ଆମର ସେବା କରିଥାଆନ୍ତି । ତେଣୁ ତା'ର ଶେଷ ଜୀବନକୁ ଏମିତି କଂସେଇ ହାତରେ ଟେକି ଦେବାଟା ନିଶ୍ଚିତ ଅନ୍ୟାୟ । ତେଣୁ ଆସନ୍ତୁ ଏଇ ଗୋ ସମ୍ପଦର ଯତ୍ନ ନେବା । ଏହା ଦେଶ ଦଶ ଉଭୟଙ୍କ ପାଇଁ ମଙ୍ଗଳମୟ ।

*ବୁଢ଼ିଖମାରି ଶାସନ, ଭଞ୍ଜପୁର, ବାରିପଦା-୨*

*ମୋ:- ୯୪୩୯୪୪୧୭୬୪*

# ଭଞ୍ଜ ସାହିତ୍ୟରେ ଗ୍ରୀଷ୍ମ ବର୍ଣ୍ଣନା

ଡକ୍ଟର ତରଣୀ ସେନ ବେହେରା (୫୬୬)

ଭାରତର ଆର୍ଯ୍ୟ ମୁନିଋଷିଗଣ ସଭ୍ୟତା ଓ ସମାଜର ବିକାଶ ପାଇଁ ଯୁଗ ଯୁଗ ଧରି ନିବିଡ଼ ଅରଣ୍ୟର ପ୍ରକୃତି ମଧ୍ୟରେ ସାଧନା କରୁଥିଲେ । ସେମାନଙ୍କ ସାଧନା ପରିପୁଷ୍ଟ ହେବା ପାଇଁ ପ୍ରକୃତି ମଧ୍ୟ ତାଙ୍କୁ ଯଥେଷ୍ଟ ପ୍ରେରଣା ଯୋଗାଇଥିଲା । ତେଣୁ ଭାରତୀୟ ସାହିତ୍ୟକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ଏହା ବହୁ ଭାବରେ ଅରଣ୍ୟ ପ୍ରକୃତି ଦ୍ୱାରା ପ୍ରଭାବିତ । ପୁନଶ୍ଚ ମାନବ ପ୍ରକୃତି କୋଳରେ ଜନ୍ମଗ୍ରହଣ କରି ତା'ର ବିଭିନ୍ନ ପରିବେଶ ମଧ୍ୟରେ ଆତଯାତ ହୋଇ ପରିପୁଷ୍ଟ ହୁଏ ଓ ଶେଷରେ ପ୍ରକୃତି କୋଳରେ ତା'ର ଶରୀର ଲୀନ ହୁଏ । ତେଣୁ ପ୍ରକୃତି ସହିତ ମନୁଷ୍ୟର ସମ୍ପର୍କ ଅତି ନିବିଡ଼ ।

ପ୍ରକୃତି କହିଲେ କେବଳ ଅରଣ୍ୟର ପରିବେଶ, ନଦ-ନଦୀ, ପାହାଡ଼-ପର୍ବତ, ସୂର୍ଯ୍ୟ, ଚନ୍ଦ୍ର, ଓ ଫୁଲ-ଫଳ, ପଶୁ, ପକ୍ଷୀକୁ ବୁଝାଯାଏ ନାହିଁ, ବରଂ ଷଡ଼ଋତୁକୁ ମଧ୍ୟ ପ୍ରକୃତି ବୋଲି ବୋଲାଯାଏ । ଏହି ଷଡ଼ଋତୁ ମଧ୍ୟରୁ ଗ୍ରୀଷ୍ମ ଋତୁ ଅନ୍ୟତମ । ଗ୍ରୀଷ୍ମ ଋତୁ କେତେବେଳେ ବିକଟାଳ ତଥା ନୃଶଂସ ରୂପ ଧାରଣ କଲାବେଳେ ଆଉ କେତେବେଳେ ମଧୁର ଦୃଶ୍ୟରେ ଉଦ୍‌ଭାସିତ ହୋଇ ଜନମାନସକୁ ମୁଗ୍ଧ କରିଥାଏ । ଏଭଳି ଋତୁର ପ୍ରାକୃତିକ ଦୃଶ୍ୟକୁ ସାରସ୍ୱତ ସ୍ରଷ୍ଟାମାନେ ସ୍ୱସୃଷ୍ଟିରେ ପ୍ରମୂର୍ତ୍ତ କରିବା ନିମନ୍ତେ ପଶ୍ଚାଦ୍‌ପଦ ହୋଇନାହାନ୍ତି ।

ଭଞ୍ଜ ବଂଶର ପ୍ରଚଣ୍ଡ ପ୍ରତିଭାଧର "କବିଶେଖର କବି ଚୂଡ଼ାମଣି କବି ସମ୍ରାଟ ଉପେନ୍ଦ୍ରଭଞ୍ଜ" ଗ୍ରୀଷ୍ମ ଋତୁର ପ୍ରାକୃତିକ ଦୃଶ୍ୟକୁ ବିଶେଷ ଭାବେ ପ୍ରତିପାଦନ କରିଯାଇଛନ୍ତି । ତାର ବାହ୍ୟରୂପ ଓ ଅନ୍ତର୍ନିହିତ ରୂପ ଚିତ୍ରଣରେ ନିଜର ବିଦ୍‌ଗ୍ଧ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ପ୍ରକୃତି ସହିତ ମନୁଷ୍ୟର ଚିରନ୍ତନ ସମ୍ପର୍କକୁ ତାଙ୍କର ବଳିଷ୍ଠ ଲେଖନୀ ମାଧ୍ୟମରେ ଜୀବନ୍ତ ରୂପ ପ୍ରଦାନ କରିଛନ୍ତି । ଏହି ଜୀବନ୍ତ ରୂପ କେତେବେଳେ କାନ୍ତ କମନୀୟ ମନୋରମ ରୂପ ଧାରଣ କରିଛି ତ ଆଉ କେତେବେଳେ ରୁଦ୍ର ଭୈରବ ଭୀମ କାନ୍ତି ରୂପ ବହନ କରିଛି । ଏହି ରୂପ ହିଁ ଜଗତବାସୀଙ୍କୁ ବହୁ ଗୁଣରେ ପ୍ରଭାବିତ କରି ସନ୍ତାପିତ କରାଇଥାଏ ।

ବସନ୍ତ ଋତୁ ଧରାପୃଷ୍ଠରୁ ଅନ୍ତର୍ହିତ ହେବା ପରେ ଗ୍ରୀଷ୍ମ ଋତୁର ଆବିର୍ଭାବ ହୋଇଥାଏ । ଝିଙ୍କାରି ନାଦ ଚତୁର୍ଦ୍ଦିଗରେ ଝଙ୍କାରିତ ହୋଇଥାଏ । ଗ୍ରୀଷ୍ମ ସ୍ପର୍ଶ କଲାମାତ୍ରେ ଦେହରୁ ସ୍ୱେଦକଣା ନିର୍ଗତ ହୁଏ । ସୂର୍ଯ୍ୟ ଓ ଅଗ୍ନି ପରସ୍ପର ଭିତରେ ବିବାଦ କରି ନିଜ ନିଜର ପ୍ରଚଣ୍ଡ ପ୍ରଖର ତେଜ ବଢ଼ାଇଥାନ୍ତି । ଶୂନ୍ୟପଥରେ ଦିନବେଳେ ସୂର୍ଯ୍ୟକିରଣ ପ୍ରଖର ଭାବେ

ପ୍ରକାଶ ପାଇଛି । ପର୍ବତମାନଙ୍କରେ ସର୍ବଦା ବାଡ଼ବାଗ୍ନି ଜଳିଉଠିଛି । ଏହାର ଏକ ବାସ୍ତବ ତଥା ଜୀବନ୍ତ ରୂପ ପ୍ରଦାନ କରିବାକୁ ଯାଇ କବି ଲେଖିଛନ୍ତି:-

"ଶୁଣ ହେ ସାଧବ ମାଧବ ଶେଷେ ଝିଲିକା କହି,
ଏ ଗ୍ରିଷମ ଋତୁ ବିଷମ ସମ ନୁହନ୍ତି କେହି ।
ସତ ଏ ପରଶ ମାତ୍ରରୁ ଜାତ ଗାତ୍ରରୁ ସ୍ୱେଦ,
ଭାନୁ ବୃହଭାନୁ ଯା ଯୋଗୁଁ କଲେ ତେଜସ୍ୱୀ ବାଦ ।
ପ୍ରଭାକୁ ପ୍ରକାଶେ ଆକାଶେ ପ୍ରଭାକର ଦିବସେ,
ଜଳେ କୃଶାନୁ ସାନୁମାନମାନଙ୍କର ଅନିଶେ ।"

*(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ: ୧୮/୧-୩)*

ଗ୍ରୀଷ୍ମ କାଳକୁ କବି ମହାବଳ ବାଘ ସହିତ ତୁଳନା କରିଛନ୍ତି । ବାଘ ନଗର ଭିତରେ ପ୍ରବେଶ କଲେ ଭୟରେ ପାଦ ଟଳି ପଡ଼ିଯିବା ଲୋକଙ୍କୁ ବିଦୀର୍ଣ୍ଣ କରି ରଙ୍ଗିଣୀ ଫୁଲ ପରି ରକ୍ତାକ୍ତ କରିଥାଏ । ଗ୍ରୀଷ୍ମ ପ୍ରବେଶ ହେତୁ ପାହାଡ଼ମାନଙ୍କରେ ରଙ୍ଗିଣୀ ଓ ପାଟଳୀ ଫୁଲ ପ୍ରସ୍ଫୁଟିତ ହୋଇ ସେହି ଦୃଶ୍ୟକୁ ରକ୍ତବର୍ଣ୍ଣରେ ରଞ୍ଜିତ କରିଦିଏ । ବାଘ ତୀକ୍ଷଣ ନଖର ପ୍ରଭାବ ଅତି ମାତ୍ରାରେ ପ୍ରକାଶ କରି ଜୀବଜନ୍ତୁମାନଙ୍କ ବିଦୀର୍ଣ୍ଣ କରି ପ୍ରାଣ ନିଏ । ଗ୍ରୀଷ୍ମକାଳ ଯୋଗୁଁ ପ୍ରଚଣ୍ଡ ସୂର୍ଯ୍ୟ କିରଣ ନଦୀମାନଙ୍କର ଜଳକୁ ଶୁଖାଇ ଦେଇଥାଏ (କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ: ୧୯/୩୮-୩୯) । ଏହି ଋତୁର ପ୍ରଖର ସୂର୍ଯ୍ୟ କିରଣର ପ୍ରଭାବରେ ଚତୁର୍ଦ୍ଦିଗରେ ଜଳରାଶି ଚକ୍ ଚକ୍ ହୋଇ ମୃଗତୃଷ୍ଣା ବା ମରିଚିକା ଦୃଶ୍ୟ ପ୍ରକାଶ ପାଇଥାଏ । ସୂର୍ଯ୍ୟର ପ୍ରବଳ ତାପ ଜଗତବାସୀଙ୍କୁ ସନ୍ତପ୍ତ କରି ଭୀଷଣ ଗରମ ପବନ ପ୍ରବାହିତ ହୋଇଥାଏ । ମହିଷିଗଣ ନଦୀ, ନାଳ ଓ ପୁଷ୍କରିଣୀ ତୀରରେ ଥିବା କର୍ଦ୍ଦମ ବା କାଦୁଅ ପାଣିରେ ପଡ଼ି ଫେଣ ଉଦ୍‌ଗାର ପୂର୍ବକ ରଡ଼ି ଛାଡ଼ିଥାଏ (ଛାନ୍ଦ ଭୂଷଣ: ୯/୧) । ସେମାନଙ୍କର କର୍ଦ୍ଦମରେ ଲଟପଟ ହେବା ଦୃଶ୍ୟକୁ କବି ରସିକ ଓ ରସିକାର କାମ ଜନିତ ବା ସୁରତକାଳୀନ କ୍ରୀଡ଼ା ସହିତ ଉପମା ଦେଇଛନ୍ତି । ଗ୍ରୀଷ୍ମ ଋତୁର ପ୍ରଭାବ ଯୋଗୁଁ ଜଳ ଶୁଷ୍କ ହୋଇଯିବା ଫଳରେ ନଦୀମାନଙ୍କର କ୍ଷୀଣ ଅବସ୍ଥାକୁ କବି ଉପେନ୍ଦ୍ର ଭଞ୍ଜ ବୃଦ୍ଧା ନାରୀ ସହିତ ତୁଳନା କରିଛନ୍ତି । ପ୍ରବଳ ତପ୍ତ କିରଣରେ ଅରଣ୍ୟ ତଥା ଉଦ୍ୟାନମାନଙ୍କର ବୃକ୍ଷଲତା ବିତାନର ସୌନ୍ଦର୍ଯ୍ୟ ଅପସାରିତ ହେବା ଦୃଶ୍ୟକୁ ସେ ନାରୀର ରତାନ୍ତ ଅବସ୍ଥା ସହିତ ତୁଳନା କରିଛନ୍ତି । ଯଥା:-

"ସରିତ ହୋଇଲା ଜରତୀ ପରାୟେ ଘନରସ ବିହୀନରେ,
ରସିକ ରସାଧବ ପ୍ରାୟେ ସରସୀ ମହିଷି ଆଲିଙ୍ଗନରେ ।
ମୃଗେ ପ୍ରକଟ ରସନା କଲେ ବିପରୀତ ରତା ପ୍ରାୟେ ହୋଇ,
ପତ୍ରାବଳୀ ହୀନେ ରତାନ୍ତ ନାୟିକା ସମାନ ତରୁ ଏ ବହି ।"

(ଲାବଣ୍ୟବତୀ: ୪୦/୨)

ଗ୍ରୀଷ୍ମ ଋତୁର ପ୍ରଚଣ୍ଡ ଖରା ଭିତରେ ମଳୟ ପବନ, କର୍ପୂର, ଚନ୍ଦନ, ଚନ୍ଦ୍ରମା, ଜଳମୟ ମନ୍ଦିର ପ୍ରଭୃତି ମାନବ ସମାଜକୁ ହରଷ ପ୍ରଦାନ କରିଥାଏ । ସୂର୍ଯ୍ୟଙ୍କର ପ୍ରଚଣ୍ଡ ରଶ୍ମି ଯୋଗୁଁ ଲୋକଙ୍କର ଗମନାଗମନ, ବାଟହାଟ ସବୁ ଯିବା ଆସିବା ବନ୍ଦ ହେଲା । (ଅବନା ରସ ତରଙ୍ଗ- ୧ ୨/ ୨୮-୩୦) କାମୁକମାନେ ଗୀତ ସଙ୍ଗୀତରେ ଉଲ୍ଲସିତ ହୋଇ ଆନନ୍ଦ ଅନୁଭବ କଲେ । ଶୀତଳ ମଣିହାର ପିନ୍ଧି ରସିକା ରମଣୀମାନେ ବେଶ୍ ମଜା ମଉଜରେ ଗ୍ରୀଷ୍ମକାଳ ଅତିବାହିତ କଲେ । କେତକୀ ଗଛରେ କେତକୀ ଫୁଲ ଫୁଟି ରମଣୀୟ ଦେଖାଗଲା । ନିଆଳୀ ଗଛ ମନୋରମ ଭାବରେ ପୁଷ୍ପମାନଙ୍କୁ ଧାରଣ କଲେ । ଲୋକେ ଖରାକୁ ସମ୍ଭାଳି ନପାରି ବାରମ୍ବାର ଅବଗାହନ ବା ସ୍ନାନ କଲେ । ବଉଳ ଗଛ ପତ୍ର ଓ ଫୁଲରେ ସୁନ୍ଦର ଦେଖାଗଲା । ଗ୍ରୀଷ୍ମର ତାପ ବୃଦ୍ଧି ପାଇବା ଯୋଗୁଁ ପାରାମାନେ ଢ଼ଁ ଢ଼ଁ ଘୁମୁରା ଶବ୍ଦ କଲେ । ଗଛକୁ ଗଛ ଘସି ହୋଇ ଗରମ ହେବା ଫଳରେ ନିଆଁ ବାହାରି ବଣ ଜଙ୍ଗଲକୁ ଦଗ୍ଧ କଲା । ଶିମିଳି ଗଛର ଫଳ ଫାଟି ତୁଳା ବାହାରି ପବନ ଯୋଗରେ ଉଡ଼ିବାକୁ ଲାଗିଲା । ଭ୍ରମରମାନେ ପବନରେ ହଲଚଲ ହେଉଥିବା ମଲ୍ଲୀ ଫୁଲରେ ବସି ନପାରି ଗୁଣୁ ଗୁଣୁ ଗୁଞ୍ଜନ ଶବ୍ଦ କଲେ । ବେଗୁନିଆ ଫୁଲ ଫୁଟି ବାୟୁ କୁତ୍ସିତ ବା ଦୁର୍ଗନ୍ଧ ହେଲା (କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ: ୨୫/୧-୨୦, ଚିତ୍ର ଲେଖା: ୨୧/୧-୨୦, ବୈଦେହୀଶ ବିଳାସ: ୧୬/୭୯-୮୦, ୩୧/୩୨) । ଗ୍ରୀଷ୍ମ ଋତୁର ତାପ ପ୍ରଭାବରେ ଜଳାଶୟରୁ ଜଳ ଶୁଷ୍କ ହୋଇଥିବା ଫଳରେ ମୀନମାନେ ମରି ନିଶ୍ଚଳ ହୋଇ ରହିଲେ । କୁମୁଦ ଫୁଲ ଆଉ ଫୁଟିଲା ନାହିଁ । ଗ୍ରୀଷ୍ମ ଋତୁର ପ୍ରାକୃତିକ ଦୃଶ୍ୟକୁ ବାଳୀବଧ ବା ବାଳୀ ସଂହାର ଉପମାରେ କବି ବର୍ଣ୍ଣନା କରିଛନ୍ତି:-

"ବିଶେଷତ ତପ ପ୍ରଭା ହୋଇଲା,
ବିନିର୍ଗତ ଜୀବନରେ ରହିଲା ।
ବିଚଞ୍ଚଳ ନେତ୍ରମୀନ ସ୍ତବ୍ଧ,
ବିକଶିଲା ନାହିଁ ହାସ କୁମୁଦ ।"
(ବୈଦେହୀଶ ବିଳାସ: ୨୮/୧୩୮-୧୩୯)

ଦିନକୁ ଦିନ ସୂର୍ଯ୍ୟଙ୍କର କିରଣ ପ୍ରଖର ହୋଇ ଭୂପୃଷ୍ଠ ଭୀଷଣ ଗରମ ହେଲା । ପଥରେ ଯାତ୍ରା କରୁଥିବା ପଥିକମାନେ ବାଧା ଅନୁଭବ କଲେ । ସକଳ ପ୍ରାଣୀମାନଙ୍କର ସଦାସର୍ବଦା ବ୍ୟାକୁଳତା ଉତ୍ପନ୍ନ ହେଲା । ପାଣି, ପବନରେ ଯେଉଁ ଶୀତଳତା ଥିଲା, ତାକୁ ପ୍ରବଳ ସୂର୍ଯ୍ୟ ତେଜ ଦୂର କଲା । ଶୀତଳତା ଉପଲବ୍ଧ ନିମନ୍ତେ ଲୋକମାନେ ଚୂନ ଲିପା ଘରେ, ଚନ୍ଦନ ଓ କର୍ପୂରରେ ବଞ୍ଚିରହିଲେ । ସୂର୍ଯ୍ୟଙ୍କର ପ୍ରଖର କିରଣ ଯୋଗୁଁ ବାଉଁଶ ନଳୀରେ ଅଗ୍ନି ଲାଗି ଗଣ୍ଠିମାନ ଫାଟିଗଲା । ଅରଣ୍ୟରେ ପଶୁମାନେ ଜଳ ନ ପାଇବାରୁ

ଜିଭ କାଢ଼ିଲେ । ପତଙ୍ଗମାନେ ପାଣି ନପାଇ ଖଜୁରି ରସ ପାନ କରି ଘୁମାଇ ଶୋଇଲେ । ସଂଜ୍ୱର ଜ୍ୱର ରୋଗ ପରି ହେବାରୁ ପ୍ରାଣୀମାନଙ୍କର ଦେହ ଦାହ ଓ ତୃଷା ଜାତ ହେଲା । ତଦ୍ୱାରା ମତିଭ୍ରମ ଘଟିଲା । ସ୍ଥାନେ ସ୍ଥାନେ ମରୀଚିକା ବା ବାଲିଝରକାମାନ ପ୍ରକାଶ ପାଇଲା । ଚମରୀ ମୃଗମାନେ ମରୀଚିକାକୁ ପାଣି ବୋଲି ମନେ କଲେ । ହଂସପକ୍ଷୀମାନେ ଚମରୀ ମୃଗର ପୁଚ୍ଛକୁ ଯମୁନାର ଲହରୀ ମନେ କରି ତାହା ପଛରେ ଧାଇଁଲେ । ଗ୍ରୀଷ୍ମ ତାପର ପ୍ରଭାବରେ ପ୍ରଭାବିତ ହୋଇ ଭ୍ରମରେ ଭ୍ରମରମାନେ ଶୁଆର ଥଣ୍ଟକୁ ପଲାସ କଢ଼ ଭାବି ଚୁମ୍ବନ କରିବାକୁ ଗଲେ । ଶୁଆ କଳା ଭ୍ରମରକୁ ଦେଖି ଭାବିଲା, ବୋଧ ହୁଏ କାଦୁଆ ପାଣି ଟୋପାଟିଏ, ଏଣୁ ପିଇବା ପାଇଁ ମୁଖ ବିସ୍ତାର କଲା । ମୟୂର ପୁଚ୍ଛକୁ ତମାଳ ଛାଇ ମନେ କରି ସର୍ପମାନେ ଆସି ଶୟନ କଲେ । ମୟୂର ସେହି ସର୍ପମାନଙ୍କୁ ଦେଖି ମୃଣାଳ ବା ପଦ୍ମନାଡ଼ ବୋଲି ଭାବିଲେ । ପର୍ବତ ଖୋଲରେ ଶୋଇଥିବା ସିଂହର ଧଳାବର୍ଣ୍ଣ ହେତୁ ସ୍ୱର୍ଗ ଗଙ୍ଗା ପରି ଦେଖାଯାଉଥିଲା । ସିଂହ ବାରମ୍ବାର ପୁଚ୍ଛ ହଲାଇବାରୁ ମନେ ହେଲା ଯେ, ସେହି ସ୍ୱର୍ଗ ଗଙ୍ଗାରେ ଲହରୀ ଖେଳୁଛି । ଗଙ୍ଗାକୁ ଦେଖି ହାତୀ ଜଳପାନ ପାଇଁ ଆସିଲେ । ସିଂହ ହାତୀକୁ ଦେଖି ଭାବିଲେ ଯେ ପର୍ବତ ଶୃଙ୍ଗରୁ ମେଘ ଖଣ୍ଡିଏ ଆସୁଛି କି ? ପୁଣି ହାତୀର ଦାନଜଳ ଝରିବାର ଦେଖି ଆକାଶରେ ଉଡୁଥିବା ଚାତକ ପକ୍ଷୀ ମେଘ ପାଣି ମନେ କରି ତଳକୁ ଖସି ଆସିବାକୁ ଇଚ୍ଛା କଲା । ମୁନିମାନଙ୍କ ଆଶ୍ରମ ଯେପରି ହିଂସା ଶୂନ୍ୟ, ସେହିପରି ଗ୍ରୀଷ୍ମ କାଳ ପ୍ରକାଶ ପାଇବାରୁ ସକଳ ପ୍ରାଣୀମାନଙ୍କ ମଧ୍ୟରେ ଶତ୍ରୁତା ଭାବ ଥିଲେ ସୁଦ୍ଧା ହିଂସା ଶୂନ୍ୟ ହୋଇ କାଳ କଟାଇଲେ (କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ: ୧୮/୪-୧୮, ଛାନ୍ଦ ଭୂଷଣ: ୯/୨-୩, ସୁଭଦ୍ରା ପରିଣୟ: ୧୪/୧-୬) । ମଣିଷ ଶୀତଳତା ପ୍ରାପ୍ତି ପାଇଁ ଜଳ ଯନ୍ତ୍ରପୁରେ ରହିବାକୁ ଇଚ୍ଛା ପ୍ରକାଶ କଲେ ଓ ଅତର, ଚନ୍ଦନ, ଚୂଆ ମିଶ୍ରିତ ଶୀତଳ ଉପଚାରମାନ ପିଚିକାରିରେ ସେଚନ କରିବା ପାଇଁ ମନ ବଳାଇଲେ (ଲାବଣ୍ୟବତୀ: ୩୬/୨୩) । ଗ୍ରୀଷ୍ମ ତାପରୁ ରକ୍ଷା ପାଇବା ପାଇଁ ଲୋକେ ହସ୍ତରେ ତାଳବୃନ୍ତ ବା ବିଞ୍ଚଣା ବ୍ୟବହାର କଲେ । ଲୋକେ କର୍ପୂର, ଚନ୍ଦନ ବିଲେପନ ପୂର୍ବକ ଶୀତଳତା ପ୍ରବାହିତ ହେଉଥିବା ଅନ୍ତପୁରରେ ବାସ କଲେ । କବିଙ୍କର ଏପ୍ରକାର ବର୍ଣ୍ଣନା ସହୃଦୟ ପାଠକ ମନରେ ଆଲୋଡ଼ନ ସୃଷ୍ଟି କରିଛି:-

"କେତେ ରଞ୍ଜନ ବ୍ୟଞ୍ଜନ ପ୍ରଭଞ୍ଜନ ପରଶେ ଶାନ୍ତି କି ବିହିଲା,
ଜଳଯନ୍ତ୍ରପୁରେ କର୍ପୂର ଚନ୍ଦନ ମଣ୍ଡନରେ ଚିତ୍ତ ରହିଲା,
ଜାଣିଲି, ଶୁଚି ମୂର୍ତ୍ତିମନ୍ତ ହୋଇଲା ।,
ବିଦେଶ ନ ଯାଅ ବୋଲି ଜନଙ୍କୁ କି ରଜୋ ତୁଷାନଳେ ଥୋଇଲା ।"

(ଲାବଣ୍ୟବତୀ: ୯/୩)

ଗ୍ରୀଷ୍ମ ଋତୁରେ ଦିବସ ବୃଦ୍ଧି ପାଇଥାଏ । ଉକ୍ତ ପ୍ରସଙ୍ଗକୁ କବି କାବ୍ୟ ନାୟିକାର ସୌନ୍ଦର୍ଯ୍ୟରେ ବଶୀଭୂତ ହୋଇ ସୂର୍ଯ୍ୟ ରଥ ରଖିବାରୁ ଦିନ ବଡ଼ ହେଲା (ଲାବଣ୍ୟବତୀ: ୨/୬୦) ବୋଲି ବର୍ଣ୍ଣନା କରିଛନ୍ତି । ପ୍ରୋକ୍ତ ଋତୁରେ ରଜନୀ ମନୋହର ବା ରମଣୀୟ ଦେଖାଯାଇଥାଏ । ମଲ୍ଲି ଫୁଲ ପ୍ରସ୍ଫୁଟିତ ହୋଇ ଚଉଦିଗ ସୌରଭରେ ବିମୋହିତ କରିଥାଏ । ଝିଙ୍କାରିର ଶବ୍ଦ ଝମକ ଝମକ ପରି ଶୁଣାଯାଇଥାଏ । ଶିମୁଳି ପୁଷ୍ପ ଲାଲ ରଙ୍ଗର ରଞ୍ଜିତ ହୋଇ ଅନୁରାଗ ବଢ଼ାଇଥାଏ । ଏହି ଦୃଶ୍ୟକୁ ପୌଢ଼ା ଯୁବତୀ ଓ ବିଟ ପୁରୁଷଙ୍କର ସଂଯୋଗ ସହିତ ଏବଂ ଅର୍ଜୁନ ଓ ସୁଭଦ୍ରାଙ୍କ ସମାଗମ (ଲାବଣ୍ୟବତୀ: ୯/୧-୨, ୪୦/୩-୫, ସୁଭଦ୍ରା ପରିଣୟ: ୧୦/୩୦) ସହିତ ଉପମା ଦେଇ କବି ଉପମାନ୍ୱିତ କରିଛନ୍ତି ।

ଏତଦ୍‌ବ୍ୟତୀତ ଗ୍ରୀଷ୍ମ ଋତୁର ରାତ୍ରୀକାଳୀନ ଦୃଶ୍ୟକୁ ଉତ୍‌ପ୍ରେକ୍ଷାରେ ଉତ୍‌ପ୍ରେକ୍ଷିତ କରି ଏହାର ରମଣୀୟତା ଉଲ୍ଲେଖ କରିଛନ୍ତି । ରାତିରେ ଚନ୍ଦ୍ର ହୀରା ଚକ୍ର ପରି ଦୃଶ୍ୟମାନ ହୋଇଥାଏ ଓ ତା'ର ଜ୍ୟୋସ୍ନାମୟ କିରଣ ସ୍ଫଟିକ ଓ ମଲ୍ଲିମାଳ ପରି ଦେଖାଯାଇଥାଏ । ସୂର୍ଯ୍ୟକିରଣ ଦ୍ୱାରା ଜଗତବାସୀ ତାପିତ ହୋଇଥିବାରୁ ଚନ୍ଦ୍ର ଉଦୟ ହୋଇ ଶୀତଳ କିରଣ ଦ୍ୱାରା ଜଗତକୁ ଶାନ୍ତ ଉପଶମ କରେ । ପକ୍ଷାନ୍ତରେ ଏହି ଶୀତଳ କିରଣ ବିରହୀ-ବିରହିଣୀମାନଙ୍କୁ ବହୁ ସନ୍ତାପିତ କଲେ । ଏହି ମନୋହର ଦୃଶ୍ୟକୁ କବି ଉପେନ୍ଦ୍ର ଭଞ୍ଜ ଶ୍ରୀକୃଷ୍ଣଙ୍କ ସୁଦର୍ଶନ ଚକ୍ରକୁ ତାଙ୍କ ପୁତ୍ର କାମଦେବ ଉତ୍‌ପ୍ରେକ୍ଷିତ କରିବା ସହିତ (ଲାବଣ୍ୟବତୀ: ୧୧/୧-୩) ବର୍ଣ୍ଣନା କରିଛନ୍ତି ।

ଏହିଭଳି ଗ୍ରୀଷ୍ମ ଋତୁର ବିଭିନ୍ନ ପ୍ରାକୃତିକ ଦୃଶ୍ୟକୁ କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ସାଙ୍ଗପାଙ୍ଗ ଭାବେ ବର୍ଣ୍ଣନା କରିଯାଇଛନ୍ତି ।

*ଅଧ୍ୟାପକ, ଗଭର୍ଣ୍ଣମେଣ୍ଟ, ଜୁନିୟର କଲେଜ୍*
*ଟିକିଲି, ଶ୍ରୀକାକୁଲମ୍ ଜିଲ୍ଲା, ଆନ୍ଧ୍ରପ୍ରଦେଶ*
*ଦୂରଭାଷ: ୭୩୨୬୯୨୩୨୧୧, ୦୯୪୯୪୬୯୪୦୯୧*

# ସବୁ 'ଆଳୟ'ର ସମାହାର 'ବିଦ୍ୟାଳୟ'

ସୁକାନ୍ତ କୁମାର ମହାନ୍ତି

୧୯୫୮ ମସିହାରେ ହାଇସ୍କୁଲ ପ୍ରଧାନଶିକ୍ଷକମାନଙ୍କ ଏକ ସର୍ବେକ୍ଷଣରେ ଗୋଟିଏ ପ୍ରଶ୍ନ ପଚରା ଯାଇଥିଲା- ଆପଣଙ୍କ ପିଲାଙ୍କର ମୁଖ୍ୟ ସମସ୍ୟା ସବୁ କ'ଣ ? ଉତ୍ତର ଗୁଡ଼ିକ ହେଲା: ଘରପଢ଼ା ନକରିବା, ନିଜ ବ୍ୟବହାର୍ଯ୍ୟ ବସ୍ତୁ ପ୍ରତି ଉଦାସୀନ ହେବା, ବହି, ଖାତା, କଲମ ପ୍ରଭୃତି ନଷ୍ଟ କରିବା, ଶ୍ରେଣୀ ଛାଡ଼ିଲାବେଳକୁ ଆଲୁଅ ନ ଲିଭାଇବା, ଦୁଆର ଝରକା ଖୋଲା ରଖିବା, ଛେପରୁ ଫୋଟକା ବାହାର କରି ଶ୍ରେଣୀ ଗୃହରେ ଉଡ଼ାଇବା, ଅନ୍ୟମନସ୍କ ରହିବା, ସାଙ୍ଗମାନଙ୍କ ସହ ଝଗଡ଼ା କରିବା ଇତ୍ୟାଦି । ୩୦ ବର୍ଷ ପରେ ପୁନଶ୍ଚ ୧୯୮୮ ମସିହାରେ ସେଇ ଏକା ପ୍ରକାର ଉତ୍ତର ଥିଲା । ସ୍କୁଲରେ ହତ୍ୟା, ବନ୍ଧୁକ, ଛୁରୀ ଏବଂ ହିଂସାର ଭୟ, ପାଠପଢ଼ା ପ୍ରତି ଅନିଚ୍ଛା, ମାଦକ ଦ୍ରବ୍ୟ, ଧର୍ଷଣ, ଗର୍ଭପାତ, ଏଡସ୍ ପ୍ରଭୃତି ଅନୈତିକ କାର୍ଯ୍ୟରେ ସଂପୃକ୍ତି ଇତ୍ୟାଦି । ୨୦୧୮ ସାଲରେ କି ଉତ୍ତର ମିଳିବ ତାହା ସମସ୍ତେ ଜାଣନ୍ତି । ପତନୋନ୍ମୁଖୀ ଶିକ୍ଷା ବ୍ୟବସ୍ଥାର ମୂଳ କାରଣ ଆଜିର ବିଦ୍ୟାଳୟ ନିଜର ସ୍ଥିତି, ପ୍ରଗତି, କର୍ତ୍ତବ୍ୟ, ଦାୟିତ୍ୱବୋଧ ଓ ନୈତିକତା ହରାଇ ସାମାଜିକ ମୂଲ୍ୟବୋଧକୁ ବିପନ୍ନ କରିଚାଲିଛି; କାରଣ ଭଲ ମଣିଷ ତିଆରି କରିବାର କାରଖାନା ବିଦ୍ୟାଳୟ ହତାରେ ମୁଣ୍ଡ ଟେକି ଉଠିଛି ଭୋଜନାଳୟ, ବସ୍ତ୍ରାଳୟ, ଔଷଧାଳୟ, ପ୍ରେକ୍ଷାଳୟ, ପୁସ୍ତକାଳୟ ଶେଷରେ ଅତ୍ୟାବଶ୍ୟକ ଥିବା ଶୌଚାଳୟର ଭୟାବହତା । ଫଳରେ ଶୁଦ୍ଧ ଓ ସ୍ୱଚ୍ଛ ମଣିଷ ପ୍ରସ୍ତୁତି କ୍ରମଶଃ କଳୁଷିତ ହେବାରେ ଲାଗିଛି । 'ଭୋଜନାଳୟ'ର ମୁଖ୍ୟ ପ୍ରଧାନଶିକ୍ଷକ ପାଚିକା ଓ ସହକାରୀଙ୍କ ହାତରେ କ୍ରୀଡ଼ନକ । ଆହାର କେନ୍ଦ୍ର ପରି ଏହା ଏକ ହରିଲୁଟ୍ ବ୍ୟବସ୍ଥା । ଏହି ଭୋଜନାଳୟର ଗ୍ରାହକ ହେଲେ ଛାତ୍ରଛାତ୍ରୀ, କମିଟି ସଦସ୍ୟଗଣ ଓ ବିଭାଗୀୟ କର୍ମକର୍ତ୍ତା । ଏହି ଭୋଜନାଳୟର ଖାଦ୍ୟ, ଅପମିଶ୍ରିତ, ବିଷାକ୍ତ ହୋଇ ଛାତ୍ରଛାତ୍ରୀ ଅସୁସ୍ଥ ହେବା ନୂଆ କଥା ନୁହେଁ । ଶ୍ରେଣୀଶିକ୍ଷକ, ଦାୟିତ୍ୱରେ ଥିବା ଶିକ୍ଷକ ଖାଦକଙ୍କ ସଂଖ୍ୟା ବୃଦ୍ଧି କରିବା, ପ୍ରାପ୍ୟ ପାଇବାକୁ ପାଉଣା ଦେବା, କମିଟି ସଭ୍ୟଙ୍କୁ ଖୁସି କରିବା ପ୍ରଭୃତି ନୀତିହୀନ ବ୍ୟବସ୍ଥା ବିଦ୍ୟାଳୟ ବାତାବରଣକୁ ଦୂଷିତ କରିଥାଏ । ମାଗଣା ଖାଦ୍ୟ ଖୁଆଇ ଶସ୍ତା ମଣିଷଟିଏ ସୃଷ୍ଟି କରିବାରେ ପ୍ରଧାନଶିକ୍ଷକ ଖୁସି ହୋଇଥାନ୍ତି ।

ବିଷାକ୍ତ ଖାଦ୍ୟ ଖାଇ ଅସୁସ୍ଥ ହେଉଥିବା ବିଦ୍ୟାର୍ଥୀଙ୍କୁ ସ୍ୱାସ୍ଥ୍ୟ ପରୀକ୍ଷା ପାଇଁ ଖୋଲିଯାଇଛି ଔଷଧାଳୟ । ଆଇରନ୍ ଓ ଭିଟାମିନ୍ ବଟିକା ବାଣ୍ଟିବା ଫଳ ହେଲା ବିପରୀତ ।

ଏହି ବଟିକାଗୁଡ଼ିକୁ ଖାଇ ମୁଣ୍ଡ ବୁଲାଇବା, ବାନ୍ତି ହେବା, ଚେତନା ହରାଇବା ଅବସ୍ଥା ସୃଷ୍ଟି ହେଲା । ବଟିକା ବଣ୍ଟନ ବାତିଲ ହେଲା, ଦୃଷ୍ଟିଶକ୍ତି ପରୀକ୍ଷା ଚାଲିଛି । ହେଲେ ସେଇ ପରୀକ୍ଷା ରିପୋର୍ଟ ଗ୍ରହଣ କରିବାକୁ ଇଚ୍ଛୁକ ନୁହନ୍ତି ଅଭିଭାବକ । ଏପରିକି ଔଷଧ ଖାଇ ଦୃଷ୍ଟିଶକ୍ତି ହରାଇବା ମଧ ଦେଖିବାକୁ ମିଳୁଛି । ଔଷଧ ବିତରଣ, ଚକ୍ଷୁ ପରୀକ୍ଷା ନିମନ୍ତେ ବିନିଯୋଗ ହୋଇଥିବା ଅର୍ଥ ବରବାଦ ହେଲା ଏବଂ ଏଥିରେ ବିଦ୍ୟାଳୟ କେତେ ଉପକୃତ ହେଲା ସହଜରେ ଅନୁମେୟ । ଗଞ୍ଜାମ ଜିଲ୍ଲାର ସରକାରୀ ପ୍ରାଥମିକ ବିଦ୍ୟାଳୟ ପ୍ରଧାନଶିକ୍ଷକଙ୍କୁ ନିଲମ୍ବନ କରାଯାଇଛି ।

ଆଉ ଏକ ବିଭେଦକାରୀ ବ୍ୟବସ୍ଥା 'ବସ୍ତ୍ରାଳୟ' । ସବୁ ପିଲାଙ୍କ ପାଇଁ ପୋଷାକ ମଞ୍ଜୁର ନଥିବା ବେଳେ ଏହି ବଞ୍ଚିତ ଛାତ୍ରଛାତ୍ରୀଙ୍କ ପ୍ରତି ଦରଦ ଦେଖାଇବାକୁ ଯାଇ ଦୁର୍ନୀତିର ଆଶ୍ରୟ ନେବା ଜରୁରୀ । ବସ୍ତ୍ରର ଗୁଣବତ୍ତାକୁ ନେଇ ବିଭ୍ରାଟ ଦେଖାଦେଇଥାଏ ପ୍ରଧାନଶିକ୍ଷକ ଓ କିମିଟି ସଦସ୍ୟଙ୍କ ମଧ୍ୟରେ । ସ୍ୱଚ୍ଛତା ଓ ସଚ୍ଚୋଟପଣିଆକୁ ହତ୍ୟା କରି ଲାଭାଂଶ ବଣ୍ଟନରେ ତ୍ରୁଟି ହେଲେ ଦୁର୍ନୀତିଗ୍ରସ୍ତ ସଭ୍ୟଗଣ ହଟଚମଟ ସୃଷ୍ଟି କରିଥାଆନ୍ତି । ଛାତ୍ରଛାତ୍ରୀ, ଅଭିଭାବକ ଓ ଘରୋଇ ସ୍କୁଲ ବିଦ୍ୟାର୍ଥୀଙ୍କ ମଧ୍ୟରେ ଏକ ଅପସଂସ୍କୃତି ସୃଷ୍ଟି କରି ଶିକ୍ଷା ପରିବେଶ ତଥା ସାମାଜିକ ସମ୍ପର୍କ ତୁଟାଇବାରେ ସହାୟକ ହୋଇଥାଏ ଏହି ପୋଷାକ ପ୍ରଦାନ ବ୍ୟବସ୍ଥା । ବିଦ୍ୟାଳୟର ଅନ୍ୟତମ ବିକର୍ଷଣ ରୋଗ ସଂଗ୍ରହାଳୟ 'ଶୌଚାଳୟ' । ଟଲଷ୍ଟୟ୍‌ଙ୍କ ଆଶ୍ରମରେ ମହାତ୍ମାଗାନ୍ଧି ନିଜ ପାଇଖାନା ସଫା କରୁଥିବା ପଢ଼ିବାକୁ ମିଳେ । ବିଦ୍ୟାଳୟରେ ଶିକ୍ଷକ ଅବା ବିଦ୍ୟାର୍ଥୀ ବ୍ୟବହାର କରୁଥିବା ନିଜ ଶୌଚାଳୟ ସୁଇପର୍ ସଫା କରିଥାଏ । ଦୁଇଟି ପ୍ରମୁଖ ଅସାମାଜିକ କାର୍ଯ୍ୟରେ ଶୌଚାଳୟର ଆବଶ୍ୟକତା ଜରୁରୀ ହୋଇଥାଏ । ପରୀକ୍ଷା ସମୟରେ କପି ନେବା ଆଣିବା ଓ ଅନ୍ୟଟି ପୁଅ ଝିଅଙ୍କ ଅବାଧ ମିଳାମିଶା । ଏପରିକି ଶୌଚାଳୟ କାନ୍ଥରେ ଲିଖିତ ଅବାଞ୍ଛିତ ଲେଖା ଓ ଅସଭ୍ୟ ଚିତ୍ର ପ୍ରତି କାହାରି ନଜର ନଥାଏ । ଅନାବନା ଗୁଳ୍ମ ଭର୍ତ୍ତି, ଦୁର୍ଗନ୍ଧପୂର୍ଣ୍ଣ ଶୌଚାଳୟଟି ଅସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି କରିଥାଏ । ନିଜର ପାନୀୟ ପାଇଁ ବିଦ୍ୟାର୍ଥୀ ଓ ଶିକ୍ଷକମାନେ ପାଣିବୋତଲ ସାଥିରେ ଆଣୁଥିବା ପରି ଶୌଚ ସେବା ପାଇଁ 'ୟୁରୋବ୍ୟାଗ' ଝୁଲାଇ ଆସିବାକୁ ସରକାର ନିର୍ଦ୍ଦେଶ ଦେବା ଅପେକ୍ଷାକୃତ ଭଲ ହୁଅନ୍ତା । ନତୁବା ବିଷାକ୍ତ ଖାଦ୍ୟ ଓ ନିମ୍ନମାନର ବଟିକା ସହ ରୋଗର ଗନ୍ତାଘର ଶୌଚାଳୟ ଜୀବନ ନେବା ଅସମ୍ଭବ ନୁହେଁ । ବିଦ୍ୟାଳୟରେ ପ୍ରତ୍ୟହ ଖୋଲାଯାଇଥାଏ 'ପ୍ରେକ୍ଷାଳୟ' । ନାଟକରେ ଭାଗ ନେଉଥିବା ଅଭିନେତା ଅଭିନେତ୍ରୀ ବାସ୍ତବ ଜୀବନଠାରୁ ବହୁ ଦୂରରେ । ଛାତ୍ରଛାତ୍ରୀ ଦର୍ଶକ ସାଜୁଥିବାବେଳେ ଶିକ୍ଷକଶିକ୍ଷୟିତ୍ରୀ ସୁନ୍ଦର ଅଭିନେତା ସାଜିଛନ୍ତି । ପାଠ୍ୟ ବିଷୟ ଉପରେ ଆଦୌ ଧାରଣା ନଥିବା ଶିକ୍ଷକ ସେହି ବିଷୟ ପଢ଼ାଇଥାନ୍ତି । ବୃତ୍ତି ପରୀକ୍ଷା

ଦେବାକୁ ଅଯୋଗ୍ୟ ବିବେଚିତ ହୋଇଥିବା ଛାତ୍ର ବୃତ୍ତି ପାଇଥାଆନ୍ତି । ପ୍ରଧାନଶିକ୍ଷକ ହେବାର ଆଦୌ ଯୋଗ୍ୟତା ନଥିବା କେତେକ ବିଦ୍ୟାଳୟ ମୁଖ୍ୟ କେବଳ ପ୍ରେକ୍ଷାଳୟ ମାଲିକ ଦେଉଥିବାବେଳେ ନିର୍ଦ୍ଦେଶକ ଥାଆନ୍ତି ଶିକ୍ଷା କମିଟି ଓ ରାଜନେତା । ଲୋକଦେଖାଣିଆ ଭାବରେ ସବୁପ୍ରକାର ଦୁର୍ନୀତିରେ ବଦନାମ ହେଉଥିବା ରାଜନେତା ବିଦ୍ୟାଳୟର ଷଡ଼ଯନ୍ତ୍ରକାରୀ ଶିକ୍ଷକଙ୍କ ସହାୟତାରେ କର୍ମଚାରୀ ଓ ଅନୁଷ୍ଠାନର ବିଶେଷ କ୍ଷତି କରୁଥିବାବେଳେ ପ୍ରେକ୍ଷାଳୟରେ ଗଣ୍ଡଗୋଳ ହୋଇଥାଏ । ଧୂର୍ତ୍ତ ପ୍ରଧାନଶିକ୍ଷକ ଶ୍ରେଣୀକୁ ନ ଯାଇ ବେଶ୍ ଏକ ନାଟକ ରଚନା କରି ନିଜ ଚଉକିଟିକୁ ନିରାପଦରେ ରଖିଥାଆନ୍ତି । ଛାତ୍ରଛାତ୍ରୀଙ୍କୁ ଭେଳିକି ଦେଖାଇବା ପରି ରାଜନେତାଙ୍କ ନିର୍ଦ୍ଦେଶରେ କାମ କରିଚାଲନ୍ତି । ଏକ ସରକାରୀ ସ୍କୁଲରେ ସରକାରୀ ଅନୁଦାନ ବିନିଯୋଗ ହେଉଥିବାବେଳେ ସରକାରୀ ସ୍କୁଲ ପ୍ରଧାନଶିକ୍ଷକଙ୍କ ମତାମତକୁ ବେଖାତିର କରି ଅନୁଦାନ ରାଶି ଆତ୍ମସାତ କରିଥାଆନ୍ତି । ନାଟକ, ଚଳଚ୍ଚିତ୍ର ପ୍ରଦର୍ଶନରେ ଅଭିଯୋଗ ଆସିଲେ ମାଲିକ ଟିକଟ ମୂଲ୍ୟ ଫେରସ୍ତ କରିବା ପରି ବିଚରା ପ୍ରଧାନଶିକ୍ଷକ ଜେଲ୍ ଭୋଗିବା ନଜିର ଅଛି । ବେଳେବେଳେ ମାଲିକ ପ୍ରଧାନଶିକ୍ଷକ ଫେରାର ହୋଇଥାଆନ୍ତି, ଯାହାକି ନିର୍ଦ୍ଦେଶକ ରାଜନେତା ଓ ପ୍ରଧାନଶିକ୍ଷକଙ୍କ ନାଟକରେ ଦେଖିବାକୁ ମିଳେ ।

ଆଳୟ ସମୂହର ଶେଷଟି ଯାହାର ଗୁରୁତ୍ୱ, ପ୍ରଭାବ ଓ ଆବଶ୍ୟକତା ସୁଦୂରପ୍ରସାରୀ ସେଇଟି ଦୟନୀୟ ଅବସ୍ଥାରେ ଥିବା 'ପୁସ୍ତକାଳୟ ।' ଆଲମିରା ମଧ୍ୟରେ ନଜରବନ୍ଦୀ ଅବସ୍ଥାରେ ଥିବା ପୁସ୍ତକଗୁଡ଼ିକ କୀଟପତଙ୍ଗଙ୍କ ଖାଦ୍ୟ ଭାବେ ଦିନ କାଟୁଥାଆନ୍ତି । ପୁସ୍ତକ ବଣ୍ଟନ ଓ ପଠନ ଠାରୁ ବହୁ ଦୂରରେ ଶିକ୍ଷକ ଓ ଛାତ୍ର । ସମ୍ବାଦପତ୍ର ପଢୁନଥିବା ଶିକ୍ଷକ ପୁସ୍ତକପ୍ରିୟ ହେବ କିପରି ? କିଛି ପିଲା ତ ପଢ଼ନ୍ତେ ଓ ପ୍ରଭାବିତ ହୁଅନ୍ତେ । ଜଣେ ଶିକ୍ଷକଙ୍କ କାର୍ଯ୍ୟଧାରାକୁ ବିଶ୍ଳେଷଣ କଲେ ଜଣାଯାଏ "ଜଣେ ଶିକ୍ଷକ କହେ- ଭଲ ଶିକ୍ଷକ ବୁଝାଏ- ଉତ୍କୃଷ୍ଟ ଶିକ୍ଷକ କାମରେ କରି ଦେଖାଏ ଏବଂ ମହାନ୍ ଶିକ୍ଷକ ଉତ୍ସାହିତ କରେ ।" ସର୍ବୋପରି ପଢ଼ିବା ଓ ପଢ଼ାଇବା ମନୋଭାବ ନ ରହିଲେ ବିଦ୍ୟାଳୟରୁ 'ବିଦ୍ୟା' ହଟିଯାଇଥିବ ।

ଏତେଗୁଡ଼ିଏ ଆଳୟ ମଧ୍ୟରେ ପେଷି ହେଉଥିବା ଛାତ୍ରଛାତ୍ରୀ ଓ ଅଭିଭାବକ କେବଳ ଅପେକ୍ଷା କରିଛନ୍ତି ଏକ ଭରସାଯୋଗ୍ୟ ବିଧିନିର୍ଦ୍ଦିଷ୍ଟ ପ୍ରଳୟକୁ । କେବଳ ଶିକ୍ଷକମାନେ ନିଜକୁ ଉତ୍ତରଦାୟୀ କରିବାରେ ସମର୍ଥ ହେଲେ ସବୁ ବିଷୟ ଆଳୟ ମଧ୍ୟରେ ଏକ ଗୁଣାତ୍ମକ ବଳୟ ସୃଷ୍ଟି ହୋଇପାରିବ ।

*ସାତପୁରା, ଜଗତସିଂହପୁର*
*ଫୋନ- ୯୪୩୭୦୨୨୫୦୫*

# କେତେ ସୁରକ୍ଷିତ ଆମ ପୃଥିବୀ

ସୁଶିଳା ପଟେଲ (୩୮୯)

ବିଚିତ୍ର ଏ ପୃଥିବୀ, ଧନ୍ୟ ଏ ଧର୍ମ, ଧନ୍ୟ ଭଗବାନ, ଧନ୍ୟ ତାଙ୍କର ଖେଳାଲୀଳା । ପୃଥିବୀ ସୃଷ୍ଟି ହେଲାପରେ ଜଳ, ସ୍ଥଳ, ପାହାଡ, ପର୍ବତ, ଜଙ୍ଗଲ, ସମୁଦ୍ର ଇତ୍ୟାଦି ସୃଷ୍ଟି ହେଲା । ଏ ସବୁ ସୃଷ୍ଟିର ପରେ ପରେ ପୃଥିବୀ ପୃଷ୍ଠରେ ଜୀବ ଜଗତ, ମନୁଷ୍ୟ, ପଶୁପକ୍ଷୀ, ସମୁଦ୍ର ଭିତରେ ମଧ୍ୟ ଅନେକ ପ୍ରକାରର ପ୍ରାଣୀ ସୃଷ୍ଟି ହେଲେ । ଯେତେବେଳେ ମନୁଷ୍ୟ ପୃଥିବୀପୃଷ୍ଠକୁ ଆସିଲା ସେତେବେଳେ କୌଣସି ଧର୍ମ ନଥିଲା ସେତେବେଳେ ମନୁଷ୍ୟ ଲଙ୍ଗଳା ହୋଇ ପଶୁପକ୍ଷୀମାନଙ୍କର ମାଂସ ଖାଇ ଜୀବନ ଧାରଣ କରୁଥିଲା । ସେମାନେ କୌଣସି ଧର୍ମ ଓ ଭଗବାନ ବୋଲି ଜାଣିନଥିଲେ । ରାମ ଭଗବାନ, ଯିଶୁଖ୍ରୀଷ୍ଟ, ମହମ୍ମଦ ଏମାନେ ପୃଥିବୀ ପୃଷ୍ଠରେ ଜନ୍ମ ହୋଇନଥିଲେ । ଏମାନଙ୍କ ପୂର୍ବରୁ ପୃଥିବୀ ଚାଲୁଥିଲା । କିଏ ଜଣେ ତ ଈଶ୍ୱର ଥିଲେ ଯିଏ କି ସାରା ବିଶ୍ୱ ବ୍ରହ୍ମାଣ୍ଡରେ ନାନା ପ୍ରକାର ସୃଷ୍ଟି କରି ଚାଲିଥିଲେ ଓ ତାକୁ ପରିଚାଳନା କରୁଥିଲେ । ସେତେବେଳେ ତ ପୃଥିବୀ ଚାଲୁଥିଲା । ତେଣୁ ଆଜି ବି ପୃଥିବୀରେ ଏକମାତ୍ର ଭଗବାନ ଅଛନ୍ତି ଓ ସାରା ପୃଥିବୀକୁ ପରିଚାଳନା କରୁଛନ୍ତି ।

ସୃଷ୍ଟି ହେବାର ସଙ୍ଗେ ସଙ୍ଗେ ରାମ ଭଗବାନଙ୍କର, ଯୀଶୁଖ୍ରୀଷ୍ଟ ଓ ମହମ୍ମଦ, ବୁଦ୍ଧଙ୍କର ଜନ୍ମ ହୋଇନଥିଲା । କି ହିନ୍ଦୁ ଧର୍ମ, ମୁସଲମାନ ଧର୍ମ କି ଖ୍ରୀଷ୍ଟିଆନ, ବୌଦ୍ଧ ଧର୍ମର ସୃଷ୍ଟି ହୋଇନଥିଲା । ସେତେବେଳେ କେମିତି ଥିଲା ଏ ପୃଥିବୀ । ଏହି କଥାକୁ ଅନ୍ତରରେ ଥରେ ହୃଦୟର ସହିତ ବିଚାର କରେନି ମନୁଷ୍ୟ । ସାରା ପୃଥିବୀର ଭଗବାନ ଯେ ଏକ ଓ ସବୁଠୁ ବଡ ଧର୍ମ ହେଉଛି ମାନବ ଧର୍ମ । ମନୁଷ୍ୟ ଏହି କଥାକୁ କେବେ ହେଲେ ଗ୍ରହଣ କରେନି ।

ସୃଷ୍ଟିର ବହୁବର୍ଷ ପରେ ହିନ୍ଦୁ ଧର୍ମର ସୃଷ୍ଟି ହେଲା । ସତ୍ୟଯୁଗ ସୃଷ୍ଟି ହେଲା ଓ ପରେ ତ୍ରେତୟା ଯୁଗର ସୃଷ୍ଟି ହୋଇ ରାମ ଭଗବାନଙ୍କର ଜନ୍ମ ହେଲା । ହିନ୍ଦୁଧର୍ମ, ଖ୍ରୀଷ୍ଟଧର୍ମ ଓ ମୁସଲମାନ ଧର୍ମ ଜନ୍ମ ନେଲା । ଏୟା ଆଗରୁ ଦ୍ୱାପର ଯୁଗରେ କୃଷ୍ଣ ଭଗବାନଙ୍କର ଜନ୍ମ ହୋଇଥିଲା । ଭଗବାନ ବୁଦ୍ଧଙ୍କର ଜନ୍ମ ପରେ ବୌଦ୍ଧ ଧର୍ମର ସୃଷ୍ଟି ହେଲା । ପରେ ସାରା ପୃଥିବୀଟା ମହାଦେଶ ଗୁଡିକରେ ବିଭକ୍ତ ହେଲା । ମହାଦେଶ ଗୁଡ଼ିକ ଦେଶରେ ବିଭକ୍ତ ହେଲାପରେ ଦେଶ ଗୁଡ଼ିକ ରାଜ୍ୟରେ ବିଭାଜିତ ହେଲା । ଏହି ସମୟରେ ମନୁଷ୍ୟମାନେ

ନିଜ ନିଜର ଦେଶ ଆବୋରି ନେଲେ । କେତେ ଦେଶରେ ହିନ୍ଦୁଧର୍ମ ରହିଲା କେତେ ଦେଶକୁ ଖ୍ରୀଷ୍ଟଧର୍ମବାଲେ ଓ ଆଉ କେତେ ଦେଶକୁ ମୁସଲମାନ ଧର୍ମବାଲେ ଆବୋରିନେଲେ ।

ଧନ୍ୟରେ ମାନବ ! ଆଜି ସମସ୍ତେ ଧର୍ମାନ୍ଧ । ଆଜିର ଯୁଗରେ ନିଜ ଧର୍ମର ପ୍ରସାର ଲାଗି ଅନ୍ୟ ଦେଶ ଗୁଡିକ ଭିତରେ ଜବରଦସ୍ତି ପ୍ରବେଶ କରୁଛନ୍ତି ଓ ନିଜ ଧର୍ମ ପ୍ରଚାରରେ ଲାଗିଛନ୍ତି । ଅନ୍ୟ ଦେଶକୁ ଯାଇ ନିଜ ଧର୍ମ ଗ୍ରହଣ କରିବା ପାଇଁ ଲୋକଙ୍କୁ ବୁଝାଉ ଅଛନ୍ତି ଓ ଲୋକଙ୍କୁ ଟଙ୍କା ପଇସା ଦେଇ ଧର୍ମ ପ୍ରଚାର କରି ଚାଲିଛନ୍ତି । ନିଜ ଧର୍ମକୁ ଅନ୍ୟ ଲୋକମାନଙ୍କୁ ଗ୍ରହଣ କରିବା ପାଇଁ ବାଧ୍ୟ କରୁଛନ୍ତି । ନୋହିଲେ ବୋମା ବିସ୍ଫୋରଣ କରି ବନ୍ଧୁକ ମୂନରେ ଅନ୍ୟ ଦେଶର ଲୋକମାନଙ୍କୁ ହଜାର ହଜାର ସଂଖ୍ୟାରେ ମାରୁଛନ୍ତି । ନିଜ ଦେଶର ସୀମାକୁ ବଢ଼ାଇବା ପାଇଁ ଅନ୍ୟ ଦେଶ ଉପରେ ଯୁଦ୍ଧ କରି ଚାଲିଛନ୍ତି ।

ଏକେତ ପୃଥିବୀ ଏତେ ସମସ୍ୟା ବହୁଳ ହୋଇଯାଇଅଛି ଯେ ଲୋକମାନେ ନିଜ ଦେଶରେ ବସବାସ କରିବାକୁ ଜୀବନକୁ ଅସୁରକ୍ଷିତ ମଣୁଛନ୍ତି । ଏବେ ଧର୍ମ ପାଇଁ ମନୁଷ୍ୟ ଏତେ ପାଗଳ ଯେ ପରସ୍ପର ଭିତରେ ଖାଲି ମରାମରି ହଣାକଟା, କିଏ କାହାର ଧର୍ମସ୍ଥାନ ଭାଙ୍ଗିପାରିବ ଏହି ଚେଷ୍ଟାରେ ଲାଗିରହିଛନ୍ତି । ଉଦାହରଣ ସ୍ୱରୂପ ନିଆଯାଉ ଆମ ଭାରତର ବାବରୀ ମସ୍‌ଜିଦ୍ ଭଙ୍ଗା ଘଟଣା, ପାକିସ୍ତାନ ଓ ବାଙ୍ଗଲାଦେଶର ନିଜ ଧର୍ମ ଛଡା ଅନ୍ୟ ଧର୍ମ ଗୁଡ଼ିକର ମନ୍ଦିର ଭଙ୍ଗା ଘଟଣା, ତାଲିବାନମାନଙ୍କର ଆଫଗାନିସ୍ଥାନରେ ଥିବା ପ୍ରଭୁ ବୁଦ୍ଧଙ୍କର ବଡ ବଡ ମୂର୍ତ୍ତି ଭଙ୍ଗା ଘଟଣା । ଏ ଗୁଡିକ ମାନବ ମନର ବିକୃତ ମାନସିକତା ନୁହେଁ କି । ଅନ୍ୟ ଧର୍ମର ମନ୍ଦିର ଭାଙ୍ଗିଦେଇ କ'ଣ ପାଆନ୍ତି ସେଥିରୁ । ଏପରି ଅନ୍ୟ ଧର୍ମ ସମ୍ପ୍ରଦାୟର ମନରେ ଆଘାତ ଦିଅନ୍ତି ସିନା । ଆଗ କାଳରେ ମୁସଲମାନ ସମ୍ରାଟମାନେ ଆସି ଭାରତର ବଡ ବଡ ମନ୍ଦିର ଭିତରୁ ଧନ ସମ୍ପତ୍ତି ଲୁଟିନେଇଯାଉଥିଲେ । ମାମୁଦ୍ ସୋମନାଥ ମନ୍ଦିରକୁ ୧୭ଥର ଲୁଣ୍ଠନ କରିଥିଲେ । ପୁଣି ତାଲିବାନମାନେ ଆଫଗାନିସ୍ଥାନରେ ଥିବା ବୁଦ୍ଧଙ୍କ ସବୁଠାରୁ ବଡ଼ ପ୍ରତିମାକୁ ଭାଙ୍ଗିଦେଲେ । ଏମିତି କାର୍ଯ୍ୟ କରି ଲୋକମାନେ କି ଲାଭ ପାଆନ୍ତି କେଜାଣି । ଯଦିଓ ଆଜିର କାଳରେ ଗୋଟିଏ ମାନବ ଧର୍ମ ଅନେକ ଧର୍ମରେ ପରିଣତ ହୋଇଗଲାଣି । ଲୋକେ ଏତେ ଧର୍ମାନ୍ଧ ହୋଇଗଲେଣି ଯେ ଧର୍ମ ନାମରେ ନାନା ପ୍ରକାର ଲୁଟ୍‌ତରାଜ ଚଳାଇଛନ୍ତି । ପୃଥିବୀରେ ଜନ୍ମ ନେଇଥିବା ସାରା ମାନବ ଏକ ଓ ସମସ୍ତଙ୍କର ଦେହରେ ସମାନ ରକ୍ତ ବହୁଛି । କେହି କାହାଠାରୁ ଭିନ୍ନ ନୁହନ୍ତି । ଏ କଥାକୁ ଏବେ ମାନବ ଆଉ ଆଦୌ ଗ୍ରହଣ କରୁନାହିଁ ।

କୌଣସି ଧର୍ମରେ ଉଲ୍ଲେଖ ନାହିଁ ଯେ ପରସ୍ପର ଭିତରେ ହିଂସା କର ଓ ମରାଧରା ହୁଅ । ହିନ୍ଦୁ ସମାଜର ଗୀତା, ଖ୍ରୀଷ୍ଟଧର୍ମର ବାଇବେଲ୍, ମୁସଲିମମାନଙ୍କର କୋରାନ, ଏହିସବୁ ବଡ ଗ୍ରନ୍ଥମାନଙ୍କରେ ଏକା ଉପଦେଶ ଦିଆଯାଇଅଛି । ମଣିଷ ମଣିଷକୁ ହିଂସା କରନାହିଁ । ଜାତିଧର୍ମ ବର୍ଣ୍ଣ ନିର୍ବିଶେଷରେ ସବୁ ମଣିଷ ସମାନ । କିନ୍ତୁ ଏବେ ଧର୍ମ ଗ୍ରନ୍ଥମାନଙ୍କର କଥା ମାନବ ଆଦୌ ମାନୁନାହିଁ । ଧନ୍ୟରେ ମାନବ, ଧନ୍ୟ ତୋର ଅହଂକାର ଓ ଧନ୍ୟ ତୋର ଗର୍ବ ଓ ଗରିମା, କେତେଦିନ ଧରି ପୃଥିବୀରେ ବଞ୍ଚିବୁ ।

ଏବେ ସାରା ପୃଥିବୀରେ ନାରୀମାନେ ଆଦୌ ସୁରକ୍ଷିତ ନୁହନ୍ତି । ସେମାନଙ୍କର ଆଦୌ ସ୍ୱାଧୀନତା ନାହିଁ । ଏହି ନିଷ୍ଠୁର ମାନବ ସମାଜ ତାଙ୍କୁ ଧର୍ଷଣ କରିଚାଲିଛନ୍ତି । ଯେଉଁ ମାଆ ଠାରୁ ତାଙ୍କର ଜନ୍ମ ସେହି ମାଙ୍କୁ ସମସ୍ତେ ଧର୍ଷଣ କରନ୍ତି ଓ ପରେ ପୋଡ଼ି ଜାଳି ମାରିଦେଉଅଛନ୍ତି । ଏସବୁ କ'ଣ ଧର୍ମ ଗ୍ରନ୍ଥମାନଙ୍କରେ ଉଲ୍ଲେଖ ଅଛି ।

ଏବେ ପୃଥିବୀରେ ସବୁ ଜାଗାରେ ବୋମା ବିସ୍ଫୋରଣ କରି ଲୋକଙ୍କୁ ଲୋକମାନେ ହିଁ ମାରି ଚାଲିଅଛନ୍ତି । ୧୯୯୩ ମସିହାରେ ଭାରତର ମୁମ୍ବେଇରୁ ଅନେକ ଜାଗାରେ ବୋମା ବିସ୍ଫୋରଣ ହୋଇଥିଲା । ଅକାରଣରେ ହଜାର ହଜାର ଲୋକ ମରିଗଲେ ତା'ର କଳନା ନାହିଁ । ପୁଣି ୨୦୦୧ ସେପ୍ଟେମ୍ବର ୧୧ ତାରିଖରେ ଓସାମା ବିନ୍ ଲାଦେନର ପ୍ରରୋଚନାରେ ଆମେରିକାର ଟ୍ରେଡ୍ ଟାୱାର ଉପରେ ଆତ୍ମଘାତିମାନେ ବିମାନ ସାହାଯ୍ୟରେ ଉଡାଇଦେଇଥିଲେ । ସେଥିରେ ବି ହଜାର ହଜାର ଲୋକଙ୍କର ମୃତ୍ୟୁ ଘଟିଥିଲା ।

ପୁଣି ଭାରତରେ ଆତଙ୍କବାଦୀମାନ ଆରବ ସାଗର ମଧ୍ୟ ଦେଇ ପାକିସ୍ତାନରୁ ଆସି ସମୁଦ୍ର ପଥରେ ମୁମ୍ବେଇରେ ପହଞ୍ଚି ଷ୍ଟେସନରେ ଆଖିବୁଜା ଗୁଳି ଚାଳନା କରି ଟ୍ରେନରେ ଯିବା ପାଇଁ ବସିଥିବା ଲୋକଙ୍କୁ ମାରିଥିଲେ । ପରେ ତାଜ ହୋଟେଲ, ନରିମନ୍ ହାଉସ୍, ଟ୍ରାଇଡେଣ୍ଟ୍ ହୋଟେଲରେ ପଶି ଶହ ଶହ ଲୋକଙ୍କ ଜୀବନ ନେଇଥିଲେ । ଲୋକଙ୍କ ଆର୍ତ୍ତଚିତ୍କାର, ତାଙ୍କର କରୁଣ ବିଳାପ ଟିକିଏ ବି ତାଙ୍କର ହୃଦୟକୁ ଛୁଇଁନଥିଲା । କେତେ ନିଷ୍ଠୁର ସେମାନେ, ମଣିଷର ରକ୍ତରେ ହୋଲି ଖେଳନ୍ତି । କାହାରି ଆର୍ତ୍ତନାଦ ସେମାନଙ୍କ କାନରେ ପଶିଲା ନାହିଁ । କେତେ ଯେ ଅମୁଲ୍ୟ ଜୀବନକୁ ମାରିଦେଇଛନ୍ତି ଭାବିଲେ ହୃଦୟ ଆର୍ତ୍ତନାଦରେ କମ୍ପିତ ହୋଇଉଠୁଛି ।

ଏଇଟି ହେଉଛି ଆଜିର ଧର୍ମର ପ୍ରଭାବ । ଲୋକମାନେ ଧର୍ମମାନଙ୍କର ମୂଳମନ୍ତ୍ର ଛାଡ଼ିଦେଇ, ସମଗ୍ର ପୃଥିବୀର ଲୋକେ ହିଂସାରେ ମାତି ଖାଲି ଲୋକ ମାରିବାରେ ଲାଗିଛନ୍ତି ।

ସବୁ ଧର୍ମରେ ହିଂସା ଛାଡି ସତ୍ୟକୁ ନେଇ ଦୁନିଆଁରେ ଚାଲ, ଏହି ମୂଳମନ୍ତ୍ରକୁ କାହାରି ଚିନ୍ତା ନାହିଁ । ଧର୍ମର ମୂଳ ମନ୍ତ୍ର ସମସ୍ତେ ପାଶୋରି ଦେଲେଣି । ଖବର କାଗଜ ପଢ଼ିଲେ ଆଜି ଆମେରିକାରେ କାଲି ରୁଷିଆରେ, ଜର୍ମାନୀରେ, ଇଂଲଣ୍ଡରେ ପାକିସ୍ତାନ ଭାରତ ଆଫଗାନିସ୍ତାନରେ ବୋମା ବିସ୍ଫୋରଣ ହେଲା, ପାକିସ୍ତାନର ସୈନ୍ୟ ଭାରତକୁ ପଶି ଦୁଇଟି ଜବାନଙ୍କର ମୁଣ୍ଡ କାଟି ପାକିସ୍ତାନକୁ ନେଇଗଲେ । ଏସବୁ ଦେଖିଲେ ପୃଥିବୀ କେତେଦିନ ଆଉ ବଞ୍ଚିବ କେହି କହିପାରିବେ ନାହିଁ । ବହୁତ ଅଳ୍ପ ଦିନରେ ପୃଥିବୀ ଧ୍ୱଂସ ହୋଇଯିବ ଏକଥା ନିରାଟ ସତ୍ୟ । ମଣିଷ ହିଁ ନିଜକୁ ନିଜେ ଧ୍ୱଂସ କରିଦେବ । ଧନ୍ୟରେ ମଣିଷ, ଧନ୍ୟ ତା'ର ଧର୍ମ ।

*ଅବସରପ୍ରାପ୍ତ ପ୍ରଧାନ ଶିକ୍ଷୟିତ୍ରୀ*
*କେଶାଇ ବାହାଲ, ସମ୍ବଲପୁର-୭୬୮୨୨୮*
*ମୋ: ୯୪୩୭୭୩୮୧୫୩*

# ନୈତିକତାର ଅଧୋପତନ

ମଞ୍ଜୁ ଦାସ (୧୮)

ମନୁଷ୍ୟର ଜୀବନ କ୍ଷଣସ୍ଥାୟୀ । ଏଇ ମାଟିର ଶରୀର ଦିନେ ମାଟିରେ ମିଶିବ । ତଥାପି ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଶ୍ରେଷ୍ଠ ପ୍ରାଣୀ ମନୁଷ୍ୟ ବୋଲି ସମସ୍ତଙ୍କୁ ଜଣା । ପୁନଶ୍ଚ ବହୁ ପୁଣ୍ୟ ଥିଲେ ମନୁଷ୍ୟ ଜନ୍ମ ମିଳିବା କଥା ମଧ୍ୟ ଆମ ପୁରାଣ ଗ୍ରନ୍ଥରେ ଉଲ୍ଲେଖ ରହିଛି । ଅନ୍ୟ ପ୍ରାଣୀଙ୍କ ସହିତ ମନୁଷ୍ୟ କେତେକାଂଶରେ ସମାନ ହୋଇଥିଲେ ହେଁ କେତୋଟି ସ୍ୱତନ୍ତ୍ର ଗୁଣ ଯୋଗୁଁ ମନୁଷ୍ୟକୁ ଶ୍ରେଷ୍ଠ ପ୍ରାଣୀର ଆଖ୍ୟା ଦିଆଯାଇଛି । ତାହାହେଲା ଜ୍ଞାନ ଓ ବିବେକ । ଯାହାକି ଇତର ପ୍ରାଣୀଙ୍କ ଠାରେ ପରିଲକ୍ଷିତ ହୁଏ ନାହିଁ । ମାତ୍ର ଏସବୁ ସତ୍ତ୍ୱେ ବର୍ତ୍ତମାନ ମନୁଷ୍ୟର କାର୍ଯ୍ୟକଳାପ, ଚିନ୍ତାଧାରା ଓ ବ୍ୟବହାର ଏତେ ମାତ୍ରାରେ ନିମ୍ନଗାମୀ ହେଲାଣି ଯେ ସେ ଇତର ପ୍ରାଣୀଙ୍କ ସହ ସମାନ ହେଲାଣି ବୋଲି ଅନୁଭୂତ ହୁଏ ।

ଏହି ଶ୍ରେଷ୍ଠ ପ୍ରାଣୀ ମନୁଷ୍ୟ ଆଜି କାହିଁକି ଏତେ ତଳସ୍ତରକୁ ଯାଇଛି ବା ଯାଉଛି ଏହାର କାରଣ ଯେଉଁମାନଙ୍କୁ ଜଣାନାହିଁ ସେମାନଙ୍କର ଯେ ନୈତିକତାର ଅଧୋପତନ ଘଟିଛି, ଏହା ନିଃସନ୍ଦେହରେ କୁହାଯାଇପାରେ । କାରଣ ନୀତିନିଷ୍ଠ ବ୍ୟକ୍ତିଟିଏ ସତ୍ କାର୍ଯ୍ୟ ଓ ସତ୍ ପଥରୁ କେବେ ବି ବିଚ୍ୟୁତ ହୁଏ ନାହିଁ । ଯେତେ ଦୁଃଖ, କଷ୍ଟ, ବାଧା, ବିଘ୍ନ ଆସିଲେ ମଧ୍ୟ ସେ ତା'ର ନୈତିକ ଶକ୍ତି ବଳରେ ଦୃଢ଼ ରହି କର୍ତ୍ତବ୍ୟ ସମ୍ପାଦନ କରେ ଏବଂ ଏହାର ଫଳ ତାକୁ ସଫଳତାର ଶୀର୍ଷରେ ପହଞ୍ଚାଏ ।

ଇତର ପ୍ରାଣୀ ପକ୍ଷୀ ଓ ପଶୁଙ୍କ ଠାରୁ ଯେଉଁ ଶିକ୍ଷା ମିଳେ ତାହା ମନୁଷ୍ୟ ଠାରେ ଯଦି ପ୍ରତିଫଳିତ ହେଉଥାଆନ୍ତା ତେବେ ମନୁଷ୍ୟର ଏଭଳି ଅଧୋଗତି ହୁଅନ୍ତା ନାହିଁ । ଏହାର ଉଦାହରଣ ଆମେ ନିତିପ୍ରତି ଅନୁଭବ କରୁଥିଲେ ହେଁ ଏଥିପ୍ରତି ସେତେଟା ଗୁରୁତ୍ୱ ଦେଇନଥାଉ । ଏଠାରେ ମୋର ନିଜ ଅନୁଭୂତି ସମ୍ପର୍କରେ କଥାଟିଏ ଉଲ୍ଲେଖ କରୁଛି । ପ୍ରତିଦିନ ସକାଳେ ମୋର ଚା' ଜଳଖିଆ ଗ୍ରହଣ କରିବା ପୂର୍ବରୁ ଦୁଇଖଣ୍ଡ ରୁଟିର ଟୁକୁରା ଘରର ଚାଳ ଉପରକୁ କାଉମାନେ ଖାଇବା ଉଦ୍ଦେଶ୍ୟରେ ପକାଇଥାଏ । ସେହି ସମୟରେ ଚାଳ ଉପରେ ପ୍ରାୟ ଦଶରୁ ଅଧିକ କାଉ ଅପେକ୍ଷା କରିଥାନ୍ତି । ମୁଁ ଲକ୍ଷ୍ୟ କରେ ସେମାନେ କିଛି ଖାଆନ୍ତି ଓ ଆଉ କିଛି ଥଣ୍ଟରେ ନେଇଯାଆନ୍ତି । ଏହା ନିର୍ଦ୍ଦିଷ୍ଟ ଗୋଟିଏ ସମୟର ଘଟଣା । ମାତ୍ର ଯେଉଁଦିନ ମୋର ଏହି ସମୟର କିଛି ପରିବର୍ତ୍ତନ ଘଟେ ଅର୍ଥାତ୍ ପାଞ୍ଚ ସାତ ମିନିଟ୍ ବିଳମ୍ବ ହୋଇଯାଏ ତେବେ ସେଦିନ ପ୍ରାୟ ଗୋଟିଏ କାଉ ଚାଳ ଉପରେ ବସିଥାଏ । ମୁଁ ରୁଟି ପକାଇବା ମାତ୍ରେ ସେ ଉଡ଼ି ପଳାଇଯାଏ । ପ୍ରଥମଥର ଯେବେ ଏ ଘଟଣା ମୁଁ ଲକ୍ଷ୍ୟ କଲି ମୋ ମନ ଖୁବ୍ ଦୁଃଖ ହେଲା । କାରଣ କାଉଟି କିଛି ନଖାଇ ଚାଲିଗଲା ।

ମୋତେ ଏଥିପାଇଁ ଖାଇବାକୁ ଇଚ୍ଛା ହେଲା ନାହିଁ । ମନ ଦୁଃଖରେ ଘର ଭିତରକୁ ପଶୁ ପଶୁ କାଉମାନଙ୍କର କାଆ କାଆ ଶବ୍ଦରେ ଫେରି ଚାହିଁଲି । ଯାହା ଦେଖିଲି ଖୁସିର ସୀମା ରହିଲାନି । ପ୍ରାୟ କୋଡ଼ିଏ ପଚିଶଟି କାଉ ଏକ ସଙ୍ଗରେ ଆସି ଚାଳ ଉପରୁ ସମସ୍ତ ରୁଟିର ଟୁକୁରା ଥଣ୍ଟରେ ଧରି ଉଡ଼ିଚାଲିଗଲେ । ମୁଁ ଯେତିକି ଖୁସି ହେଲି ତା'ଠାରୁ ଅଧିକ ଆଶ୍ଚର୍ଯ୍ୟ ହେଲି । କାରଣ ସେମାନେ ଇତର ପ୍ରାଣୀ ହେଲେ ମଧ୍ୟ ସେମାନଙ୍କ ଉଚ୍ଚ ବିବେକବୋଧ ନିଶ୍ଚିତ ଭାବେ ଶ୍ରେଷ୍ଠ ପ୍ରାଣୀ ମନୁଷ୍ୟ ଠାରୁ କାହିଁ କେତେଗୁଣ ଉନ୍ନତ ବୋଲି କୌଣସି ସଂଶୟ ଆଉ ନଥିଲା । ସମସ୍ତେ ମିଳିମିଶି ଖାଇବାରେ ଯେଉଁ ଆନନ୍ଦ ତାହା ବ୍ୟକ୍ତିଗତ ସ୍ୱାର୍ଥ ଠାରୁ ଯେ ବହୁ ଊର୍ଦ୍ଧ୍ୱରେ ଏକଥା ସେମାନଙ୍କ ଠାରୁ ଶିଖିବା ଉଚିତ୍ । ସବୁଠାରୁ କ୍ଷୁଦ୍ର ପ୍ରାଣୀ ପିମ୍ପୁଡ଼ିକୁ ମଧ୍ୟ ଲକ୍ଷ୍ୟ କରିଥିବେ ଯେ ସେମାନଙ୍କ ଠାରୁ ଶହେଗୁଣ ଅଧିକ ଓଜନର ମୃତ ଜୀବଟିଏର ସନ୍ଧାନ ପାଇଲେ ଶହ ଶହ ପିମ୍ପୁଡ଼ି ଏକ ସଙ୍ଗରେ ମିଶି ତାକୁ ଘୋଷାରି ଘୋଷାରି ମାଟି ତଳକୁ ନେଇଯାଆନ୍ତି । ସେମାନେ ଆମ ଭଳି ଶିକ୍ଷାନୁଷ୍ଠାନରେ ଅଧ୍ୟୟନ କରିନାହାନ୍ତି ବା କହିବାର ଶକ୍ତି ପ୍ରାପ୍ତ ହୋଇନାହାନ୍ତି । ତଥାପି ସେମାନଙ୍କୁ ଏସବୁ ନୈତିକ ଶିକ୍ଷା କିଏ ଶିଖାଇଛି ? ଏସବୁର ଉତ୍ତର ନିଶ୍ଚିତ ଭାବେ ଗୋଟିଏ ଏବଂ ତାହା ହେଉଛି ସେହି ସର୍ବଶକ୍ତିମାନ୍ ଐଶ୍ୱରିକ କରୁଣା । ଯିଏ ସୃଷ୍ଟି କରିଛନ୍ତି ଏ ଧରାଧାମକୁ ଓ ସମଗ୍ର ପ୍ରାଣୀ ଜଗତକୁ ।

ବର୍ତ୍ତମାନ ଆଲୋଚନା କରିବା ଏ ନୈତିକତା କ'ଣ ଏବଂ ଏହା ଯୋଗୁ ଆମର ଲାଭ କ'ଣ ହୁଏ ? ଯେଉଁ ଶିକ୍ଷା ଆମକୁ ସତ୍ କର୍ମ କରିବାକୁ, ସତ୍ୟ କହିବାକୁ, ପରକୁ ବିପଦରେ ସାହାଯ୍ୟ କରିବାକୁ, ଅନ୍ୟାୟ ଅନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ, ଗୁରୁଜନଙ୍କୁ ସମ୍ମାନ ଦେବାକୁ ଓ ମୋଟ୍ ଉପରେ ଅନ୍ୟ ପାଇଁ ଦୁଃଖର କାରଣ ନ ହେବା ପ୍ରଭୃତିକୁ ନୈତିକ ଶିକ୍ଷା କୁହାଯାଏ । ଯାହାର ଆରମ୍ଭ ପ୍ରଥମେ ପରିବାରରୁ ହିଁ ହୋଇଥାଏ । ବାଲ୍ୟକାଳରୁ ପରିବାରର ଶିକ୍ଷା ଓ ସଂସ୍କାର ପାଇଥିଲେ ତାହାର ସୁପ୍ରଭାବ ସାମାଜିକ ପରିବେଶକୁ ଉନ୍ନତ ଏବଂ ଶୃଙ୍ଖଳିତ କରିଥାଏ । ମାତ୍ର ଏହାର ପ୍ରଭାବ ଦିନକୁ ଦିନ ହ୍ରାସ ପାଉଥିବାରୁ ବର୍ତ୍ତମାନ ସମାଜରେ ନାନାପ୍ରକାର ଅପରାଧ ମନୁଷ୍ୟ ଜୀବନକୁ କବଳିତ କରୁଛି ।

ବସ୍ତୁବାଦୀ ଦୁନିଆରେ ତ୍ୟାଗ ଅପେକ୍ଷା ଭୋଗର କାମନା କ୍ରମଶଃ ବୃଦ୍ଧି ପାଉଥିବାରୁ ସମସ୍ତେ ଅଧିକ ଅର୍ଥ ଉପାର୍ଜନ ନିମନ୍ତେ ଅହରହ ଉଦ୍ୟମ ଜାରି ରଖିଛନ୍ତି । ଏହି ଅର୍ଥ ଉପାର୍ଜନର ପନ୍ଥା ଯେତେ ଘୃଣ୍ୟ ବା ଅସତ୍ ହେଲେ ମଧ୍ୟ ସେଥିକି ଖାତିର ନକରି ମନୁଷ୍ୟଟିଏ ଅଗ୍ରସର ହୋଇଚାଲିଛି ।

ପ୍ରତିଦିନ ଖବର କାଗଜର ପୃଷ୍ଠା, ଛୋଟ ପରଦାର ସମ୍ବାଦ ପ୍ରଭୃତି ନିରୀକ୍ଷଣ କଲେ ଅସଂଖ୍ୟ ଦୁଃଖଦ, ଅପରାଧମୂଳକ ଓ ଅନୈତିକ ଘଟଣାବଳୀ ଦୃଷ୍ଟିକୁ ଆସେ ।

କେଉଁଠି ଆୟ ବହିର୍ଭୁତ ସମ୍ପତ୍ତି ଠୁଳ କରି ଡାକ୍ତର, ଇଞ୍ଜିନିୟର, ଶିକ୍ଷକ, କିରାଣି, ଆତ୍ମଘୋଷିତ ବାବା, ଉଚ୍ଚପଦସ୍ଥ ଅଧିକାରୀ, ନିର୍ଦ୍ଦେଶକ, ପ୍ରଯୋଜକ, କଳାକାର, ଠକ ସଂସ୍ଥା, ନକଲି ସାମଗ୍ରୀ ପ୍ରସ୍ତୁତକାରୀ, ନକଲି ଔଷଧ ପ୍ରସ୍ତୁତକାରୀ, ଜମି ଦଲାଲ ପ୍ରଭୃତି ଗିରଫ ହୋଇ କାରାଗାରରେ ବନ୍ଦୀ ହେଉଛନ୍ତି । କଳା ଟଙ୍କାରେ ନିର୍ମାଣ କରିଥିବା ସୁଉଚ୍ଚ ଅଟ୍ଟାଳିକା ନିଜେ ଉପଭୋଗ କରିବା ପୂର୍ବରୁ ସମସ୍ତ ସ୍ୱପ୍ନ ମୁହୂର୍ତ୍ତକରେ ଧୂଳିସାତ ହୋଇଯାଉଛି । କିଶୋରୀମାନଙ୍କୁ ଅର୍ଥର ପ୍ରଲୋଭନ ଦେଖାଇ ସେମାନଙ୍କୁ ଦେହ ବ୍ୟବସାୟରେ ଲିପ୍ତ କରିବାକୁ ବାହାରକୁ ଚାଲାଣ କରାଯାଉଛି । ରୋଗୀକୁ ଚିକିତ୍ସା କରିବା ଆଳରେ ତା' ଅଜାଣତରେ ଶରୀରରୁ କିଡିନ୍ ବାହାର କରି ବହୁମୂଲ୍ୟରେ ବିକ୍ରି କରିବା ଭଳି ଅମାନବୀୟ କାର୍ଯ୍ୟ କରିବାକୁ ଏହି ଅବିବେକୀ ମନୁଷ୍ୟ ସାମାନ୍ୟତମ ଦ୍ୱିଧାବୋଧ କରୁନାହିଁ । ଏତଦ୍ ବ୍ୟତୀତ ସ୍ୱର୍ଣ୍ଣାଳଙ୍କାର ଓ ଟଙ୍କା ପଇସା ଲୋଭରେ ଗୃହର ଚାକର ଚାକରାଣୀ ଏବଂ ସମ୍ପର୍କୀୟ ବ୍ୟକ୍ତି ହାତଗୋଡ଼ ବାନ୍ଧି ହତ୍ୟା କରି ତାଙ୍କର ଉଦ୍ଦେଶ୍ୟ ପୂରଣ କରୁଛନ୍ତି । ପୁଣି କେଉଁଠି ଜମିବାଡ଼ି ଭଳି ସମ୍ପତ୍ତି ଲୋଭରେ ନିଜ କୁଟୁମ୍ବ ମଧ୍ୟରେ ହଣାକଟା ଓ ହତ୍ୟା ଘଟଣା ମଧ୍ୟ ସଂଘଟିତ ହେବାରେ ଲାଗିଛି । ଏହାର ମୂଳ କାରଣ ହେଉଛି ନୈତିକ ଶିକ୍ଷାର ଅଭାବ ।

ଆମକୁ ମନେ ରଖିବାକୁ ହେବ ଯେ ଆମର ସତକର୍ମର ଅର୍ଜନ କେବଳ ଆମକୁ ସୁଖ ଦେଇପାରେ । ଆମେ ଅଭାବବୋଧ କଲେ ମଧ୍ୟ ତାହା ଆମର କୌଣସି କ୍ଷତି କରିନଥାଏ । ଅପରନ୍ତୁ ଅସତ୍ ପଥରେ ଅନ୍ୟକୁ ଦୁଃଖ, ଆଘାତ, ବିଶ୍ୱାସଘାତକତା, ଯନ୍ତ୍ରଣା ଓ ଶାରୀରିକ ବା ମାନସିକ ନିର୍ଯାତନା ଦେଇ ଅର୍ଜନ କରିଥିବା ଧନରେ ବିଳାସ ବ୍ୟସନରେ ନିମଗ୍ନ ରହିଲେ ବି ତାହା ଯେ କ୍ଷଣସ୍ଥାୟୀ ଏହାକୁ ସର୍ବଦା ସ୍ମରଣରେ ରଖିବା ଉଚିତ । କଥାରେ ଅଛି, ପାପ ଧନ ପ୍ରାୟଶ୍ଚିତରେ ଯାଏ ।

ମନୁଷ୍ୟ ଜନ୍ମ ହେଲାବେଳେ ଶୂନ୍ୟହସ୍ତରେ ଆସିଥାଏ ଏବଂ ସଂସାରରୁ ବିଦାୟ ନେବା ସମୟରେ ସେହି ଶୂନ୍ୟ ହସ୍ତରେ ହିଁ ଯାଏ । ସାରାଜୀବନ ଅର୍ଜିତ ଧନ ସମ୍ପତ୍ତି ସେମିତି ରହିଯାଏ । ଯାହାକୁ ସେ ନେଇପାରେ ନାହିଁ କିମ୍ବା କେହି ସେଗୁଡ଼ିକ ତା'ସହ ଦାନ କରେ ନାହିଁ । ତେବେ କ'ଣ ପାଇଁ ଅନ୍ୟାୟ ଉପାୟରେ ଏତେ ସମ୍ପତ୍ତି ଠୁଳ କରିବାର ମାନସିକତା ରଖିବା ? ଲୋଭ, ମୋହ, ମାୟା ଓ ଆସକ୍ତି ଠାରୁ ଊର୍ଦ୍ଧ୍ୱରେ ରହି କିଛି ସତ୍‌କର୍ମ କରିବାର ଦୃଢ଼ ପ୍ରତିଜ୍ଞା ସହ ନୀତିଷ୍ଠ ହୋଇ କର୍ତ୍ତବ୍ୟ ସମ୍ପାଦନ କରିପାରିଲେ ଆମ ପାରିବାରିକ ଜୀବନ ସହ ସାମାଜିକ ଜୀବନରେ ନିଶ୍ଚିତ ଭାବେ ଯେ ଆନନ୍ଦମୟ ଅନୁଭବ ଆସିବ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

*ଚାଟରା (ନଡ଼ିଆ ବାଗ), ଜଗତସିଂହପୁର-୭୫୪୧୦୩*

*ମୋ: ୯୨୩୭୮୫୫୪୭୮*

# ଦେଶ ବିଭାଜନ ପୂର୍ବର ଧାରା ବିବରଣୀ

ଶ୍ରୀ ଗୋଲକ ଚନ୍ଦ୍ର ବସନ୍ତିଆ (୪୨୫)

ପ୍ରାକ୍ ସ୍ୱାଧୀନତା ଥିଲା ଧର୍ମାନ୍ତରଣ, ରକ୍ତପାତ, ଗୃହଦାହ, ଧର୍ଷଣ, ଲୁଣ୍ଠନ, ବଳାତ୍କାରର ଏକ ମିଳିତ ଅମାନବୀୟ ଦୁଷ୍କର୍ମ । ଭାଇ ଭୁଲିଯାଇଥିଲା ଭାତୃତ୍ୱର ମୂଲ୍ୟ । ଭୁଲିଥିଲା ବନ୍ଧୁ ବନ୍ଧୁତ୍ୱର ଅମୃତ ସମ୍ପର୍କ । ଚାରିଆଡ଼େ ଥିଲା ଈର୍ଷା, ଘୃଣା, କୂଟ, କପଟ, ଛଳନା ପ୍ରତାରଣାର ନିକୃଷ୍ଟ କୁତ୍ସିତ ରାଜନୀତି । ଧର୍ମ ଭିତ୍ତିକ ରାଷ୍ଟ୍ର ଗଠନ ପରିକଳ୍ପନା କରିଥିଲା ମୁସଲମାନମାନଙ୍କୁ ବିଷାକ୍ତ ଓ ଉନ୍ମାଦ । ଧର୍ମାନ୍ଧ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କର ପାକିସ୍ତାନ ଗଠନ ପିପାସାର ଅକ୍ଷମଣୀୟ ପରିଣତି-ଭାରତର ଅଙ୍ଗଚ୍ଛେଦ । ଶେଷରେ ସେଇଆ ହେଲା । ରେଡ୍‌କ୍ଲିଫ୍‌ଙ୍କ ପେନସିଲ ମୁନରେ ବ୍ୟବଚ୍ଛେଦ ହେଲା ଭାରତ । ଦେଶର ଗୋଟିଏ ଭାଗ କଟାଯାଇ ସୃଷ୍ଟି ହେଲା ପାକିସ୍ତାନ ।

୧୯୪୭ ମସିହା, ୪ ମାର୍ଚ୍ଚ ମାସ । ଲୁଇସ୍ ମାଉଣ୍ଟବ୍ୟାଟେନ୍ ୟର୍କ-ଏମ୍‌ବୋ-୧୦୨ ବିମାନ ଆରୋହଣ କଲେ ଭାରତ ଅଭିମୁଖେ । ସାଥୀରେ ସହଧର୍ମିଣୀ ଏଡ୍‌ୱିନା ଏବଂ ଦୁଇ ସହକର୍ମୀ ରୋନାଲଡ୍ ଏବଂ ପିଟର । ଦିଲ୍ଲୀ ବିମାନ ବନ୍ଦରରୁ ତାଙ୍କୁ ପାଛୋଟି ନିଆଗଲା ଭାଇସରୟ ଭବନକୁ । ଅପେକ୍ଷା କରିଥିଲେ ବିଦାୟୀ ଭାଇସ୍‌ରୟ ଲର୍ଡ ୱାଭେଲ । ସାମାନ୍ୟ କଥାବାର୍ତ୍ତା ପରେ ଲର୍ଡ ୱାଭେଲ ଖୋଲିଲେ ସେଲ୍‌ଫ୍ । ସେ ମାଉଣ୍ଟବ୍ୟାଟେନ୍‌ଙ୍କୁ ଦାମୀ ସୁରା ଗ୍ରାଣ୍ଡ୍ ମାଷ୍ଟର ଓ ଭାରତ ବିଭାଜନର ଫାଇଲ ଅର୍ପଣ କଲେ । ଏହା ଭାରତୀୟଙ୍କର ଶାନ୍ତି ସୁରକ୍ଷା ଓ ନିରାପତ୍ତାର ଦଲିଲ ଥିଲା ।

ମାର୍ଚ୍ଚ ୨୪ ତାରିଖର ପ୍ରଭାତ ସମୟ । ମାଉଣ୍ଟବ୍ୟାଟେନ ଷ୍ଟାର ଅଫ୍ ଇଣ୍ଡିଆ ମେଡାଲ ଲଗାଇ ଗଳା ବେଷ୍ଟନ କଲେ । ଏବଂ ଆରୋହଣ କଲେ ନୀଳ-ଲାଲ୍ ମିଶ୍ରିତ ସ୍ୱର୍ଣ୍ଣ ସିଂହାସନ । ପାଲଟିଗଲେ ଭାରତବର୍ଷର ବିଂଶତମ ଭାଇସ୍‌ରୟ । ସେ ନିଜର ଲକ୍ଷ୍ୟ ପୂରଣ କରିବା ପୂର୍ବରୁ ପ୍ରଥମେ ନିଜର ବ୍ୟକ୍ତିତ୍ୱକୁ ଭାରତୀୟଙ୍କ ଉପରେ ଆରୋପ କରିବାକୁ ଆରମ୍ଭ କଲେ । ସାଥୀରେ ବଡିଗାର୍ଡ ନନେଇ ମର୍ଣ୍ଣିଂୱାକ୍ କରିବା ପାଇଁ ଗଲେ । ନିର୍ବିକାରରେ ସ୍ୱାମୀ-ସ୍ତ୍ରୀ ନେହେରୁଙ୍କ ଭୋଜି ସଭାରେ ଉପସ୍ଥିତ ହେଲେ । ଭାରତୀୟ ରୋଷେୟାଙ୍କ ଦ୍ୱାରା ପ୍ରସ୍ତୁତ ଭାରତୀୟ ଖାଦ୍ୟ ଖାଇଲେ, ମଧ୍ୟାହ୍ନ ଭୋଜନକୁ ଭାରତୀୟ ଅତିଥିଙ୍କୁ ନିମନ୍ତ୍ରଣ କଲେ । ଅଳ୍ପଦିନ ମଧ୍ୟରେ ଭାରତୀୟଙ୍କ ହୃଦୟ ଜୟ କରି ଭାରତୀୟଙ୍କ ସହ ମିଶିଗଲେ ।

ଭାଇସରୟ ଭାରତ ଆସିବା ପାଞ୍ଚ ଦିନ ହୋଇଥାଏ । କଲିକତାରେ ଦଙ୍ଗା ହୋଇ ୯୯ ଜଣେ ମୃତ୍ୟୁବରଣ କଲେ । ଠିକ୍ ଦୁଇଦିନ ପରେ ବମ୍ବେରେ ମୃତ୍ୟୁବରଣ କଲେ

୪୧ଜଣ । ମର୍ମାହତ ହେଲେ ଭାଇସ୍‌ରାୟ । ୧୯୪୮ ମସିହା ଜୁନ୍ ମାସ ପୂର୍ବରୁ ଦାବୀ ପୂରଣ କରାନଗଲେ ଅଧିକ ଦଙ୍ଗା ଲାଗି ଯିବାର ସମ୍ଭାବନା । ତେଣୁ ସେ ଏପ୍ରିଲ୍ ଦୁଇ ତାରିଖରେ ଅଟଲି ସରକାରଙ୍କୁ ଜଣାଇ ଦେଲେ ଜୁନ୍ ସୁଦ୍ଧା ସମାଧାନ ଅପରିହାର୍ଯ୍ୟ । ମାଉଣ୍ଟ୍‌ବ୍ୟାଟେନ୍ ସମସ୍ୟାଟିକୁ ଯେତେ ସହଜ ଭାବୁଥିଲେ, ସେ ଅନୁଭବ କଲେ ତାହା ଏତେ ସହଜ ନୁହେଁ । ସମାଧାନ ପାଇଁ ଦୀର୍ଘ ସମୟ ନେଲେ ସମସ୍ୟା ଜଟିଳ ହେବ କିମ୍ୱା ଆଦୌ ସମାଧାନ ସମ୍ଭବ ହେବ ନାହିଁ । ପରିସ୍ଥିତି ଅଣାୟତ୍ତ ହେବ । ରକ୍ତ ରଞ୍ଜିତ ହେବ ଭାରତବର୍ଷ । ଅରାଜକତା ଦେଖାଦେବ । ସେଥିପାଇଁ ଭାଇସ୍‌ରୟ ଚିନ୍ତିତ । ବ୍ୟଥିତ ଏବଂ ମର୍ମାହତ ହେଲେ ।

ମାର୍ଚ୍ଚ ୩୧ ତାରିଖ । ଭାଇସରୟଙ୍କ ନିମନ୍ତ୍ରଣ ରକ୍ଷା କରି ଚର୍ଚ୍ଚିଲଙ୍କ ଭାଷାରେ ଅର୍ଦ୍ଧଲଙ୍ଗଳା ଗାନ୍ଧିଜୀ ବିହାରରୁ ଟ୍ରେନ୍ ଯୋଗେ ଆସି ପହଞ୍ଚିଛନ୍ତି । ଦିଲ୍ଲୀ ରାଜ ଭବନରେ । ଉଡ଼ାଜାହାଜରେ ଆସିବାକୁ ସେ ମନା କଲେ । ବସିଛନ୍ତି ଆର୍ମି ଚେୟାର୍‌ରେ । ସମ୍ମୁଖରେ ଭାଇସରାୟ । ଭାଇସରୟ ସ୍ଥିର ଦୃଷ୍ଟିରେ ଚାହିଁଛନ୍ତି ଏହି ଭୟଙ୍କର ଆଟମବମ୍‌କୁ । ଏହି ବ୍ୟକ୍ତି ଦକ୍ଷିଣ ଆଫ୍ରିକାରେ ଇଂରେଜ ସରକାରର ମେରୁଦଣ୍ଡ ଦୋହଲାଇ ଦେଇଥିଲେ । ଖାଲି ହାତରେ ଫେରାଇ ଦେଇଥିଲେ ଷ୍ଟାଫୋର୍ଡ କ୍ରିପ୍‌ସଙ୍କୁ ୧୯୪୬ ମସିହାରେ । ଭାରତବର୍ଷରେ ଇଂରେଜ ଶାସନକୁ ଭାରତଛାଡ଼ ସାଇକ୍ଲୋନ୍ ଦ୍ୱାରା ବିଲୁପ୍ତ କରିଦେଇଛନ୍ତି । ସେହି ଅର୍ଦ୍ଧ ଉଲଗ୍ନ ଫକୀର ମହାତ୍ମାଙ୍କ ବଦନ ମଣ୍ଡଳକୁ ଆଚ୍ଛାଦିତ କରିଛି ଦୁଃଖର କଳାବାଦଲ । ହୃଦୟରେ ଦାରୁଣ ଯନ୍ତ୍ରଣା । ଚକ୍ଷୁରେ ଅଦମନୀୟ ପିପାସା । ସ୍ୱପ୍ନ ଅଖଣ୍ଡ ଭାରତବର୍ଷରେ ରାମରାଜ୍ୟ ପ୍ରତିଷ୍ଠା । ଇତିହାସ କହିବ ଏହି ଆଜନ୍ମ ଅହିଂସା ସାଧକ ମହାତ୍ମାଙ୍କ ସ୍ୱପ୍ନ କେତେ ସଫଳ ହୋଇଛି ।

ଭାଇସରୟଙ୍କର ସବୁ ଯୋଜନା ଗୋଳମାଳ ହୋଇଗଲା । କ'ଣ ପଚାରିବେ ଓ କେଉଁଠୁ ଆରମ୍ଭ କରିବେ କିଛି ଠିକ୍ କରିପାରିଲେ ନାହିଁ । ଶେଷରେ ଦୀର୍ଘଶ୍ୱାସ ଛାଡ଼ି ମାନସିକ ଶକ୍ତି ସଞ୍ଚୟ କରି ପଚାରିଲେ, 'ଆପଣ... ?' ଗାନ୍ଧିଜୀ ଅର୍ଦ୍ଧ ଉନ୍ମୀଳିତ ନୟନ ଓ ଅଧରରେ ଚେନାଏ ମ୍ଳାନ ହାସ୍ୟରେଖା ଟାଣି ଭାଇସ୍‌ରୟଙ୍କ ମୁଖକୁ ଚାହିଁଲେ ଏବଂ କହିଲେ, "ମୁଁ ଜଣେ ଭାରତୀୟ, ଯେଉଁମାନେ ଅନୁମତି ନେଇ ଆସିଥାନ୍ତି ଭାରତୀୟଙ୍କର ସେମାନଙ୍କର ସର୍ବନିମ୍ନ ଦାବି ନେଇ । ମାଉଣ୍ଟବ୍ୟାଟେନ୍ କହିଲେ ଆପଣ ହେଉଛନ୍ତି ଏମତର ଜନକ । ଗାନ୍ଧିଜୀଙ୍କ ଅଧର ଥରି ଉଠିଲା । କଣ୍ଠବାଷ୍ପାକୁଳ ହୋଇଗଲା । ଝରିପଡ଼ିଲା ଚକ୍ଷୁରୁ ଅଶ୍ରୁ । ଭାଇସ୍‌ରୟ ହତବାକ୍ ହୋଇଗଲେ । କ'ଣ କହି ଶାନ୍ତ୍ୱନା ଦେବେ କିଛି ଠିକ୍ କରିପାରିଲେ ନାହିଁ ।

ଗାନ୍ଧିଜୀଙ୍କ ଅସହାୟତା ଉପଲବ୍ଧି କରି ଭାଇସରୟ ପ୍ରସଙ୍ଗରୁ ଦୂରେଇ ଗଲେ ।

ଗାନ୍ଧିଜୀଙ୍କୁ ସାଥିରେ ନେଇଗଲେ ମୋଗଲ ଉଦ୍ୟାନକୁ । ସାଥୀରେ ଥିଲେ ଏଡ୍‌ୱିନା । ସେଠାରେ ଫଟୋ ଉଠାହେଲା । ଫେରି ଆସିଲେ ରାଜ ଭବନକୁ । ଆରମ୍ଭ ହେଲା ଟା ପାନ ପର୍ବ । ଗାନ୍ଧିଜୀ ଖାଇଲେ ଛେଳି କ୍ଷୀର ଦହି ଏବଂ ଲେମନ ଜୁସ୍ ଏକ ଭଙ୍ଗା ଚାମଚରେ । ଯେଉଁ ଚାମଚର ବେଣ୍ଟ ବାଉଁଶ । ତାହା ସୂତା ଦ୍ୱାରା ବନ୍ଧାଯାଇଥାଏ । ଭାଇସ୍‌ରୟଙ୍କୁ କିଛି ଦହି ଦେଲେ । ସେ ଆନନ୍ଦର ସହ ଗ୍ରହଣ କଲେ । ସେ ବାଟ ପାଉନଥିଲେ ନିଜ କଥାକୁ କିପରି ଏଇ ବିଶିଷ୍ଟ ବ୍ୟକ୍ତିଙ୍କ ମୁଣ୍ଡରେ ଭର୍ତ୍ତି କରିବେ ।

ଅତି ଶାନ୍ତ ଓ ନମ୍ରତାର ସହ ଭାଇସ୍‌ରୟ କହିଲେ, "ଆମେ ଆଉ ଅଳ୍ପ ଦିନ ପରେ ଭାରତ ଛାଡ଼ି ଚାଲିଯିବୁ । "ଗାନ୍ଧିଜୀଙ୍କ ଚକ୍ଷୁ ଯୁଗଳୁ ଝରି ପଡୁଥିଲା ପାର୍ବତୀୟ ଝରଣା ଭଳି ଅଶ୍ରୁ । ସେ ଅତି ବିକଳ ସ୍ୱରରେ କହିଉଠିଲେ, "ତା' ପୂର୍ବରୁ ଏ ଦେଶକୁ ବିଭାଜିତ କର ନାହିଁ । ଯଦି ଶାସନ ପାଇଁ ଲାଳାୟିତ, ମୁସଲମାନମାନେ ସମଗ୍ର ଭାରତବର୍ଷ ଶାସନକର୍ତ୍ତା ହୁଅନ୍ତୁ ।" ଆଃ..., କି ଅବ୍ୟକ୍ତ ବେଦନା ! ପ୍ରକମ୍ପିତ ଅଧର । ମେଗାହର୍ସ ପାୱାର ଭରି ରହିଥିଲା ସେହି ଅନ୍ତର୍ଦାହର କମ୍ପନରେ ? ଭାଇସ୍‌ରୟଙ୍କ ମସ୍ତକ ସ୍ୱତଃ ତଳକୁ ନଇଁ ଗଲା । କେତେ ଭଲ ପାଏ ଏ ବୃଦ୍ଧ ତା' ଦେଶକୁ ? ମନେ ମନେ କହି ଉଠିଲେ, ସତରେ ଆପଣ ଏ ଜାତିର ଜନକ ।

ଭାଇସରୟ କହିଲେ, "ଆପଣଙ୍କ ପ୍ରସ୍ତାବକୁ କଂଗ୍ରେସ ଓ ମୁସଲିମ୍‌ଲିଗ୍ ଗ୍ରହଣ କରିନେଲେ ମୁଁ କାର୍ଯ୍ୟକାରୀ କରିବାକୁ କୁଣ୍ଠାବୋଧ କରିବି ନାହିଁ ? ଗାନ୍ଧିଜୀ ଫେରିଯାଇଛନ୍ତି ଏକ ଦିଗହରା ପକ୍ଷୀ ଭଳି । ସେ କାହାରି ନୁହଁନ୍ତି । ତାଙ୍କର କେହି ନାହାନ୍ତି । ସେ ଏକା ଏବଂ ଏକାନ୍ତ ଏକା । ତାଙ୍କର ଆବଶ୍ୟକତା ଶେଷ ହୋଇଛି । ସେ ଏବେ ଏକ ଝାଡୁଦାରଠାରୁ ହୀନ । ଏକ ଅପାଙ୍‌କ୍ତେୟ ଫଟା ମାଠିଆ । ସମ୍ମୁଖରେ ସୀମାହୀନ ଶୂନ୍ୟତା । ସ୍ୱପ୍ନ ହୋଇଛି ଚୂର୍ଣ୍ଣବିଚୂର୍ଣ୍ଣ । କେବଳ ମୁଠାମୁଠା ଅନ୍ଧାର ।

ଏପ୍ରିଲ୍ ମାସର ଅପରାହ୍ନ । ଭାଇସ୍‌ରୟ ଏବଂ ଜିନ୍ନାଙ୍କ ମଧ୍ୟରେ ଆଲୋଚନା । ଆଲୋଚନାରୁ ଭାଇସ୍‌ରୟ ଜାଣିପାରିଲେ ଜିନ୍ନାଙ୍କର ଉଦ୍ଭଟ ଦିବା ସ୍ୱପ୍ନ 'ପାକିସ୍ତାନ' । ଭାରତର ବିଭାଜନ ନଚେତ୍ ମୃତ୍ୟୁ । ବିଭାଜନ ନିଶ୍ଚିତ । ନଚେତ୍ ଭାରତ ମାଟିରେ ଛୁଟିବ ରକ୍ତର ସ୍ରୋତ । ସୃଷ୍ଟି ହେବ ଶବର ସ୍ତୁପ । ହୁଏତ ତାଙ୍କୁ ଭାଇସରୟ ସମ୍ବୋଧନ କରିବାକୁ କେହି ନଥିବେ । ଭାଇସରୟଙ୍କ ମନ ଘୃଣା ଓ ବିତୃଷ୍ଣାରେ ବିଷାକ୍ତ ହୋଇଗଲା ।

ରାଜ ଭବନରେ ଭାଇସରୟ ଡକାଇଛନ୍ତି ଗଭର୍ଣ୍ଣର ମାନଙ୍କ ସମ୍ମିଳନୀ । ଏଗାରଟି ପ୍ରଦେଶର ଗଭର୍ଣ୍ଣର ଉପସ୍ଥିତ । ସବୁ ପ୍ରଦଶ ସମ୍ପର୍କରେ ଜାଣିବାକୁ ଚେଷ୍ଟା କଲେ । ଆଠଟି ପ୍ରଦେଶରେ ଆଇନ ଶୃଙ୍ଖଳା ନିରାପତ୍ତା ନିୟନ୍ତ୍ରିତ । କେବଳ ପଞ୍ଜାବ, ବେଙ୍ଗଲ ପ୍ରଦେଶ, ଉତ୍ତର-ପଶ୍ଚିମ ସୀମାନ୍ତ ଅଞ୍ଚଳର ପରିସ୍ଥିତି ଉଦ୍‌ବେଗଜନକ । ଚିନ୍ତାକ୍ଲିଷ୍ଟ ଭାଇସରୟ ।

ସମ୍ମୁଖରେ ଅନିଶ୍ଚିତତାର ସ୍ପଷ୍ଟ ସୂଚନା । ସମସ୍ତେ ନୀରବ । ଭାଇସ୍‌ରୟଙ୍କ ସହକାରୀ ଲର୍ଡ ଇସ୍‌ମେ ଅର୍ପଣ କଲେ ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ ପୁସ୍ତକ । ଏହା ଥିଲା ଭାଇସ୍‌ରୟଙ୍କ ପୂର୍ବ କଳ୍ପିତ ବିଭାଜନ ପୁସ୍ତକ । ସମସ୍ତେ ଓଲଟାଇ ଚାଲିଛନ୍ତି ପୃଷ୍ଠା ପରେ ପୃଷ୍ଠା । ବିଭାଜନ ବା ଘର ନଖ ଦନ୍ତରେ ସମସ୍ତେ ରକ୍ତାକ୍ତ । କେହି ବିଭାଜନ ପାଇଁ ଉତ୍ସାହ ପ୍ରକାଶ କଲେ ନାହିଁ କିମ୍ବା ପ୍ରତିବାଦ କଲେ ନାହିଁ । ନୀରବରେ ସମସ୍ତେ ସ୍ୱାକ୍ଷର କରି ପୁସ୍ତକ ଫେରାଇ ଦେଲେ । ପ୍ରବେଶ କଲେ ଭୋଜନ ପ୍ରକୋଷ୍ଠକୁ । ଭୋଜନ ସମାପ୍ତି ହେଲା । ମାତ୍ର ଏ କି ବ୍ୟତିକ୍ରମ ? ଭାଇସ୍‌ରାୟ ସମସ୍ତଙ୍କ ହସ୍ତକୁ ପାଣି ଗ୍ଲାସ ବଢ଼ାଇଦେଲେ ।

ଭାଇସ୍‌ରୟଙ୍କ ଉଡ଼ାଜାହାଜ ଉଡ଼ିଚାଲିଛି ହିନ୍ଦୁକୁଶ ପର୍ବତ, ପାମିର ମାଳଭୂମି ଏବଂ ସିନ୍ଧୁ ନଦୀର ଅବବାହିକା ଉପରେ । ପେଶୱାର ଅଭିମୁଖେ । ସାଥୀରେ ତାଙ୍କର ସ୍ତ୍ରୀ ଏଡୱିନା ଏବଂ ୧୭ ବର୍ଷୀୟା କନ୍ୟା ପାମେଲା । ବିମାନ ବନ୍ଦର ଲୋକାରଣ୍ୟ । ଜିନ୍ନାଙ୍କ ଆହ୍ୱାନରେ ସମସ୍ତେ ଏକତ୍ରିତ । ସ୍ଲୋଗାନ ଚାଲିଛି ଆମର ଦାବି 'ପାକିସ୍ତାନ' । ପ୍ରଧାନମନ୍ତ୍ରୀ ଖାଁ ଅବଦୁଲ ଗଫୁର ଖାଁ ତାଙ୍କୁ ନିରାପତ୍ତା ଯୋଗାଇଦେବା ଅବସ୍ଥାରେ ନାହାନ୍ତି । ହିଂସ୍ର ଶାର୍ଦ୍ଦୁଳ ସମ ମାଡି ଆସୁଛନ୍ତି ବିଶୃଙ୍ଖଳିତ ମୁସଲମାନ ଭାଇସରୟଙ୍କ ଆଡକୁ ବନ୍ୟା ସ୍ରୋତ ଭଳି । କିଛି ବୁଝିପାରିଲେ ନାହିଁ ଭାଇସ୍‌ରୟ । ଜୀବନ ବିପଦପୂର୍ଣ୍ଣ । ସେ ସବୁଜ ରଙ୍ଗର ପୋଷାକ ପରିଧାନ ପୂର୍ବକ ସଭା ମଣ୍ଡପକୁ ଯିବାକୁ ଉଦ୍ୟତ ହେଲେ । ଏହି ପୋଷାକ ଉଚ୍ଛୃଙ୍ଖଳିତ ବର୍ବର ମୁସଲମାନମାନଙ୍କୁ ନିୟନ୍ତ୍ରଣ କଲା ।

ସଭା ମଣ୍ଡପରେ ଭାଇସରୟ । ଭାଇସ୍‌ରୟ- ଜିନ୍ଦାବାଦ୍ ସ୍ଲୋଗାନ୍‌ରେ ସଭାସ୍ଥଳ ପ୍ରକମ୍ପିତ ହେଲା । ଭାଇସରୟ ଏବଂ ଏଡୱିନା ହାତ ହଲାଇ ସେମାନଙ୍କର ଅସମ୍ଭବ ଦାବୀକୁ ସ୍ୱୀକୃତି ପ୍ରଦାନ କଲେ । ବିନା ବକ୍ତୃତାରେ ସଭାସ୍ଥଳ ପରିତ୍ୟାଗ କଲେ । ଫେରିଆସିଲେ ପଞ୍ଜାବ । ସେ ରାଓଲପିଣ୍ଡିରୁ 'କାହୁଟା' ଅଭିମୁଖେ ଯାତ୍ରା କଲେ । ସେଠାରେ ପହଞ୍ଚିଲାବେଳକୁ ସମସ୍ତ ହିନ୍ଦୁ ଓ ଶିଖ୍ ନିଃଶେଷ ହୋଇଯାଇଥିଲେ । ଜଳୁଥିଲା ଘର । ଚାଲିଥିଲା ଧର୍ଷଣ ପର୍ବ । ବଳାତ୍କାର ଓ ଧର୍ମାନ୍ତରଣର ଶେଷ ଦୃଶ୍ୟ । ଧର୍ଷିତା ହିନ୍ଦୁ ରମଣୀଙ୍କର ଆତ୍ମଦାହ । ପ୍ରତିବାଦ ନାହିଁ ନାହିଁ ପ୍ରତିରୋଧ । ପ୍ରତିକାର କରିବ କିଏ ? ନିଛକ ଅରାଜକତାର ଉଦ୍ଦଣ୍ଡ ନୃତ୍ୟ ।

ଭାଇସରୟ ଫେରିଆସିଲେ ଦିଲ୍ଲୀ । ହୃଦୟ ତାଙ୍କର କରୁଣାର୍ଦ୍ର । ସୁସଭ୍ୟ ମାନବ ସମାଜ କ'ଣ ହୋଇପାରେ ଏଭଳି ଅସଭ୍ୟ ବର୍ବର ? 'କାହୁଟାରେ' ଅମାନବୀୟ ଅଶ୍ଳୀଳ ବାସ୍ତବ ଚିତ୍ର ତାଙ୍କ ମାନସ ଚକ୍ରବାଳରେ ଗଭୀର ରେଖାପାତ କରିଛି । ସେହି ଲୋମହର୍ଷଣକାରୀ ବିଭତ୍ସ ଦୃଶ୍ୟ ଭୁଲିବାକୁ ଚେଷ୍ଟାକରି ଭୁଲି ପାରୁନାହାନ୍ତି । ସେ କ'ଣ କରିବେ କିଛି ସ୍ଥିର କରିପାରୁନାହାଁନ୍ତି । ଶେଷରେ ସେ ଶେଷ ସିଦ୍ଧାନ୍ତରେ ପହଞ୍ଚିଲେ ଯେ

ଭାରତର ବ୍ୟବଚ୍ଛେଦ ଅପରିହାର୍ଯ୍ୟ । ସବୁ ପ୍ରାଦେଶିକ ଗଭର୍ଣ୍ଣର ବିଭଜନ ପାଇଁ ସ୍ୱୀକୃତି ପ୍ରଦାନ କରିଛନ୍ତି । ନେହେରୁ ଓ ପଟେଲ ସ୍ୱୀକୃତି ଦେଇଛନ୍ତି । ପରୋକ୍ଷରେ ଗାନ୍ଧିଜୀ ସ୍ୱୀକୃତି ପ୍ରଦାନ କରିଛନ୍ତି । ଏହି ବିଭାଜନର ସ୍ୱୀକୃତି ପାଇଁ ସେ ଉଡିଗଲେ ବ୍ରିଟେନ୍ । ବ୍ରିଟିଶ୍ ପାର୍ଲାମେଣ୍ଟ୍‌ର ସ୍ୱୀକୃତି ପାଇଁ ମେ' ଦୁଇ ତାରିଖରେ ।

୧୯୪୭ ମସିହା, ମେ' ସାତ ତାରିଖ । ଭାଇସରୟ ପହଞ୍ଚିଲେ ସିମଳାରେ । ନିମନ୍ତ୍ରଣ କଲେ ନେହୁରଙ୍କୁ । ନିଜର କର୍ମକର୍ତ୍ତାଙ୍କ ସହ ଆଲୋଚନା କଲେ ବିଭାଜନ ପ୍ରକ୍ରିୟା । ନେହେରୁଙ୍କୁ ଏକ କିତା ବିଭାଜନ ପ୍ଲାନ ପ୍ରଦାନ କଲେ । ନେହେରୁ ପ୍ଲାନ୍‌ଟି ଧରି ଶୟନ କକ୍ଷକୁ ଫେରିଆସିଲେ । ଓଲଟାଇ ଚାଲିଲେ ପୃଷ୍ଠା ପରେ ପୃଷ୍ଠା । ଭାରତ ଦୁଇ ଭାଗରେ ବିଭାଜିତ ହୋଇନାହିଁ । ବିଭାଜିତ ହୋଇଛି ଦ୍ୱୀପପୁଞ୍ଜରେ ୫୬୫ଟି ସ୍ୱାଧୀନ ରାଷ୍ଟ୍ର ସହ ଆକୁମାରୀ ହିମାଚଳରେ ପାକିସ୍ତାନ ଜନ୍ମ ନେଇଛି । ଏଇଟା ପ୍ଲାନ୍ ନଥିଲା । ଥିଲା ଭାରତର ଚୂର୍ଣ୍ଣ ବିଚୂର୍ଣ୍ଣ ବିକୃତ ରୂପ । ନେହେରୁ ଘର୍ମାକ୍ତ । ଶେଷରେ କଂଗ୍ରେସ ଏହାକୁ ପ୍ରତ୍ୟାଖାନ କଲା ।

ଭାଇସ୍‌ରୟ ମର୍ମାହତ । ଦ୍ୱିତୀୟ ଦିବସ । ଭାଇସ୍‌ରୟ ଗୃହମନ୍ତ୍ରୀ ଭି.ପି. ମେନନ୍‌ଙ୍କୁ ପ୍ଲାନଟି ଦେଲେ । ପ୍ଲାନ୍‌ଟିର ଭୌଗୋଳିକ ସ୍ଥିତି ପରିବର୍ତ୍ତନ ପାଇଁ ନିର୍ଦ୍ଦେଶ ଦେଲେ । ମେନନ୍ ଓ ଇସ୍‌ମେ ମାତ୍ର ଛଅ ଘଣ୍ଟା ପ୍ଲାନଟିର ପୁନର୍ବିନ୍ୟାଶ କଲେ । କଂଗ୍ରେସ ଏହି ପ୍ଲାନ୍‌ଟିକୁ ଗ୍ରହଣ କଲା । ବ୍ରିଟିଶ୍ ପାର୍ଲାମେଣ୍ଟ ଏହି ପରିବର୍ତ୍ତିତ ପ୍ଲାନକୁ ସ୍ୱୀକୃତି ପ୍ରଦାନ କଲା । ଭାରତର ଉଚ୍ଛୃଙ୍ଖଳ ମଦ୍ୟପ ଯୌନାଚାରୀ ରାଜା ଓ ମହାରାଜାଙ୍କ ଦାୟିତ୍ୱରେ ଥିବା କନରାଡ୍ କୋରଫିଲ୍‌ଡ ସେମାନଙ୍କର ରଙ୍ଗୀନ ଇତିହାସକୁ ଅଗ୍ନି ସଂଯୋଗ କରି ଧୂଆଁରେ ପରିଣତ କରିଦେଲେ ।

ଜୁନ୍ ଦୁଇ ତାରିଖ । କଅଁଳ ସକାଳ । ରାଜଭବନରେ ଡକାଯାଇଛି ଏକ ଗୁରୁତ୍ୱପୂର୍ଣ୍ଣ ବୈଠକ । ଯୋଗ ଦେଇଛନ୍ତି ନେହେରୁ, ପଟେଲ, ଆଚାର୍ଯ୍ୟ କୃପାଳିନୀ, ଜିନ୍ନା, ଲିଆକତ୍ ଅଲ୍ଲୀ ଏବଂ ବଳଦେବ ସିଂହ । ଭାଇସରୟ ବସିଛନ୍ତି ଟେବୁଲ୍‌ର କେନ୍ଦ୍ରରେ । ସମସ୍ତଙ୍କ ନିକଟରେ ପ୍ଲାନର ଏକକିତା ନକଲ । ଭାଇସ୍‌ରୟ ପ୍ଲାନଟିକୁ ଗ୍ରହଣ କରି ନେବାକୁ ସମସ୍ତଙ୍କୁ ଅନରୋଧ କଲେ । ଗାନ୍ଧିଜୀ ଆସିଲେ ୧୨.୩୦ରେ । ପାଞ୍ଚଟି ଲଫାପାରେ ନିଜର ହୃଦୟ ବିଦାରକ ପ୍ରତିକ୍ରିୟା ଉଲ୍ଲେଖ କରି ଭାଇସ୍‌ରାୟଙ୍କୁ ପ୍ରଦାନ କଲେ । ସେ ଦିନ ଥିଲା ଗାନ୍ଧିଜୀଙ୍କର ମୌନ ଦିବସ । ଗାନ୍ଧିଜୀ ନୀରବରେ ରାଜଭବନ ପରିତ୍ୟାଗ କଲେ । ଭାଇସ୍‌ରୟ ଚାହିଁ ରହିଥିଲେ ତାଙ୍କ ଚଲାପଥକୁ । ଗାନ୍ଧି ଯୁଗ ଶେଷ ହୋଇଆସୁଛି । ଚାରିଆଡ଼େ ନୀରବତା । ବୈଠକରେ କେବଳ ନିଶ୍ୱାସର ଶବ୍ଦ । ନେହେରୁ ଓ ବଳଦେବ ସିଂହ ପ୍ଲାନଟିକୁ ସ୍ୱୀକୃତି ପ୍ରଦାନ କଲେ । କଲେ ନାହିଁ ଜିନ୍ନା । ତାଙ୍କର ମଧ ଥିଲା ମୌନ

ବ୍ରତ । ସେ ସମୟ ଚାହିଁଲେ । ମାତ୍ର ଭାଇସ୍‌ରୟଙ୍କ କଣ୍ଠସ୍ୱର ରୁକ୍ଷ ହୋଇଗଲା । ସେ ଧମକପୂର୍ଣ୍ଣ ବାକ୍ୟରେ କହିଲେ "ଦେଖ ଜିନ୍ନା ! ତୁମର ଦିବାସ୍ୱପ୍ନ ସାକାର ହୋଇଛି । ତୁମେ ପାଇଛ ପାକିସ୍ତାନ । ଏହା ବିଶ୍ୱ ଇତିହାସରେ ଏକ ବିରଳ ଦୃଷ୍ଟାନ୍ତ । ତୁମେ ପାକିସ୍ତାନ ନେଇ ଫେରିଯିବ ନା ସବୁଦିନ ପାଇଁ ପାକିସ୍ତାନ ହରାଇ ବସିବ ? ତୁମେ ମୁଣ୍ଡ ହଲାଇ ସମ୍ମତି ପ୍ରଦାନ କର ନଚେତ୍ ସବୁଦିନ ପାଇଁ ପାକିସ୍ତାନ ଆଶା ପରିତ୍ୟାଗ କରି ଶୂନ୍ୟ ହାତରେ ଫେରିଯାଅ । ପରେ ମୁଁ ତୁମର କୌଣସି କଥା ଶୁଣିବି ନାହିଁ ।"

ଧର୍ମାନ୍ଧ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ମୁଣ୍ଡରେ ହତାଶା ଓ ଔଦ୍ଧତ୍ୟର ମିଶ୍ର ପ୍ରତିକ୍ରିୟା । ହୁଏତ ଏହିଠାରୁ ଇତିହାସର ଗତିପଥର ପରିବର୍ତ୍ତନ ହେବ । ସେ ପାକିସ୍ତାନ ନେଇ ଚାଲିଯିବେ ନା- ସବୁଦିନ ପାଇଁ ପାକିସ୍ତାନ ଆଶା ପରିତ୍ୟାଗ କରି ଫେରିଯିବେ ରିକ୍ତ ହସ୍ତରେ ? ଭାଇସରୟ ଜିନ୍ନାଙ୍କର ଅଙ୍ଗଭଙ୍ଗୀକୁ ଅନୁଧ୍ୟାନ କରୁଥାନ୍ତି । ଜିନ୍ନା ଭାଇସ୍‌ରୟଙ୍କ ଖୁବ୍ ନିକଟରେ ଦକ୍ଷିଣକୁ ବସିଛନ୍ତି । ପ୍ରକୋଷ୍ଠରେ ଶୂନ୍ୟତା । କ'ଣ କରିବେ ? ଆଗକୁ ନା ପଛକୁ ? ଜିନ୍ନାଙ୍କ ମୁଖମଣ୍ଡଳରେ ସ୍ୱେଦ ବିନ୍ଦୁର ଧାର । ଉର୍ଦ୍ଧ୍ୱକୁ ଚାହୁଁଛନ୍ତି । ଚାହୁଁଛନ୍ତି ନିମ୍ନକୁ । ସେ ଏକ ଅନ୍ଧ ଗଳିରେ ଫଶିଯାଇଛନ୍ତି । ଶେଷରେ ମୁଣ୍ଡ ହଲାଇ ସମ୍ମତି ପ୍ରଦାନ କଲେ । ଭାଇସ୍‌ରୟ ଦୀର୍ଘଶ୍ୱାସ ଛାଡ଼ିଲେ । ୩୪ ପୃଷ୍ଠା ବିଶିଷ୍ଟ ଏହି 'ଜୁନ୍ ପ୍ଲାନ୍'କୁ ଦୁଇ ହାତରେ ଟେକି ଧରି ମୁଣ୍ଡ ଉପରକୁ ନେଲେ । ପ୍ଲାନଟିର ପୁରା ନାମ ଥିଲା- ବିଭାଜନ ପରବର୍ତ୍ତୀ ଆଇନ ବ୍ୟବସ୍ଥାର ଦୃଶ୍ୟପଟ । ବୈଠକ ସମାପ୍ତି ଘୋଷଣା କଲେ ଭାଇସ୍‌ରୟ

କୌଣସି ଏକ ମସ୍‌ଜିଦ୍‌ରୁ ଭାସି ଆସୁଥିଲା ସକରୁଣ କଣ୍ଠସ୍ୱର 'ଆଲ୍ଲା ହୋ ଆକ୍‌ବର୍' ।

*ଔଖଣ୍ଡ-କୁରୁଜଙ୍ଗ*
*ଚାନ୍ଦୋଳ, କେନ୍ଦ୍ରାପଡ଼ା*

# ସାମନ୍ତ ଚନ୍ଦ୍ରଶେଖରଙ୍କ ଜ୍ୟୋତିର୍ଯନ୍ତ

ଇଂ. ମାୟାଧର ସ୍ୱାଇଁ (୩୭୦)

ଭାରତରେ ବହୁ ପ୍ରାଚୀନ କାଳରୁ ଜ୍ୟୋତିର୍ବିଜ୍ଞାନ ଉପରେ ଚର୍ଚ୍ଚା ଓ ଗବେଷଣା ହୋଇଛି ଏବଂ ଅନେକ ପୁସ୍ତକ ରଚିତ ହୋଇଛି । ଜ୍ୟୋତିର୍ବିଜ୍ଞାନ ସମ୍ବନ୍ଧୀୟ ପୁସ୍ତକଗୁଡ଼ିକୁ ସିଦ୍ଧାନ୍ତ କୁହାଯାଉଥିଲା । ଚତୁର୍ଥ ଶତାବ୍ଦୀରେ ରଚିତ 'ସୂର୍ଯ୍ୟ ସିଦ୍ଧାନ୍ତ' ହେଉଛି ସବୁଠାରୁ ପ୍ରାଚୀନ ସିଦ୍ଧାନ୍ତ । ଏହାପରେ ଆର୍ଯ୍ୟଭଟ୍ଟ, ବ୍ରହ୍ମଗୁପ୍ତ, ବରାହମିହିର, ଭାସ୍କରାଚାର୍ଯ୍ୟ ଆଦି ମନୀଷୀ ନିଜ ନିଜର ସାଧନା ବଳରେ ଅନେକ ନୂତନ ତଥ୍ୟ ଆବିଷ୍କାର କରି ସିଦ୍ଧାନ୍ତମାନ ପ୍ରକାଶ କରିଛନ୍ତି । ସିଦ୍ଧାନ୍ତିକ ଜ୍ୟୋତିର୍ବିତ୍‌ମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ହେଉଛନ୍ତି ସାମନ୍ତ ଚନ୍ଦ୍ରଶେଖର ।

ସାମନ୍ତ ଚନ୍ଦ୍ରଶେଖର ଓଡ଼ିଶାର ଗଡ଼ଜାତ ରାଜ୍ୟ ଖଣ୍ଡପଡ଼ା ରାଜବଂଶରେ ୧୮୩୫ ମସିହା ଡିସେମ୍ବର ୧୩ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ୟାମବନ୍ଧୁ ସିଂହ ଏବଂ ମାତାଙ୍କ ନାମ ବିଷ୍ଣୁମାଳୀ ଦେବୀ । ତାଙ୍କର ପୁରା ନାମ ହେଉଛି ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ ହରିଚନ୍ଦନ ମହାପାତ୍ର । ଏଥିରେ ମହାମହୋପାଧ୍ୟାୟ ଓ ହରିଚନ୍ଦନ ମହାପାତ୍ର ହେଉଛି ତାଙ୍କୁ ମିଳିଥିବା ଦୁଇଟି ଉପାଧି । ପ୍ରଥମଟି ବ୍ରିଟିଶ୍ ସରକାର ଏବଂ ଦ୍ୱିତୀୟ ଉପାଧିଟି ପୁରୀର ଗଜପତି ତାଙ୍କୁ ପ୍ରଦାନ କରିଥିଲେ । କିନ୍ତୁ ଓଡ଼ିଶାରେ ସେ ଘରେ ଘରେ ପଠାଣି ସାମନ୍ତ ନାମରେ ପରିଚିତ । ଏହି ସମ୍ବନ୍ଧରେ ଏକ କିମ୍ବଦନ୍ତୀ ଅଛି । ଚନ୍ଦ୍ରଶେଖରଙ୍କ ପୂର୍ବରୁ ତାଙ୍କ ପିତାମାତାଙ୍କର ନଅ ଝିଅ ଓ ଗୋଟିଏ ପୁତ୍ର ସନ୍ତାନ ଜନ୍ମ ହୋଇଥିଲେ । ସେଥିରୁ ଦୁଇଟି ଝିଅ ଓ ପୁଅଟି ମରିଯିବାରୁ ପିତାମାତା ତାଙ୍କ ନାମ ରଖିଲେ ପଠାଣି । ଏହା ହେଉଛି ପଠାଣର ଅପଭ୍ରଂଶ । ବିଶ୍ୱାସ, ଏମିତି ନାମ ଦେଲେ ଯମ ଛୁଇଁବ ନାହିଁ ।

ସେତେବେଳେ ଆଜି କାଲିକା ଭଳି ଗ୍ରାମେ ଗ୍ରାମେ ସ୍କୁଲ୍ ନଥିଲା । ତେଣୁ ଚନ୍ଦ୍ରଶେଖର ଖଣ୍ଡପଡ଼ାର କେତେଜଣ ବ୍ରାହ୍ମଣ ପଣ୍ଡିତଙ୍କ ଠାରୁ ପ୍ରାଥମିକ ଶିକ୍ଷା ଗ୍ରହଣ କରିଥିଲେ । ସେଥିରେ ସେ ଓଡ଼ିଆ ଭାଷା, ଗଣିତ ଓ ସଂସ୍କୃତ ଶିକ୍ଷା ଲାଭ କରିଥିଲେ । ପରେ ଓଡ଼ିଆ ସାହିତ୍ୟ, ପୁରାଣ, ବ୍ୟାକରଣ ଓ ସଂସ୍କୃତ ଶାସ୍ତ୍ର ଅଧ୍ୟୟନ କରିଥିଲେ । ରାଜବଂଶର ପୁସ୍ତକାଗାରରୁ ସଂସ୍କୃତ ପୋଥିରୁ ଗଣିତ ଓ ଜ୍ୟୋତିର୍ବିଜ୍ଞାନ ଗ୍ରନ୍ଥ ଗୁଡ଼ିକୁ ଆପେ ଆପେ ଆୟତ୍ତ କରିଥିଲେ । ଚଉଦବର୍ଷ ବେଳକୁ ସେ ଆର୍ଯ୍ୟଭଟ୍ଟଙ୍କ ଆର୍ଯ୍ୟଭଟ୍ଟୀୟ, ଭାସ୍କରାଚାର୍ଯ୍ୟଙ୍କ ସିଦ୍ଧାନ୍ତ ଶିରୋମଣି ଓ ସୂର୍ଯ୍ୟ ସିଦ୍ଧାନ୍ତ ଆଦି ଗ୍ରନ୍ଥ ଗୁଡ଼ିକୁ ପଢ଼ି ସାରିଥିଲେ ।

ସେ ଲକ୍ଷ୍ୟ କଲେ ଯେ ପୂର୍ବ ସିଦ୍ଧାନ୍ତ ଶାସ୍ତ୍ର ଅନୁସାରେ ଲିଖିତ ପଞ୍ଜିକାର ଗଣନା ଓ ବାସ୍ତବ ପର୍ଯ୍ୟବେକ୍ଷଣ ମଧ୍ୟରେ ପାର୍ଥକ୍ୟ ରହୁଛି । ଫଳରେ ତିଥି, ଲଗ୍ନ ଆଦିର ଗଣନା ଠିକ୍ ରହୁ ନାହିଁ । ଏଥିପାଇଁ ସେ ନିଜେ ଗ୍ରହ ଓ ନକ୍ଷତ୍ରର ଗତିବିଧି ଲକ୍ଷ୍ୟ କରି ପୁରାତନ ପଞ୍ଜିକାର ସଂସ୍କାର ଆଣିବାକୁ ଚେଷ୍ଟା କଲେ ।

ଚନ୍ଦ୍ରଶେଖର ନିଜର ସମସ୍ତ ଜ୍ୟୋତିର୍ବିଦୀୟ ପର୍ଯ୍ୟବେକ୍ଷଣକୁ 'ସିଦ୍ଧାନ୍ତ ଦର୍ପଣ' ପୁସ୍ତକରେ ଲିପିବଦ୍ଧ କରି ଯାଇଛନ୍ତି । ୧୪ ବର୍ଷରୁ ୩୪ ବର୍ଷ ପର୍ଯ୍ୟନ୍ତ ଦୀର୍ଘ ୨୦ ବର୍ଷ କାଳ ପର୍ଯ୍ୟବେକ୍ଷଣ ଓ ଅନୁଶୀଳନ କରି ସେ ୧୮୬୯ ମସିହାରେ ଏହି ପୁସ୍ତକଟିକୁ ସମ୍ପୂର୍ଣ୍ଣ କଲେ । ସେ ଏହାକୁ ଓଡ଼ିଆ ଲିପିରେ ସଂସ୍କୃତ ଭାଷାରେ ଶ୍ଳୋକ ଆକାରରେ ତାଳପତ୍ର ପୋଥିରେ ଲେଖିଛନ୍ତି । ୨୪ଟି ଅଧ୍ୟାୟରେ ଏଥିରେ ମୋଟ୍ ୨୫୦୦ଟି ଶ୍ଳୋକ ଅଛି । ଏଥି ମଧ୍ୟରୁ ସେ ୨୧୬ଟି ଶ୍ଳୋକ ପୂର୍ବ ସିଦ୍ଧାନ୍ତ ଗୁଡ଼ିକରୁ ନେଇଛନ୍ତି ଓ ଅବଶିଷ୍ଟ ନିଜେ ରଚନା କରିଛନ୍ତି । କଟକ କଲେଜ (ବର୍ତ୍ତମାନର ରେଭେନ୍ସା ବିଶ୍ୱବିଦ୍ୟାଳୟ)ର ପଦାର୍ଥ ବିଜ୍ଞାନର ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟଙ୍କ ଉଦ୍ୟମରେ ଏହା ୧୮୯୯ ମସିହାରେ ଦେବନାଗରୀ ଲିପିରେ କଲିକତାରେ ମୁଦ୍ରିତ ହେଲା ।

ଚନ୍ଦ୍ରଶେଖର ୧୯୦୪ ମସିହା ଜୁନ୍ ୧୧ ତାରିଖରେ ପୁରୀଠାରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କ ସ୍ମୃତିରେ କବିବର ରାଧାନାଥ ରାୟ 'ଦରବାର' କାବ୍ୟରେ ଲେଖିଛନ୍ତି-

ହେ ଉତ୍କଳମାତା ଯୋଗ୍ୟତମ ସୁତ<br>
ତୁମ୍ଭ ଯୋଗୁଁ ଆମ୍ଭେ ସର୍ବେ ହେଲୁ ପୂତ ।<br>
ଉତ୍କଳ ହୃଦୟ ଅଚଳେ ଭାସ୍କର<br>
ହେଲ ଭାରତର ଦ୍ୱିତୀୟ ଭାସ୍କର ।<br>
'ସିଦ୍ଧାନ୍ତ ଦର୍ପଣ' ହେବ ନାହିଁ ଲୟ<br>
ନର ଦେହେ ଥିବ ଯାବତ ହୃଦୟ<br>
ମର ଦେହ ତୁମ୍ଭ ଗ୍ରାସିଛି ଶ୍ମଶାନ<br>
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ୍ ।

ଚନ୍ଦ୍ରଶେଖରଙ୍କ ବେଳକୁ ଯଦିଓ ଦୂରବୀକ୍ଷଣ ଯନ୍ତ୍ର ବାହାରିଲାଣି, ସେ ଖଣ୍ଡପଡ଼ା ଭଳି ବଣ, ପାହାଡ଼ ଘେରା ଜାଗାରେ ଥାଇ ଏହା ବିଷୟରେ ଜାଣି ନଥିଲେ । କଟକରେ ଯୋଗେଶଚନ୍ଦ୍ରଙ୍କ ସହିତ ଭେଟ ହେବା ଅବସରରେ ସେ ପ୍ରଥମଥର ପାଇଁ ଦୂରବୀକ୍ଷଣ ଯନ୍ତ୍ରରେ ଗ୍ରହ, ନକ୍ଷତ୍ର ଦେଖିଥିଲେ । ସେ ଏଥିରେ ଗ୍ରହ ଓ ନକ୍ଷତ୍ରକୁ ବଡ଼ ବଡ଼ ଆକାରରେ ଦେଖି ଚକିତ ହେବା ସଙ୍ଗେ ସଙ୍ଗେ ମୁଗ୍ଧ ମଧ୍ୟ ହୋଇଗଲେ । ସେ ଦୁଃଖ ପ୍ରକାଶ କରି କହିଥିଲେ ଯେ ଏ ସୁଯୋଗ ତାଙ୍କୁ ପୂର୍ବରୁ ମିଳିଥାଆନ୍ତା କି !

ଚନ୍ଦ୍ରଶେଖର ନିଜେ ଦଶ ପ୍ରକାର ଯନ୍ତ୍ର ତିଆରି କରି ତାହା ସାହାଯ୍ୟରେ ଗ୍ରହ, ନକ୍ଷତ୍ରମାନଙ୍କର ଗତିବିଧି, ଧ୍ରୁବ ଓ କ୍ରାନ୍ତି ମାପ କରିଥିଲେ । ସେ ଅତି ସହଜରେ ମିଳୁଥିବା କାଠ, ବାଉଁଶ କାଠି, ପଟା ଓ ପାତିଆ ଆଦି ନେଇ ଏହିସବୁ ଯନ୍ତ୍ର ତିଆରି କରିଥିଲେ । ତେଣୁ ଏସବୁ ଶସ୍ତା ଓ ସରଳ ଏବଂ ଆକାରରେ ମଧ୍ୟ ଯଥେଷ୍ଟ ସାନ । ଏସବୁ ଯନ୍ତ୍ରକୁ ସହଜରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ମାପଚୁପ ପାଇଁ ନିଆଯାଇପାରୁଥିଲା । ଯନ୍ତ୍ର ମଧ୍ୟରେ ଦୁଇଖଣ୍ଡ କାଠିରୁ ତିଆରି ମାନଯନ୍ତ୍ର, ବାଉଁଶ ଖଡ଼ିକାରୁ ତିଆରି ଖଗୋଳ ଯନ୍ତ୍ର, ଶଙ୍କୁ ଦଣ୍ଡ, ଗୋଳ ଯନ୍ତ୍ର, ଉଲ୍ଲସୀ ଚକ୍ର, ସୂର୍ଯ୍ୟ ଘଡ଼ି ଆଦି ପ୍ରଧାନ ଥିଲା ।

**ମାନଯନ୍ତ୍ର :**

ଇଂରାଜୀ ଅକ୍ଷର 'ଟି'ର ଓଲଟା ଆକାରର ଦୁଇଖଣ୍ଡ କାଠର ଏକ ଯନ୍ତ୍ର ହେଉଛି ମାନଯନ୍ତ୍ର । ଭୂସମାନ୍ତର ଭାବେ ଥିବା ଏକ ବାଡ଼ିରେ ଭୂଲମ୍ବ ଭାବେ ଅନ୍ୟ ଏକ ବାଡ଼ି ଖଞ୍ଜା ଯାଉଥାଏ । ଭୂଲମ୍ବ ବାଡ଼ିକୁ କାଟି ପ୍ରତି ଚାରିଡିଗ୍ରୀ ଅନ୍ତରରେ ପାହାଚ ପାହାଚ କରାଯାଇଥାଏ ଏବଂ ପ୍ରତି ପାହାଚ ପୁଣି ଆଠ ଭାଗରେ ବିଭକ୍ତ ହୋଇଥାଏ । ଫଳରେ ଯନ୍ତ୍ରରୁ ସର୍ବନିମ୍ନ ଅଧ ଡିଗ୍ରୀ ପରିମିତ କୋଣ ମାପି ହୁଏ । ଏହାର କାର୍ଯ୍ୟପ୍ରଣାଳୀ ସରଳ ତ୍ରିକୋଣମିତିର ସୂତ୍ର ଉପରେ ପର୍ଯ୍ୟବେସିତ ।

ମାନଯନ୍ତ୍ରକୁ ନେଇ ଚନ୍ଦ୍ରଶେଖରଙ୍କ ଜୀବନର ଦୁଇଟି ଘଟଣାକୁ ଏଠାରେ ଉଲ୍ଲେଖ କରିବା ସମୀଚୀନ ହେବ । ୧୮୬୬ ମସିହାରେ ତାଙ୍କ ପୁତୁରା ତଥା ଖଣ୍ଡପଡ଼ାର ରାଜା ନଟବର ସିଂହଙ୍କ ବିବାହ ଉତ୍ସବରେ ସେ ବରଯାତ୍ରୀ ଭାବେ ପାରିକୁଦ ଯାଇଥିଲେ । ସେଠାରେ ତାଙ୍କର ମଞ୍ଜୁଷା ରାଜା ଶ୍ରୀଜଗନ୍ନାଥ ରାଜମଣି ଦେବଙ୍କ ସହ ସାକ୍ଷାତ ହେଲା । ସେତେବେଳକୁ ଜଣେ ଜ୍ୟୋତିର୍ବିଦ୍ ଭାବେ ତାଙ୍କର ଖ୍ୟାତି ଥିଲା । ମଞ୍ଜୁଷା ରାଜା ତାଙ୍କୁ ନିଜ ରାଜ୍ୟକୁ ନିମନ୍ତ୍ରଣ କଲେ । ତାଙ୍କ ରାଜପ୍ରାସାଦରୁ ମହେନ୍ଦ୍ରଗିରି ପର୍ବତର ଉଚ୍ଚତା ନିର୍ଣ୍ଣୟ କରିବା ପାଇଁ ସେ ଚନ୍ଦ୍ରଶେଖରଙ୍କୁ କହିଲେ । ଚନ୍ଦ୍ରଶେଖର ଦୁଇଖଣ୍ଡ କାଠି ସାହାଯ୍ୟରେ ନିଜର ମାନଯନ୍ତ୍ର ତିଆରି କରି ପର୍ବତର ଉଚ୍ଚତା କହିଲେ । ରାଜା ପୁସ୍ତକରେ ଥିବା ଉଚ୍ଚତା ସହ ଏହାକୁ ମିଳାଇବା ପରେ ଆଶ୍ଚର୍ଯ୍ୟ ହେଲେ ।

ମାନଯନ୍ତ୍ର ସମ୍ବନ୍ଧୀୟ ଦ୍ୱିତୀୟ ଘଟଣା ୧୮୯୩ ମସିହାରେ ଘଟିଥିଲା । ମହାମହୋପାଧ୍ୟାୟ ଉପାଧି ଗ୍ରହଣ କରିବା ପାଇଁ ଚନ୍ଦ୍ରଶେଖର କଟକ ଆସିଥିଲେ । ସେଠାରେ କମିଶନର କୁକ୍ ସାହେବ ସେଠାକୁ ଦେଖାଯାଉଥିବା ଢେଙ୍କାନାଳର ସପ୍ତଶଯ୍ୟା ପର୍ବତର ଉଚ୍ଚତା ମାପ କରିବା ପାଇଁ କହିବା ପରେ ଚନ୍ଦ୍ରଶେଖର ମାନଯନ୍ତ୍ର ସାହାଯ୍ୟରେ ଏହାର ସଠିକ୍ ଉଚ୍ଚତା ନିର୍ଣ୍ଣୟ କରିଥିଲେ । ବାସ୍ତବରେ କମିଶନର ସାହେବ ତାଙ୍କର ପରୀକ୍ଷା ନେଉଥିଲେ କହିଲେ ଚଳେ ।

**ଶଙ୍କୁ :**

ସମତଳ ଭୂମିରେ ପୋତା ଯାଇଥିବା ଘର ଏକକର ଏକ ସଳଖ ଦଣ୍ଡକୁ ଶଙ୍କୁ କୁହାଯାଏ । ଏହାର ଛାୟା ସୂର୍ଯ୍ୟର ଗତି ଅନୁସାରେ ଉଭୟ ଦୈର୍ଘ୍ୟ ଓ ପ୍ରସ୍ଥ କ୍ରମାଗତ ବଦଳୁଥାଏ । ଏହି ଛାୟାର ଦୈର୍ଘ୍ୟରୁ ସୂର୍ଯ୍ୟର କୌଣିକ ଉନ୍ନତି, କ୍ରାନ୍ତି, ରାଶିଚକ୍ରର ଅବସ୍ଥାନ ତଥା ସ୍ଥାନୀୟ ଅକ୍ଷାଂଶ, ସମୟ ଓ ଦିଗ ନିରୂପଣ କରାଯାଇଥାଏ ।

**ଗୋଳଯନ୍ତ୍ର :**

ଏହା ହେଉଛି ମହାକାଶ ଗୋଲକର ଏକ କ୍ଷୁଦ୍ର ମଡେଲ୍ । ମହାକାଶ ଗୋଲକକୁ ସୂଚନା କରୁଥିବା ବିଭିନ୍ନ ବୃତ୍ତ ଯଥା- କ୍ରାନ୍ତି ବୃତ୍ତ, ଆକାଶ ବିଷୁବ, ଗ୍ରହକକ୍ଷ ବୃତ୍ତ ଆଦି ଏହି ଯନ୍ତ୍ରରେ ସଂଯୁକ୍ତ ଥାଏ । ଏହାର କେନ୍ଦ୍ରରେ ଥିବା ଏକ ରନ୍ଧ୍ରରୁ ନିରୀକ୍ଷଣ କରି କୌଣସି ଗ୍ରହର ଧ୍ରୁବ ଓ କ୍ରାନ୍ତି ଗଣନା କରାଯାଏ । ଏହା ଦ୍ୱାରା ମଧ୍ୟ କୌଣସି ଗ୍ରହର ଗତିକୁ ଅନୁଧ୍ୟାନ କରିହୁଏ ।

**ସୂର୍ଯ୍ୟଘଡ଼ି :**

ଏକ ସମତଳ ଉପରେ ସମକୋଣୀ ତ୍ରିଭୁଜାକାର ଫଳକକୁ ଏପରି ରଖାଯାଏ, ଯେମିତିକି ଏହାର କର୍ଣ୍ଣ ଧ୍ରୁବତାରାକୁ ସୂଚାଇଥାଏ । ଚିହ୍ନିତ ବୃତ୍ତ ଉପରେ ଫଳକର ଛାୟାରୁ ସମୟ ମପାଯାଇଥାଏ । ଏହା ସ୍ଥାନୀୟ ସମୟକୁ ସୂଚିତ କରିଥାଏ ।

ଭୁବନେଶ୍ୱରର କେଦାର ଗୌରୀ ମନ୍ଦିର ପରିସରରେ ପଥର ଉପରେ ଅଙ୍କିତ ଏକ ପ୍ରାଚୀନ ସୂର୍ଯ୍ୟଘଡ଼ି ଅଛି । ରେଭେନ୍ସା ବିଶ୍ୱବିଦ୍ୟାଳୟର କନିକା ପାଠାଗାର ସମ୍ମୁଖରେ ଏକ ଧାତବ ସୂର୍ଯ୍ୟଘଡ଼ି ଅଛି । କୋଣାର୍କ ମନ୍ଦିର ପରିସରରେ ଓ କେନ୍ଦ୍ରାପଡ଼ାର ମୁଖ୍ୟ ଡାକଘର ସାମନାରେ ପରିତ୍ୟକ୍ତ ଅବସ୍ଥାରେ ସୂର୍ଯ୍ୟଘଡ଼ି ଅଛି ।

**ଚାପଯନ୍ତ୍ର :**

ଏହା ହେଉଛି ବିଷୁବୀୟ ସୂର୍ଯ୍ୟଘଡ଼ି । ଏଥିରେ ଅର୍ଦ୍ଧ ବୃତ୍ତାକାର ଫଳକଟିଏ ଆକାଶ ବିଷୁବର ସମତଳରେ ଆନତ କରି ରଖାଯାଏ । ଏଥିରେ ପୂର୍ବ ପରି ଛାୟା ପ୍ରଦାନକାରୀ ଦଣ୍ଡ ଧ୍ରୁବ ଦିଗକୁ ରହିଥାଏ । ବୃତ୍ତ ଉପରେ ଛାୟାକୁ ମାପ କରି ସମୟ ଜାଣି ହୁଏ । ଖଣ୍ଡପଡ଼ାଗଡ଼ ଏବଂ ବଡ଼ମ୍ବା ତହସିଲ ପରିସରରେ ଚାପ ଯନ୍ତ୍ର ସ୍ଥାପିତ ହୋଇଛି ।

**ଜଳଘଡ଼ି :**

ଗୋଟିଏ ଜଳପୂର୍ଣ୍ଣ ପାତ୍ରରୁ ଛିଦ୍ର ଦ୍ୱାରା ଜଳ ନିର୍ଗତ ହୋଇଥାଏ । ପାତ୍ରରେ ଗୋଟିଏ ଅର୍ଦ୍ଧଗୋଲକ ଭାସମାନ ଅବସ୍ଥାରେ ଥାଏ ଏବଂ ଏହା ସୂତା ଦ୍ୱାରା ଗୋଟିଏ ଅଂଶାଙ୍କିତ ଚକି ସହ ଲାଗିଥାଏ । ଛିଦ୍ରରେ ଜଳ ନିର୍ଗତ ହେବା ଦ୍ୱାରା ଅର୍ଦ୍ଧଗୋଲକ କ୍ରମଶଃ ତଳକୁ

ତଳ ଯାଇଥାଏ ଏବଂ ଫଳରେ ଚକି ଘୁରି ସମୟ ସୂଚନା ପ୍ରଦାନ କରିଥାଏ ।

ଚନ୍ଦ୍ରଶେଖର ଏସବୁ ଯନ୍ତ୍ର ବ୍ୟତୀତ ଆକାଶରେ ଦୁଇଟି ଜ୍ୟୋତିଷ୍କ ମଧ୍ୟରେ ଥିବା କୌଣିକ ଦୂରତା ମାପିବା ପାଇଁ ଧନୁର୍ଯନ୍ତ୍ର ଏବଂ ସାଧାରଣ ଦର୍ଶକଙ୍କୁ କୌଣସି ଗ୍ରହ କିମ୍ବା ନକ୍ଷତ୍ରକୁ ଦେଖାଇବା ପାଇଁ ନଳିକା ଯନ୍ତ୍ର ମଧ୍ୟ ନିର୍ମାଣ କରିଥିଲେ ।

**ସହାୟକ ପୁସ୍ତକ :**


୧. ଆଧୁନିକ ଭାରତର ବୈଜ୍ଞାନିକ- ଇଂ. ମାୟାଧର ସ୍ୱାଇଁ, ବିଦ୍ୟାପୁରୀ, କଟକ (୨୦୧୨)

୨. ପଠାଣି ସାମନ୍ତଙ୍କ ଜ୍ୟୋତିର୍ଯନ୍ତ୍ର- ଡଃ. ପ୍ରହ୍ଲାଦ ଚନ୍ଦ୍ର ନାୟକ, ଦି ବୁକ୍ ପଏଣ୍ଟ, ଭୁବନେଶ୍ୱର

୩. ସିଦ୍ଧାନ୍ତ ଦର୍ପଣ- ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ ହରିଚନ୍ଦନ ମହାପାତ୍ର, ଓଡ଼ିଆ ଅନୁବାଦ, ବୀର ହନୁମାନ ଶାସ୍ତ୍ରୀ, ଉତ୍କଳ ବିଶ୍ୱବିଦ୍ୟାଳୟ

୪. ସାମନ୍ତ ଚନ୍ଦ୍ରଶେଖରଙ୍କ ବ୍ୟବହୃତ ଯନ୍ତ୍ରାବଳୀ- ନିକୁଞ୍ଜ ବିହାରୀ ସାହୁ, ବିଜ୍ଞାନ ଦିଗନ୍ତ, ନଭେମ୍ବର-ଡିସେମ୍ବର ୧୯୯୭ ।



*୭୦, ଲକ୍ଷ୍ମୀବିହାର ଫେଜ-୧,*
*ବରଗଡ଼ ବ୍ରିଟ୍ କଲୋନୀ,*
*ଭୁବନେଶ୍ୱର-୭୫୧୦୧୮*
*ଫୋନ୍: ୯୪୩୮୭୯୩୭୨୪*

# ଶିକ୍ଷାର ଅବମାନନା

**ଶ୍ରୀ ସେବକଚରଣ ଦାଶ (୩୧୯)**

ନୂତନ ସୂର୍ଯ୍ୟର ପ୍ରଖର କିରଣ ପ୍ରଭାବରେ ସମାଜର ଶିକ୍ଷାଦୀକ୍ଷାର ରୀତି ଏକ ନୂତନ ଦିଗନ୍ତରେ ପହଞ୍ଚିଛି । କୌଣସି ଆଦର୍ଶ କାହାଣୀ, ବିଶିଷ୍ଟ ଘଟଣାବଳୀ, ଶାସ୍ତ୍ର, ପୁରାଣର ଆଦର୍ଶ ଚରିତ୍ରର ଉଦାହରଣର ଅବତାରଣା କରିବା ନାହିଁ । ଗୁରୁ ଗୃହରେ ଛାତ୍ରକୁ ଶାରୀରିକ ପରିଶ୍ରମ ଠାରୁ ଆରମ୍ଭ କରି ଦୈନନ୍ଦିନ ଜୀବନଯାପନ ପ୍ରଣାଳୀର ସ୍ମୃତି ନିଶ୍ଚିହ୍ନ ପ୍ରାୟ । ସମୟୋପଯୋଗୀ ରୀତିରେ ଶିକ୍ଷାଦାନ ହେଉଥିବା ପରିଲକ୍ଷିତ ହେଉଛି ।

ଇଂରେଜ ଶାସନ କାଳରେ ସେମାନେ ଉପଲବ୍ଧି କଲେ ଯେ ଭାରତୀୟମାନେ ଇଂରାଜୀ ଶିକ୍ଷା ନପାଇ ତାଙ୍କ ବିରୁଦ୍ଧାଚରଣ କରୁଛନ୍ତି । ତେଣୁ ଦେଶରେ ଇଂରାଜୀ ଶିକ୍ଷାର ପ୍ରଚଳନ କଲେ । ଆମେ ସେହି ଶିକ୍ଷାଲାଭ କରି କାଳିଦାସ, ବ୍ୟାସଦେବ, ବାଲ୍ମିକୀ, ବେଦ, ପୁରାଣ, ଗ୍ରନ୍ଥ ଭୁଲି ସେକ୍ସପିଅର, ମିଲ୍‌ଟନ, ଶେଲୀଙ୍କୁ ଉଚ୍ଚସ୍ଥାନ ଦେଇ ଅନ୍ତରରେ ନିଜକୁ ଇଂରେଜ ବୋଲି ଅନୁଭବ କଲୁ । ବହୁଦିନରୁ ଇଂରେଜ ଶାସନ ଲୁପ୍ତ ହେଲେ ମଧ୍ୟ ଶିକ୍ଷାନୀତିରେ କୌଣସି ପ୍ରକାର ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ହୋଇନାହିଁ । ମ୍ୟାକ୍‌ଲେ ସାହେବ ସେତେବେଳେ ଭାରତୀୟଙ୍କୁ (୧) ଏଡୁକେସନ କୋଡ (୨) ଇଣ୍ଡିଆନ୍ ପେନାଲ୍ କୋଡ ନାମକ ଦୁଇଟି କୋଡ ଦେଇ ଆମକୁ ଶାସନ କଲେ ଓ ଅଦ୍ୟାବଧି ତାହା ଆମ ଦେଶରେ ପ୍ରଚଳିତ ।

ଆମେ ଦେଶରେ ଶିକ୍ଷାକ୍ଷେତ୍ରରେ ସମାନ ରୀତିନୀତି ପରିଦୃଷ୍ଟ ହୁଏ ନାହିଁ । ଆମ ରୀତିର ଶିକ୍ଷା ଓ ଇଂରେଜ ସ୍କୁଲ କଲେଜ ଶିକ୍ଷା ତଥା ଶ୍ରୀଅରବିନ୍ଦ ଶିକ୍ଷା କେନ୍ଦ୍ର ମଧ୍ୟରେ ଅନେକ ତଫାତ୍ ରହିଛି । ସ୍କୁଲ କଲେଜର ବୃଦ୍ଧି ସୁନିଶ୍ଚିତ । କିନ୍ତୁ ଏଗୁଡିକର ନିୟନ୍ତ୍ରଣର ଅଭାବ ପରିଲକ୍ଷିତ ହୁଏ । ଶିଶୁମନ୍ଦିର, ତାଙ୍କର ଶିକ୍ଷାରୀତିନୀତି ପାଠଖସଡ଼ା, ଶିକ୍ଷାଦାନ ପ୍ରଣାଳୀ ଆମ ସରକାରୀ ସ୍କୁଲମାନଙ୍କ ସହିତ ସମାନ ରଖିଛନ୍ତି । ବରଂ ସେଠାରେ ଭାରତୀୟତା, ଜାତୀୟତାଭାବ ଓ ଆମ ସଂସ୍କୃତିର ଶିକ୍ଷା ପରିଲକ୍ଷିତ ହୁଏ ।

ଆମ ସ୍କୁଲ କଲେଜରେ ଶିକ୍ଷାର ମାନ କିପରି ରହିଛି ତାହା ନିର୍ଣ୍ଣୟ କରିବା କାଠିକର ବିଷୟ । ବହୁ ସ୍କୁଲ କଲେଜରେ ଶିକ୍ଷକ, ଅଧ୍ୟାପକ ଅଭାବ, ଉପକରଣ ଅଭାବ, ଶ୍ରେଣୀ ଗୃହ ଅଭାବ, ଉପଯୁକ୍ତ ଶିକ୍ଷାଦାନର ଅଭାବ । କେଉଁଠି ତାଲା ପଡୁଛି ତ କେଉଁଠି ଗଛ ମୂଳରେ ପଢ଼ା ହେଉଛି ।

ଆଜି କେବଳ କେତେଗୁଡ଼ିଏ ପୁସ୍ତକ ପାଠକରି ପରୀକ୍ଷାରେ ପାସ୍ କରିବା ହିଁ ଆମର ଲକ୍ଷ୍ୟ । ପ୍ରମାଣ ପତ୍ରଟିଏ ପାଇଲେ ଯଥେଷ୍ଟ । ମାତ୍ର ଶିକ୍ଷା ଛାତ୍ରର ଜୀବନକୁ କିପରି ପ୍ରଭାବିତ କରିବ ସେଥିପାଇଁ କୌଣସି ଚିନ୍ତା ନାହିଁ । ଆଜିର ଦୁନିଆଁରେ ଶିକ୍ଷା କ୍ଷେତ୍ରକୁ ଏକ ପ୍ରତିଯୋଗିତା କ୍ଷେତ୍ରରେ ପରିଣତ କରାଯାଉଛି । ଯେଉଁ ସ୍କୁଲର ଯେତେ ବେଶି

ଛାତ୍ରଛାତ୍ରୀ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବେ ସେହି ସ୍କୁଲ୍‌ଟି ଉପଯୁକ୍ତ ବିବେଚିତ ହେଉଛି । ଅନେକ କ୍ଷେତ୍ରରେ ଏଥିପାଇଁ ଅସାଧୁ ଉପାୟ ଅବଲମ୍ବନ ହେଉଥିବା ଛାତ୍ର, ଶିକ୍ଷକ, ଅଭିଭାବକ, କର୍ମକର୍ତ୍ତା ସମସ୍ତେ ଜାଣନ୍ତି । ଏହି ଦୋଷ ଜନିତ ଦଣ୍ଡ ମଧ୍ୟ ଭୋଗୁଛନ୍ତି । ତେଣୁ ଅନେକାଂଶରେ ଶିକ୍ଷାର ଅର୍ଥ ଜ୍ଞାନ ଲାଭ ନୁହଁ ବରଂ ପ୍ରମାଣପତ୍ର ଲାଭ । ତେବେ ପରୀକ୍ଷା ନୀତିର ପରିବର୍ତ୍ତନ ପାଇଁ ବାରମ୍ବାର ଯେଉଁସବୁ ଉଦ୍ୟମ ହୋଇଆସୁଛି ତାହା ଫଳପ୍ରଦ ହୋଇପାରୁନାହିଁ ?

ଭାରତୀୟ ଶିକ୍ଷାକ୍ଷେତ୍ରରେ ଆଜି ଯେଉଁ ନୈରାଶ୍ୟଭାବ ଦେଖାଯାଉଛି ତା'ର ପ୍ରତିକାର ପାଇଁ ଚିନ୍ତାନାୟକ, ବିଶିଷ୍ଟ ଶିକ୍ଷାବିତ୍‌ମାନଙ୍କର ଯଥେଷ୍ଟ କର୍ତ୍ତବ୍ୟ ରହିଛି । ଦେଶ ଓ ଜାତିକୁ ଗଠନ କରିବାକୁ ହେଲେ କେବଳ ବହୁ ସଂଖ୍ୟକ ବିଦ୍ୟାଳୟ, ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ ବସାଇଲେ ଚଳିବ ନାହିଁ । ଏ କ୍ଷେତ୍ରରେ ଆନ୍ତରିକ ଉଦ୍ୟମ ପରିଲକ୍ଷିତ ହେବା ଆବଶ୍ୟକ ।

ଆଜି ସହକାରୀ ସ୍କୁଲ କଲେଜର ପ୍ରତ୍ୟେକ କ୍ଷେତ୍ରରେ ଏକ ପ୍ରକାର ଅଧୋପତନ ପରିଲକ୍ଷିତ ହୁଏ । ଏ ସମ୍ପର୍କରେ ତଳେ କେତୋଟି ଉଦାହରଣ ପ୍ରସ୍ତୁତ କରାଯାଇଛି ।

୧. ଆଗ ସହରରେ ସୀମିତ ଅଞ୍ଚଳ ପାଇଁ ଏବଂ ଗ୍ରାମାଞ୍ଚଳରେ କେତେଖଣ୍ଡ ଗାଁକୁ ନେଇ ଗୋଟିଏ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ଥିଲା । ପ୍ରଥମରୁ ତୃତୀୟ ବା ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ସ୍କୁଲ ଚାଲୁଥିଲା । ପାଞ୍ଚଟି ଶ୍ରେଣୀ ପାଇଁ ପାଞ୍ଚଜଣ ଶିକ୍ଷକ ନିଯୁକ୍ତି ପାଉଥିଲେ । ଆଜି ଗୋଟିଏ ଗାଁରେ ଏକାଧିକ ବିଦ୍ୟାଳୟ ଖୋଲି ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଜଣେ, ଦୁଇଜଣ ଶିକ୍ଷକ ଅଧ୍ୟାପନା କାର୍ଯ୍ୟ ଚଳାଉଛନ୍ତି । ଶିକ୍ଷାର ମାନ ଯାହା ହେବାର ହେଉ ସେଥିପ୍ରତି ଧ୍ୟାନ ନାହିଁ ।

୨. ପୂର୍ବରୁ ପ୍ରାୟତଃ ଗୋଟିଏ ଗୋଟିଏ ସବ୍‌ଡିଭିଜନରେ ଗୋଟିଏ ମାତ୍ର ହାଇସ୍କୁଲ ଓ ପରେ ଗୋଟିଏ ଲେଖା କଲେଜ ସ୍ଥାପିତ ହେଲା । ଆବଶ୍ୟକତାନୁସାରେ ଶିକ୍ଷକ ଯୋଗାଇ ଦିଆଯାଉଥିଲା । ଆଜି ପ୍ରତି ଗାଁ, ପଞ୍ଚାୟତ ଏବଂ ବ୍ଲକମାନଙ୍କରେ ହାଇସ୍କୁଲ କଲେଜମାନ ଛତୁ ଫୁଟିଗଲାଣି । ଅଧିକାଂଶ ପ୍ରାଥମିକ ବିଦ୍ୟାଳୟକୁ ଉନ୍ନୀତ ଉଚ୍ଚ ବିଦ୍ୟାଳୟରେ ପରିଣତ କରି ସେଠାରେ ପ୍ରାଥମିକ ଶିକ୍ଷକଙ୍କ ଦ୍ୱାରା ଶିକ୍ଷାଦାନର ବ୍ୟବସ୍ଥା ଚାଲୁଛି । ସେଠାରେ ବିଜ୍ଞାନ, ଗଣିତ, ସଂସ୍କୃତ ଶିକ୍ଷକ କଥା ଛାଡନ୍ତୁ, କାଁ ଭାଁ ସ୍ନାତକ ତାଲିମ ଶିକ୍ଷକ ଦେଖିବାକୁ ମିଳୁଛନ୍ତି । କଲେଜର ଅବସ୍ଥା ମଧ୍ୟ ତଦ୍ରୂପ । ତେବେ ଶିକ୍ଷାର ମାନ କିପରି ରକ୍ଷା ହେବ ?

୩. ଶିକ୍ଷାଦାନ ବ୍ୟତୀତ ଭୋଟର ଲିଷ୍ଟ, ଖାଉଟି କାର୍ଡ, ମଧ୍ୟାହ୍ନ ଭୋଜନ ପରିଚାଳନା, ସ୍କୁଲଘର ପାଇଖାନା, ସ୍କୁଲରେ ରଙ୍ଗଦେବା, ବିଭିନ୍ନ ସର୍ବେକ୍ଷଣ କାମରେ ବ୍ୟସ୍ତ ରହନ୍ତି । ଶିକ୍ଷକ ଶିକ୍ଷୟିତ୍ରୀଗଣ ଏତେ ବ୍ୟସ୍ତ ଯେ ଶିକ୍ଷାଦାନ ପାଇଁ ପୂରାପୂରି ଅକ୍ଷମ । ସରକାର ଶିକ୍ଷାଦାନ ସମ୍ବନ୍ଧୀୟ ବିଭିନ୍ନ ତାଲିମ ଦେଇଦେଲେ କ'ଣ ଶିକ୍ଷାଦାନ ସୁଧୁରିବ ? ଚିନ୍ତାର ବିଷୟ, କିଏ ମୁଖ୍ୟ କିଏ ଗୌଣ । ସ୍କୁଲକୁ ଆସିବା ଯିବା ଏବେ

ମୁଖ୍ୟ କାମ ଏବଂ ଶିକ୍ଷାଦାନ କଥାକୁ ଗୌଣ ବୋଲି ଧରାଗଲାଣି । କାରଣ ପରିଦର୍ଶକ, ଉପରିସ୍ଥ କର୍ମକର୍ତ୍ତା, ଏପରିକି ୱାର୍ଡ ମେମ୍ବର ଆଜି ଜନ ପ୍ରତିନିଧିଙ୍କ ଦୃଷ୍ଟି ଶିକ୍ଷାଦାନ ଉପରେ ନପଡ଼ି ଉପରୋକ୍ତ ଅଣଶିକ୍ଷା ବିଷୟ ଉପରେ ପଡୁଛି । ହେଲେ ଛାତ୍ର ପଢ଼ିବ କିପରି ?

୪. ପ୍ରତ୍ୟେକ ସ୍କୁଲ କଲେଜରେ ଶିକ୍ଷକ ଅଭାବ, ପାଠ୍ୟୋପକରଣ ଅଭାବ ତ ଅନ୍ୟାନ୍ୟ ଉପକରଣ ଯଥା ଖବର କାଗଜ, ଦୂରଦର୍ଶନ, ବେତାର ଯନ୍ତ୍ର ମଧ୍ୟ ଜଣକୁ ମିଳୁଛି । ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବାରମ୍ବାର ଚିମୁଟିଲେ ସେ ସ୍ଥାନଟି ବଧିରା ହୋଇଯାଏ । ସେଇଥିରେ ଶିକ୍ଷାଦାନ ଯେମିତି ଚାଲିବା କଥା ଚାଲୁଛି ।

୫. ସରକାର ଆମ ଦେଶରେ ଭିନ୍ନକ୍ଷମ, ପଛୁଆ ବର୍ଗ ତଥା ଦଳିତ ଜାତିଗତ କୋଟା ରଖିଛନ୍ତି । ପ୍ରତ୍ୟେକ କ୍ଷେତ୍ର ପାଇଁ ସମ୍ବିଧାନାନୁସାରେ ତାଙ୍କର ଅଧିକାର ରହିଛି । ଏହି ଅଧିକାରରୁ ତାଙ୍କୁ ବଞ୍ଚିତ କରି ପାରିବ ନାହିଁ । କିନ୍ତୁ ଏ ପରିପ୍ରେକ୍ଷୀରେ କୁହାଯାଇପାରେ ଯେ ଶିକ୍ଷା ପାଇଁ ମେଧାବୀ, ଗୁଣୀ, ଜ୍ଞାନୀ, ଚରିତ୍ରବାନ ଶିକ୍ଷକ ଓ ଶିକ୍ଷୟିତ୍ରୀ ଅପରିହାର୍ଯ୍ୟ । ଯଦି ଗୋଡ଼ ଦୁଇଟି ମୋଡ଼ି ହୋଇ ଯାଇଥିବ, ସିଧା ସଳଖ ଛିଡ଼ା ହୋଇ ପାରୁନଥିବ, ହାତ ଦୁଇଟି ପଙ୍ଗୁ ହୋଇଥିବ କଳାପଟାରେ ଚକ୍ ଖଣ୍ଡିଏରେ ଲେଖି ପାରୁନଥିବ, ବଧିର ପିଲାଙ୍କୁ ଶୁଣିପାରୁନଥିବ ବା ସର୍ବାଧିକ ଶକ୍ତିଶାଳୀ ଚଷମା ପିନ୍ଧି ମଧ୍ୟ ପୁସ୍ତକର ଅକ୍ଷର ପଢ଼ି ପାରୁନଥିବା ଶିକ୍ଷକ ନିଯୁକ୍ତି ପାଆନ୍ତି । ତେବେ ଏହା କେତେଦୂର ଯୁକ୍ତି ସଂଗତ କାର୍ଯ୍ୟ ଏହା ବିଚାର୍ଯ୍ୟର ବିଷୟ । ଏପରି ସ୍ଥଳେ ଶିକ୍ଷାର ମାନ କ'ଣ ହେବ, ଟିକିଏ ଭାବନ୍ତୁ ।

୬. ଆଜି ଆମ ଦେଶରେ ନାରୀଶିକ୍ଷା, ସହଶିକ୍ଷାର ପ୍ରଚଳନ ହେବା ଫଳରେ ନାରୀମାନେ ସହଶିକ୍ଷାର୍ଥୀନୀ, ସହଧର୍ମିଣୀ, ସହକର୍ମିଣୀ ହେଲେଣି । ସେମାନେ ପ୍ରତ୍ୟେକ କ୍ଷେତ୍ରରେ ସମାନାଧିକାରିଣୀ । ତେବେ ସେମାନେ କର୍ମ କ୍ଷେତ୍ରରେ କାହିଁକି ପୁରୁଷାଧୀନ ହେଉଛନ୍ତି ? ପୁରୁଷମାନେ ନିଜ କର୍ମଛାଡି ନିଜ ଝିଅ, ଭଉଣୀ ଓ ସ୍ତ୍ରୀଙ୍କୁ କର୍ମକ୍ଷେତ୍ରକୁ ନେବା ଆଣିବା ଏପରିକି ତାଙ୍କର ବିଭିନ୍ନ କାମ କରିବାରେ ଏତେ ତତ୍ପର କାହିଁକି ? ଏହାଦ୍ୱାରା ପୁରୁଷମାନଙ୍କ କାମରେ ବାଧା ସୃଷ୍ଟି ହେଉଛି । ସେମାନେ ନିଜ କାମରେ ଅବହେଳା କରୁଛନ୍ତି ।

୭. ସରକାରୀ କର୍ମଚାରୀ ତଥା ୟୁଜିସି ଅଧିନସ୍ଥ ଅଧ୍ୟାପକଙ୍କ ବେତନ ବହୁ ପରିମାଣରେ ବୃଦ୍ଧି ପାଇଛି । ତେବେ ଅନେକ ଅଧ୍ୟାପକ ଅଧ୍ୟାପିକା ନିଜ ନିଜ କଲେଜକୁ କେତେବେଳେ ଆସନ୍ତି, ଯାଆନ୍ତି, କେବେକେବେ ଆସନ୍ତି ନା ନାହିଁ, ଏ ସବୁ ଅଧ୍ୟକ୍ଷମାନେ ଜାଣି ମଧ୍ୟ ଅଜଣା । ଆଉ ଅଧ୍ୟାପନା କଥା ପଚାରେ କିଏ । ଶିକ୍ଷା ଆସିବା ସମୟ ଏପରି ନିର୍ଦ୍ଧାରିତ ହେଉଛି ଯେ ସରକାରୀ, ବେସରକାରୀ, କର୍ମଚାରୀ ପ୍ରାୟ ୨୦୦ (ଦୁଇଶହ) କିଲୋମିଟର ପର୍ଯ୍ୟନ୍ତ ପ୍ରତ୍ୟହ ସକାଳ ୬/୭ଟାରୁ ବାହାରି ନିଜ ନିଜ କାମ ସାରି ସନ୍ଧ୍ୟାସୁଦ୍ଧା ଘରେ ପହଞ୍ଚି ଯାଉଛନ୍ତି । ହେଡକ୍ୱାର୍ଟର ରହିବାକୁ ଜଣେ

ବାଧ ନୁହେଁ । ସେ ଭିତରେ ଯଦି ଟିଉସନଟିଏ ହୋଇପାରୁଛିତ ଆହୁରି ଭଲ କଲେଜ ଶିକ୍ଷାର ମାନକୁ କିଏ ପଚାରେ ।

୮. ସମୟ ଥିଲା ଶିକ୍ଷକ, ଶିକ୍ଷୟିତ୍ରୀ ନିଜ ପୁଅ ଝିଅଙ୍କୁ ନିଜ ସ୍କୁଲରେ ପଢ଼ାଉଥିଲେ । ଏଣୁ ବିଦ୍ୟାଳୟରେ ଶିକ୍ଷାଦାନରେ ଅବହେଳା କରିବାର ପ୍ରଶ୍ନ ନଥିଲା । ଆଜି କିନ୍ତୁ ନିଜ ଉପରେ ବିଶ୍ୱାସ ନାହିଁ । ନିଜ ପିଲାକୁ ଅନ୍ୟ ସ୍କୁଲରେ ଭର୍ତ୍ତି କରାଉଛନ୍ତି । ପବ୍ଲିକ୍ ସ୍କୁଲରେ ନ ପଢ଼ାଇ ନିଜେ ପଢ଼ାଇ ପୁଅକୁ ଉପଯୁକ୍ତ କରାଇପାରିଲେ ସେମାନେ ଗୌରବାନ୍ୱିତ ହୁଅନ୍ତେ । ନିଜ ସ୍କୁଲରେ ଶିକ୍ଷାଦାନରେ ଅବହେଳା କରୁନଥାନ୍ତେ । ଶିକ୍ଷାର ମାନ ବୃଦ୍ଧି ହୁଅନ୍ତା । କିଏ କହିବ ଏ କଥା ?

୯. ଆଜି ପ୍ରତ୍ୟେକ ସରକାରୀ ପ୍ରାଥମିକ, ମାଧ୍ୟମିକ ସ୍କୁଲରେ ଛାତ୍ର ସଂଖ୍ୟା କମିଯିବାର କାରଣ କ'ଣ ? ଆଗେ ଥିଲା ସ୍କୁଲ ଘର ଓ ଶିକ୍ଷକ ଅଭାବ ଏବଂ ଛାତ୍ର ସଂଖ୍ୟା ଅଧିକ । କିନ୍ତୁ ଆଜି ଠିକ୍ ତା'ର ବିପରୀତ । ଏ ପବ୍ଲିକ ସ୍କୁଲରେ ୯୦ରୁ ୯୯ ପ୍ରତିଶତ ଛାତ୍ର ଉତ୍ତୀର୍ଣ୍ଣ ହୁଅନ୍ତି ଓ ସରକାରୀ ସ୍କୁଲମାନଙ୍କରେ ୭୦ରୁ ୮୦ ପ୍ରତିଶତ ଫେଲ ହୁଅନ୍ତି । ରିକ୍ସାବାଲା କିମ୍ବା ହୋଟେଲ ରାନ୍ଧୁଣିଆ ଯେତେ ଅସୁବିଧାରେ ପଡ଼ିଲେ ମଧ୍ୟ ନିଜ ସନ୍ତାନର ଭବିଷ୍ୟତ ପାଇଁ ସେ ପବ୍ଲିକ ସ୍କୁଲରେ ପଢ଼ାଇବାକୁ ଇଚ୍ଛା ପ୍ରକାଶ କରୁଛି ।

୧୦. ଛାତ୍ର ଦୁଷ୍ଟାମି ନ କରିବ, ପାଠରେ ଅବହେଳା ନ କରିବ ତ କିଏ କରିବ ?

ସମାଜରେ ଚରିତ୍ରବାନ ଓ ବ୍ୟକ୍ତିତ୍ୱ ସମ୍ପନ୍ନ ଶିକ୍ଷକଙ୍କର ଅଭାବ ନାହିଁ । କିନ୍ତୁ ସମାଜ ତାଙ୍କୁ ଏପରି ହରଡ଼ଘଣାରେ ପେଷିଦେଉଛି ଯେ ତାଙ୍କ ନୈତିକତା ଆପେ ଆପେ ସ୍ଖଳିତ ହୋଇଯାଉଛି । ବିଶେଷ କରି ଆଜିର ଶିକ୍ଷାନୀତି । ଏ କ୍ଷେତ୍ରରେ ଦଣ୍ଡବିଧାନ ସର୍ବାଦୌ ଉଚିତ, କିନ୍ତୁ ଆଜି ସ୍କୁଲମାନ "ଦଣ୍ଡମୁକ୍ତ ଅଞ୍ଚଳ"ରେ ପରିଣତ ହୋଇଯାଇଛି । ଶିକ୍ଷକମାନେ ତ ନିର୍ଦ୍ଦୟ ନୁହନ୍ତି । ପିତାମାତାଙ୍କ ଠାରୁ ତାଙ୍କର ହୃଦୟ ବିଶାଳ । ଅମାନୁଷିକ ଦଣ୍ଡ ଦେବାକୁ ତାଙ୍କର ହୃଦୟ କମ୍ପି ଉଠେ । ମେଧାବୀ, ଧୀସମ୍ପନ୍ନ, ଉଚ୍ଚଶ୍ରେଣୀରେ ଉତ୍ତୀର୍ଣ୍ଣ ବ୍ୟକ୍ତିଙ୍କୁ ଶିକ୍ଷକତାରେ ନିଯୋଜିତ କରିବା ବିଧେୟ । ଦଣ୍ଡବିଧାନ ନାହିଁ, ଅଧ୍ୟୟନ ଅଧ୍ୟାପନାରେ କୌଣସି ପ୍ରତିବନ୍ଧକ ନାହିଁ ବୋଲି ବୋଧହୁଏ ଛାତ୍ର ସ୍କୁଲ୍‌କୁ ଆସୁନଥାସୁ ପଢୁ ନ ପଢୁ ପରୀକ୍ଷାରେ ବସିଲା ଅର୍ଥ ପରବର୍ତ୍ତୀ ଶ୍ରେଣୀକୁ ଉନ୍ନୀତ ହେବ । ତେବେ ଏ ଦଣ୍ଡ ବିଧାନ ବା ଉପଯୁକ୍ତ ଶିକ୍ଷାଦାନର ମୂଲ୍ୟ କିପରି ରହିବ । ଆଜିର ଦୃଶ୍ୟପଟରେ ଶିକ୍ଷାର ଏକବାର ଅବହେଳା ଓ ଅବମାନନା ହେଉଛି କହିଲେ ଠିକ୍ ହେବ ।

*ଅବସରପ୍ରାପ୍ତ ଶିକ୍ଷକ*
*ନୀଳଚକ୍ରନଗର, ଟିଟିଲାଗଡ଼, ବଲାଙ୍ଗୀର*
*ଫୋନ୍-୯୪୩୭୮୯୧୮୨୪*

# ଦୀପଶିଖା

**କଳ୍ପନା ମହାନ୍ତି (୪୨୬)**

ଶ୍ରୀଜଗନ୍ନାଥ ସଂସ୍କୃତିରେ ସନାତନ ଧର୍ମକୁ ନେଇ ପ୍ରତିଟି ବିଧିବିଧାନ ଓ ରୀତିନୀତି ମଧ୍ୟରେ କିଛି ନା କିଛି ଆଧ୍ୟାତ୍ମିକ ସତ୍ୟ ଲୁକ୍କାୟିତ । କର୍ମବ୍ୟସ୍ତତା ଓ ଜୀବନ-ଜଞ୍ଜାଳ ମଧ୍ୟରେ ମଣିଷ ଅନେକ ସମୟରେ ସତ୍ୟକୁ ଭୁଲିଯିବାର ଆଶଙ୍କା ଥିବାରୁ ଆମେ ହିନ୍ଦୁମାନେ ନାନା ପ୍ରକାର ନୀତି-ବିଧି-ଅନୁଷ୍ଠାନ ମଧ୍ୟରେ ବନ୍ଧା ।

ରୀତିନୀତିମାନ ଆମକୁ ଆଧ୍ୟାତ୍ମିକ ଲକ୍ଷ୍ୟରୁ ବିଚ୍ୟୁତ ହେବାକୁ ଦିଅନ୍ତି ନାହିଁ । ଦୀପ ଓ ଦୀପଶିଖାର ଦୃଷ୍ଟାନ୍ତ ଦିଆଯାଇପାରେ । ପ୍ରତିଦିନ ସ୍ୱଗୃହରେ ଦୀପ ପ୍ରଜ୍ୱଳନ ଏକ ସାଧାରଣ ଅନୁଷ୍ଠାନ । ଏହାର ଆଧ୍ୟାତ୍ମିକ ସାରମର୍ମ ସରଳ ଭାବେ ଏହିପରି- ଅନ୍ଧକାର ଦୂର କରିଥିବାରୁ ଦୀପଶିଖା ହେଉଛି ଜ୍ଞାନ । ଭଗବାନ୍ ହେଉଛନ୍ତି ସମସ୍ତ ଜ୍ଞାନର ଆଧାର । ସୃଷ୍ଟି କର୍ତ୍ତା ଏବଂ ପ୍ରେମର ପରିଭାଷା ଆଉ ପଥ ପ୍ରଦର୍ଶକ । ତେଣୁ ଭଗବାନ୍ ହିଁ ବିଶ୍ୱର ଆଲୋକ । ପାରମ୍ପାରିକ ତୈଳ-ଦୀପର ଅନ୍ୟ ଏକ ଆଧ୍ୟାତ୍ମିକ ବ୍ୟାଖ୍ୟାନ ରହିଛି । ଦୀପରେ ବ୍ୟବହୃତ ହେଉଥିବା ତୈଳ ହେଉଛି ବାସନା ବା ମଣିଷର ଏକାନ୍ତ ନିଜସ୍ୱ ସହଜାତ ପ୍ରବୃତ୍ତି ।

ଏହା ଉଭୟ ଶରୀର ଓ ମନକୁ କବଳିତ କରିବା ସହ ଅହଂଭାବ ସୃଷ୍ଟି କରିଥାଏ । ସଳିତା ହେଲା ଅହଂ, ଦୀପଶିଖା ହେଉଛି ଆଧ୍ୟାତ୍ମିକ ଜ୍ଞାନ । ଏହା ଅହଂ ସୃଷ୍ଟିକାରୀ ଶକ୍ତି ବା ତୈଳକୁ ଶୋଷିବା ସହ ସଳିତାକୁ ଧ୍ୱଂସ କରି ପରିଶେଷରେ ଆମକୁ ଶୁଦ୍ଧପୁତ କରିଥାଏ । ଅର୍ଥାତ୍ ଏହା ଅହଂକାର ବିନାଶକ ଏବଂ ଆମର ମନ ଓ ଶରୀରକୁ ମିଥ୍ୟା ଆଚରଣରୁ ମୁକ୍ତ କରିବାକୁ ସମର୍ଥ ହୁଏ ।

ଦୀପର ଅଗ୍ନିଶିଖା ଉର୍ଦ୍ଧ୍ୱଗାମୀ ଭାବେ ଜଳେ । ଏହାର ମର୍ମ ହେଉଛି ସର୍ବଦା ଉଚ୍ଚତମ ଆଦର୍ଶକୁ ଅନୁଧାବନ କରିବା । ହିନ୍ଦୁ ଗୃହରେ ଦୀପ ପ୍ରଜ୍ଜ୍ୱଳନର ଏଭଳି ବ୍ୟାଖ୍ୟାନ ଅସାଧାରଣ ମନେ ହେଉଛି ।

*ଚାନ୍ଦୋଳ, କେନ୍ଦ୍ରାପଡ଼ା*

# ଚାଷ ପାଇଁ ଆମେ ବିମୁଖ

ବାଉରିବନ୍ଧୁ ସ୍ୱାଇଁ

ଆମେ ସବୁ ପିଲାଦିନେ ପଢୁଥିଲୁ, 'ଚାଷ ଅଛି ଯାହାର, କି ଆନନ୍ଦ ତାହାର, ଚାଷୀଭାଇ ଯୋଗାଉଛି ଦୁନିଆକୁ ଆହାର ।' କିନ୍ତୁ ବଡ଼ ଦୁଃଖର ବିଷୟ ଏବେ ଖୋଦ୍ ଚାଷୀଭାଇମାନେ କହୁଛନ୍ତି, 'ଚାଷ ଅଛି ଯାହାର, ଦୁଃଖ ବଢୁଛି ତାହାର, ଏବେ ତା' ଅଣ୍ଟାରେ ବସୁଅଛି ପାହାର' ଯାହାଫଳରେ, ସେ ଆଉ ସମାଜରେ ସିଧାହୋଇ ଠିଆ ହୋଇପାରୁନି । କଥାଟା ଶତକଡା ଶହେଭାଗ ଠିକ୍ ନହେଲେ ବି ଅନେକାଂଶରେ ସତ୍ୟ ।

ଏଇ ଲେଖକ, ଗତ କିଛି ମାସ ତଳେ ନିଜ ଗ୍ରାମକୁ ଯାଇଥିଲା । ଗ୍ରାମରେ ଦେଖିବାକୁ ମିଳିଲା, କିଛି ଜମିବାଡ଼ି ପଡ଼ିଆ ପଡ଼ିଛି ଏବଂ ଲୋକେ ସେଠି ଚାଷବାସ କରିନାହାନ୍ତି । ଏ ବିଷୟରେ ଜଣେ ବୟସ୍କ ଚାଷୀଙ୍କୁ ପଚାରିବାରେ ଉତ୍ତର ମିଳିଲା ଏବେ ଟଙ୍କିକିଆ ଚାଉଳ ଯୋଗୁଁ ଚାଷ ପାଇଁ ମୂଲିଆ ମଜୁରିଆ ଆଉ ମିଳୁନାହାନ୍ତି । କିଛି ଲୋକ ସେମାନଙ୍କ ବଳଦ ସବୁ ବିକ୍ରି କରିଦେଲେଣି । ମୁଁ ପ୍ରଶ୍ନ କଲି ଆଗରୁ ତ ଗାଁ ଲୋକମାନେ ନିଜ ବାଡ଼ିବଗିଚାରେ ବହୁତ ଜହ୍ନି, ଭେଣ୍ଡି, କାକୁଡ଼ି, ଛଚିନ୍ଦ୍ରା, କଖାରୁ, କାଗିଜି ଲେମ୍ବୁ ଓ କଦଳୀ ଆଦି ଚାଷ କରି ନିଜ ଗୁଜୁରାଣ ମେଣ୍ଟାଉଥିଲେ, ଏବେ ତାହା କାହିଁକି ଦେଖିବାକୁ ମିଳୁନି । ସେ ତତ୍‌କ୍ଷଣାତ୍ ଉତ୍ତରଦେଲେ, ଏସବୁ କଲେ କ'ଣ ହେବ ସବୁତ ମାଙ୍କଡ଼ମାନେ ଖାଇଯିବେ । ଆଉ ଲାଭ କ'ଣ ? ମୁଁ ଅନୁଭବ କଲି, ଲୋକଙ୍କ, ଚାଷ ପ୍ରତି ମାନସିକ ସ୍ତରରେ ଅବକ୍ଷୟ ଘଟିଲାଣି । ଗାଁ ମାଟିର ବାସ୍ନା ଆଉ ଚାଷୀପୁଅକୁ ଆକର୍ଷିତ କରିପାରୁନି । ଅଧିକାଂଶ ଚାଷୀଘର ପିଲା ମାଟି କାଦୁଅରେ ଘାଣ୍ଟିହେବା ଅପେକ୍ଷା ଅଧିକ ରୋଜଗାର ଆଶାରେ ସହରାଭିମୁଖୀ ହେଉଛନ୍ତି । ଅନ୍ୟ ଉନ୍ନତ ଦେଶ ଭଳି ଆମ ଚାଷୀମାନଙ୍କୁ ଅଧିକ ରୋଜଗାର ଏବଂ ସାମାଜିକ ସ୍ତରରେ ଉପଯୁକ୍ତ ସମ୍ମାନ ଓ ସୁରକ୍ଷା ମିଳୁନଥିବାରୁ ସେମାନେ ଚାଷ ପ୍ରତି ବୀତସ୍ପୃହ ହୋଇ ମୋଟା ଅଙ୍କର ଚାକିରି ଓ ଚାକଚକ୍ୟ ଜୀବନଯାପନ ଆଶାରେ ସହରକୁ ପଳାଇଯାଉଛନ୍ତି । ଏହାଛଡ଼ା ଆମ ରାଜ୍ୟରେ କ୍ରମାଗତ ବାତ୍ୟା, ବନ୍ୟା, ମରୁଡ଼ି ଆଦି ପ୍ରାକୃତିକ ବିପର୍ଯ୍ୟୟ ଚିରଶତ୍ରୁ ଭାବେ ଚାଷର ପ୍ରଭୂତ କ୍ଷତି ଘଟାଇଚାଲିଛି । ଏଥିପାଇଁ ଉପଯୁକ୍ତ କ୍ଷତିପୂରଣ ମିଳୁନଥିବାରୁ ଚାଷୀର ଆର୍ଥିକ ମେରୁଦଣ୍ଡ ଭାଙ୍ଗିପଡୁଛି ଓ ଋଣଭାର ସହି ନପାରି କେତେକ ସ୍ଥଳରେ ଚାଷୀ ଆତ୍ମହତ୍ୟା କରୁଥିବାର ଅଭିଯୋଗ ହେଉଛି । ଏସବୁ ବିଷୟକୁ ଅନୁଭବ କରି ଚାଷୀର ପରବର୍ତ୍ତୀ ପିଢ଼ି ଆଉ ଚାଷପ୍ରତି ସେତେଟା ଆଗ୍ରହ ପ୍ରକାଶ କରୁନାହାନ୍ତି ।

ଆମ ଓଡ଼ିଶା ଏକ କୃଷିପ୍ରଧାନ ରାଜ୍ୟ ବୋଲି ସମସ୍ତେ ଜାଣନ୍ତି ଏବଂ ଏହାର ପ୍ରାୟ ନବେଭାଗ ଲୋକ କୃଷି ଉପରେ ନିର୍ଭରଶୀଳ । ଏ ରାଜ୍ୟର ଅଧିକାଂଶ ଅଞ୍ଚଳର ମୃତ୍ତିକା ଉର୍ବର ଏବଂ ଚାଷୋପଯୋଗୀ । ରାଜ୍ୟରେ ବିସ୍ତୀର୍ଣ୍ଣ ବେଳାଭୂମି ରହିଛି ଓ ଅନେକ ବଡ଼ନଦୀ ସବୁ ପ୍ରବାହିତ ତେଣୁ ଜଳସେଚନରେ କିଛି ବାଧକତା ସୃଷ୍ଟି ହେବା କଥା ନୁହେଁ । ସରକାର ମଧ୍ୟ କୃଷି ଓ କୃଷକର ଉନ୍ନତି ପାଇଁ ବିଭିନ୍ନ ଉନ୍ନୟନମୂଳକ ଯୋଜନା ପ୍ରଣୟନ କରିଚାଲିଛନ୍ତି । ଏହାସତ୍ତ୍ୱେ, ଆମର ଚାଷୀ ଭାଇମାନେ ଆଉ ଚାଷ ପାଇଁ ପୂର୍ବଭଳି ସେତେଟା ଆଗ୍ରହୀ ନୁହନ୍ତି କାହିଁକି ? ଏହାର କାରଣ ଏବଂ ନିରାକରଣ ଖୋଜି ବାହାର କରିବା ଏବେ ଜରୁରୀ ମନେହୁଏ ।

କେତେକ ବୁଦ୍ଧିଜୀବୀଙ୍କ ମତରେ ଅନେକ ସ୍ଥାନରେ ଜଳସେଚନ ପାଇଁ ସେପରି କିଛି ଆଖିଦୃଶିଆ କାର୍ଯ୍ୟ ହୋଇନଥିବାରୁ ଚାଷୀ ନିରାଶ । ଏଠାରେ ଉଲ୍ଲେଖଯୋଗ୍ୟ, ଅବିଭକ୍ତ କଟକଜିଲ୍ଲାର ଜଳସେଚନ ପାଇଁ ଉଦ୍ଦିଷ୍ଟ ପ୍ରମୁଖ ତାଳଦଣ୍ଡା ଓ ମାଛଗାଁ କେନାଲ ଗତ କିଛିବର୍ଷ ହେଲା ରୁଗ୍‌ଣ ଅବସ୍ଥାରେ ଅଛି । ଏକଦା ଏଇ ଦୁଇଟି ବଡ଼ କେନାଲ ଜଳସେଚନ ସହିତ ନୌବାଣିଜ୍ୟ ପାଇଁ ମାଲପରିବହନର ମୁଖ୍ୟ ଭୂମିକା ଗ୍ରହଣ କରି ଓଡ଼ିଶାର ଅର୍ଥନୀତିକୁ ସମୃଦ୍ଧ କରିବାରେ ସାହାଯ୍ୟ କରୁଥିଲା । ଏହାଛଡ଼ା, ରକ୍ଷଣାବେକ୍ଷଣ ଅଭାବରୁ ଅନେକ ସ୍ଥାନରେ ଶାଖା କେନାଲଗୁଡ଼ିକର ଅବସ୍ଥା ଶୋଚନୀୟ, କିଛି ସ୍ଥାନରେ ଉଠାଜଳସେଚନ ପଏଣ୍ଟ ଗୁଡ଼ିକ ଅଚଳ । ଅନେକ ପାଣିପଞ୍ଚାୟତ ମଧ୍ୟ ସଠିକ୍ ଭାବେ ଦାୟିତ୍ୱ ନିର୍ବାହ କରୁନାହାନ୍ତି । ଏ ପରିସ୍ଥିତିରେ ଜଳସେଚନ କିପରି ସମ୍ଭବ ?

ଅନ୍ୟ ଗୋଟିଏ ଦିଗ ହେଲା ଚାଷୀ ତା'ର ଉତ୍ପାଦିତ ଫସଲକୁ ଉଚିତ୍ ମୂଲ୍ୟରେ ବିକ୍ରି କରିବା ପାଇଁ ବଜାର ସୁବିଧା ଓ ଭିତ୍ତିଭୂମିର ଯଥେଷ୍ଟ ଆବଶ୍ୟକତା ରହିଛି । ଏହା ସହିତ କୃଷିଜାତ ଦ୍ରବ୍ୟର ଉପଯୁକ୍ତ ସଂରକ୍ଷଣ ପାଇଁ ବହୁଳ ପରିମାଣ ଗୋଦାମଗୃହ ଓ ଶୀତଳ ଭଣ୍ଡାରମାନ ନିର୍ମାଣ ହେବା ଦରକାର । ବଜାର ସୁବିଧା ନପାଇ କେତେକ ସ୍ଥଳରେ ଚାଷୀମାନେ ଅଭାବୀ ଧାନ ବିକ୍ରିର ଶିକାର ହେଉଛନ୍ତି । କନ୍ଧମାଳ ପରି ଜିଲ୍ଲା ବିପୁଳ ପରିମାଣର ଉନ୍ନତ ମାନର ହଳଦୀ, ସୋରିଷ ଓ ମାଣ୍ଡିଆ ଉତ୍ପାଦନ ହେଉଥିବାବେଳେ ବଜାର ସୁବିଧା ନପାଇ ଶେଷରେ ଚାଷୀମାନେ ଅସାଧୁ ବ୍ୟବସାୟୀମାନଙ୍କ ଶୋଷଣର ଶିକାର ହେଉଛନ୍ତି । ଗତ କିଛିଦିନ ତଳେ ସମ୍ବାଦପତ୍ରରୁ ଜଣାପଡ଼ିଲା, କେନ୍ଦୁଝର ଜିଲ୍ଲାରେ ବିପୁଳ ପରିମାଣର ଟମାଟୋ ଉତ୍ପାଦନ ହେତୁ ଉପଯୁକ୍ତ ସଂରକ୍ଷଣ ଅଭାବରୁ ଚାଷୀମାନେ ବାଧହୋଇ କିଲୋପିଛା ୩ ଟଙ୍କା ୪ ଟଙ୍କା ମଧ୍ୟରେ ଲାଭଖୋର ବ୍ୟବସାୟୀମାନଙ୍କୁ ବିକ୍ରି କରି ଯଥେଷ୍ଟ କ୍ଷତି ସହିଲେ । ଏସବୁର ପ୍ରତିକାର ପାଇଁ ସରକାର ଓ ଅନ୍ୟାନ୍ୟ ସମବାୟ ଅନୁଷ୍ଠାନଗୁଡ଼ିକୁ ନିଷ୍ଠାପର ଭାବେ ସ୍ୱଚ୍ଛତା ରକ୍ଷା କରି କାର୍ଯ୍ୟପନ୍ଥା ଗ୍ରହଣ କରିବା ବିଧେୟ ।

ଆମ ରାଜ୍ୟ, ଡାଲିଜାତୀୟ ଶସ୍ୟ ଆଳୁ, ପିଆଜ, ପନିପରିବା, କଦଳୀ, ମାଛ ଓ ଅଣ୍ଡା ଇତ୍ୟାଦିର ଚାହିଦା ପାଇଁ ଅନ୍ୟ ରାଜ୍ୟ ଉପରେ ନିର୍ଭରଶୀଳ । ପଶ୍ଚିମବଙ୍ଗରୁ ଆଳୁ ଏବଂ ମହାରାଷ୍ଟ୍ରର ନାସିକ ଅଞ୍ଚଳରୁ ପିଆଜ ଆବଶ୍ୟକତା ଅନୁସାରେ ନଆସିଲେ ଏ ଦୁଇ ପଦାର୍ଥ ଉପରେ ଅତ୍ୟଧିକ ନିର୍ଭରଶୀଳ ଗରିବ ଖଟିଖିଆଙ୍କ ଦାନାପାଣି ବନ୍ଦ । ସେହିପରି, ପଡ଼ୋଶୀ ଆନ୍ଧ୍ରରୁ ମାଛ, ଅଣ୍ଡା, କଦଳୀ, କାଗିଜି ଲେମ୍ବୁ ଓ ଆମ୍ବ ଇତ୍ୟାଦି ନ ଆସିଲେ ଆମ ଖାଉଟି ହନ୍ତସନ୍ତ । ଏସବୁ ସମସ୍ୟା ସମସ୍ତେ ହୃଦୟଙ୍ଗମ କଲେ ସୁଦ୍ଧା ଏହାର ସମାଧାନ ନିମିତ୍ତ କୌଣସି ଆଖିଦୃଶିଆ, ଦୀର୍ଘମିଆଦୀ କାର୍ଯ୍ୟକ୍ରମ ହାତକୁ ନିଆଯାଇନାହିଁ । କେବଳ ତାଳିପକା କାମ ଚାଲିଛି । ଏପ୍ରକାର ଚାଷ ପାଇଁ ଚାଷୀଙ୍କୁ ସଠିକ୍ ଦିଗ୍‌ଦର୍ଶନ ମିଳୁନି । ଆଶ୍ୱସ୍ତିର ବିଷୟ, କୃଷିର ଉନ୍ନତି ପାଇଁ ରାଜ୍ୟ ସରକାର ୨୦୧୬-୧୭ ବର୍ଷ ନିମିତ୍ତ ୧୩୧୮୧.୮୯ କୋଟି ଟଙ୍କା ବ୍ୟୟବରାଦ କରିଛନ୍ତି ଏବଂ କୃଷି ବଜେଟ୍‌ରେ ଜଳସେଚନକୁ ସର୍ବାଧିକ ଗୁରୁତ୍ୱ ଦେଇଛନ୍ତି । କାର୍ଯ୍ୟକ୍ରମ ସଫଳ ରୂପାୟନ ପାଇଁ ଏକ କୃଷି କ୍ୟାବିନେଟ୍ କମିଟି ନୂତନ ଭାବେ ଗଠନ କରାଯାଇଛି ଏବଂ ଏଥିପାଇଁ ଯୋଜନା ସମନ୍ୱୟ ବିଭାଗ, ଅର୍ଥ ବିଭାଗ, କୃଷି ଓ କୃଷକ ସଶକ୍ତୀକରଣ ବିଭାଗ ସମେତ ଅନ୍ୟାନ୍ୟ ସମ୍ପୃକ୍ତ ବିଭାଗମାନେ ପରସ୍ପର ମଧ୍ୟରେ ସମନ୍ୱୟ ରକ୍ଷା କରି କୃଷି ଯୋଜନା ଓ କୃଷକର ଉନ୍ନତି ନିମିତ୍ତ ବିବିଧ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବେ ବୋଲି ନିଷ୍ପତ୍ତି ଗ୍ରହଣ କରାଯାଇଛି । କୃଷି ବିଭାଗର ନାମ ପରିବର୍ତ୍ତନ କରାଯାଇ ନୂତନ ଭାବେ କୃଷି ଓ କୃଷକ ସଶକ୍ତିକରଣ ବିଭାଗ ଭାବେ ନାମିତ କରାଯାଇଛି । ଏହାଦ୍ୱାରା ଚାଷ ଓ ଚାଷୀର କେତେଦୂର ଉନ୍ନତି ହେବ, ତାହା ସମୟ ହିଁ କହିବ । ଖାଲି ଉପର ସ୍ତରରେ ବାସ୍ତବ ଚିତ୍ରକୁ ଆକଳନ ନକରି ଯୋଜନା ପରେ ଯୋଜନା କରିଦେଲେ କାମ ଚଳିବନି ।

ଯୋଜନାର ସୁଫଳ ଚାଷୀମାନେ ପାଇପାରୁଛନ୍ତି କି ନା ତାହା ଲକ୍ଷ୍ୟ କରିବା କଥା । ଆମକୁ ଚାଷୀଙ୍କ ସମସ୍ୟା ଗଭୀର ଭାବେ ଅନୁଧ୍ୟାନ କରିବାକୁ ପଡ଼ିବ ଏବଂ ଦୁର୍ବଳତା କେଉଁଠି ଓ କାହିଁକି ଆମ ଚାଷୀଭାଇମାନେ ଆଜି ମାନସିକ ସ୍ତରରେ ଚାଷକୁ ଆପଣେଇ ପାରୁନାହାନ୍ତି ? ରାଜ୍ୟ, ଜିଲ୍ଲା ଓ ମଣ୍ଡଳ ସ୍ତରରେ କୃଷି ସମ୍ବନ୍ଧୀୟ କାର୍ଯ୍ୟକ୍ରମ ଅଥବା ନୀତି ନିର୍ଦ୍ଧାରଣ ସମୟରେ ଅନୁଭବୀ ଚାଷୀମାନଙ୍କ ପରାମର୍ଶ ନେବା ଅନିବାର୍ଯ୍ୟ ମନେହୁଏ । କୃଷି ବିଭାଗର ସମ୍ପୃକ୍ତ ଅଞ୍ଚଳର କ୍ଷେତ୍ର କର୍ମଚାରୀମାନେ ମୃତ୍ତିକା ପରୀକ୍ଷା କରିବା ସହ ପାରିପାର୍ଶ୍ୱିକ ଅବସ୍ଥାକୁ ଅନୁଧ୍ୟାନ କରି କେଉଁ ଚାଷ କଲେ ଲାଭଦାୟକ ହେବ ସେ ବିଷୟରେ ଚାଷୀଙ୍କୁ ପରାମର୍ଶ ଦେବା ଉଚିତ ।

ଗତକିଛି ବର୍ଷ ତଳେ ଆସ୍କା, ନୟାଗଡ଼, ବଡ଼ମ୍ବା, ନରସିଂହପୁର, ବରଗଡ଼, କେନ୍ଦ୍ରାପଡ଼ା, କଳାହାଣ୍ଡି, କେସିଙ୍ଗା ଓ ଅନୁଗୋଳ ଅଞ୍ଚଳରେ ବିସ୍ତୃତ ଭାବେ କପାଚାଷ

ହେଉଥିଲା । କିନ୍ତୁ ରାଜ୍ୟରେ ଚିନିକଳ ଓ ସୂତାକଳ ଗୁଡ଼ିକ ବନ୍ଦ ହୋଇଯିବା ହେତୁ ସେ ଅଞ୍ଚଳର ଚାଷୀମାନେ ଏ ପ୍ରକାର ଚାଷ କରିବାକୁ ଆଗ୍ରହୀ ନୁହଁନ୍ତି । ଏ ପରିପ୍ରେକ୍ଷୀରେ ରାଜ୍ୟ ବାହାରର ବଜାର ଖୋଜି ଚାଷୀମାନଙ୍କୁ ଏ ଦିଗରେ ପ୍ରବର୍ତ୍ତାଇବା ଆବଶ୍ରକ । ଅନ୍ୟ ଏକ ସମସ୍ୟା ହେଲା ଅନେକ ଅଞ୍ଚଳରେ ସଂରକ୍ଷିତ ଜଙ୍ଗଲ ସବୁ ଉଜୁଡ଼ି ଯାଉଥିବାରୁ ହାତୀପଲ ସେମାନଙ୍କ ଆଶ୍ରୟସ୍ଥଳ ଛାଡ଼ି ଖାଦ୍ୟ ଅନ୍ୱେଷରେ ନିକଟବର୍ତ୍ତୀ ଗାଁଗଣ୍ଡାରେ ସଂଘବଦ୍ଧ ଭାବେ ପଶି ଫସଲସବୁ ଖାଇ ନଷ୍ଟ କରୁଛନ୍ତି । ଫଳରେ ବିଚରା ଚାଷୀ ପ୍ରଭୂତ କ୍ଷତି ସହି ସେ ଅଞ୍ଚଳରେ ଚାଷ ପାଇଁ ଆଗ୍ରହ ପ୍ରକାଶ କରୁନାହାନ୍ତି । ଏଥିପାଇଁ ସରକାର ଓ ବନବିଭାଗ ଧ୍ୟାନଦେବା ଆବଶ୍ୟକ ।

ଅନେକ ଚାଷୀଙ୍କ ମତ ହେଲା ଉନ୍ନତ ମାନର ବିହନ ପରିବର୍ତ୍ତେ ନକଲି ବିହନ ଯୋଗାଣ ହେତୁ ଫସଲ ଠିକ୍ ଭାବେ ହେଉନାହିଁ ଏବଂ ଏଥିପାଇଁ ଚାଷ ଓ ଚାଷୀର ଯଥେଷ୍ଟ କ୍ଷତି ଘଟୁଛି । ଜମିରେ ପୂର୍ବଭଳି ଗୋବର, ଖତ ଓ ଅନ୍ୟାନ୍ୟ ଜୈବିକସାର ପରିବର୍ତ୍ତେ ବହୁଳ ପରିମାଣରେ ରାସାୟନିକ ସାର ଓ କୀଟନାଶକ ପଦାର୍ଥ ବ୍ୟବହୃତ ହେଉଥିବାରୁ ଜମିର ଉର୍ବରତା ଶକ୍ତି କ୍ରମଶଃ ହ୍ରାସ ପାଇବାରେ ଲାଗିଛି । ଏ ପରିପ୍ରେକ୍ଷୀରେ ଚାଷୀଙ୍କୁ ଆକୃଷ୍ଟ ଓ ଲାଭଦାୟକ କରିବା ପାଇଁ କୃଷି ବିଭାଗ, କୃଷି ବିଶେଷଜ୍ଞ, ବୁଦ୍ଧିଜୀବୀ ଓ ଅନୁଭବୀ ଚାଷୀମାନେ ଏକତ୍ର ବସି ନିଷ୍ପାପର ଭାବେ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କଲେ କୃଷି ସମ୍ବନ୍ଧୀୟ ସମସ୍ତ ଯୋଜନା ଯେପରି ଫଳପ୍ରଦ ହେବ, ସେଥିପାଇଁ ସବୁସ୍ତରରୁ ଉଦ୍ୟମ ଜାରି ହେବା ଉଚିତ । ଚାଷୀ ମୁହଁରେ ହସ ଫୁଟିଲେ ସେମାନେ ସବୁ ଯୋଜନାର ସୁଫଳ ବିଷୟରେ ଆପଣା ଛାଏଁ ଅବଗତ ହେବେ ଏବଂ ସେମାନଙ୍କୁ ଗାଡ଼ିମଟରରେ ବୁହାଇ, ଅଜସ୍ର ଅର୍ଥ ବ୍ୟୟ କରି ଚାଷୀମେଳା ସବୁ ଆୟୋଜନ କରିବାର ଆବଶ୍ୟକତା ପଡ଼ିବନି । ନଚେତ୍ ସବୁ ଯୋଜନା ଖାଲି ଯୋଜନାରେ ହି ରହିଯିବ ।

*ସୌଜନ୍ୟ- 'ସମାଜ'-୨୩.୦୮.୨୦୧୬*

*୨୦୧, ପ୍ଲାଟିନମ୍ ଲନ୍‌ସ, ଷଷ୍ଠ ମହଲା,*
*ଘୋଡ଼ ବନ୍ଦର ରୋଡ୍,*
*ଥାନେ (ପଶ୍ଚିମ), ମୁମ୍ବାଇ, ମହାରାଷ୍ଟ୍ର*

# ଶ୍ରୀମଦ୍ ଭାଗବତରେ ଶ୍ରୀକୃଷ୍ଣ ଚରିତ

ଅଧ୍ୟାପକ ଉଦୟନାଥ ତ୍ରିପାଠୀ (୫୬୧)

ମହର୍ଷି ବ୍ୟାସଦେବଙ୍କ କୃତ ଶ୍ରୀମଦ୍ ଭାଗବତ ମହାପୁରାଣକୁ ଆମର ଓଡ଼ିଆ କବି ଶ୍ରୀଜଗନ୍ନାଥ ଦାସ ନବାକ୍ଷରୀ ଛନ୍ଦରେ ରୂପାନ୍ତର କରି ସମଗ୍ର ଉତ୍କଳ ଭୂମିରେ ଚିରକାଳ ପାଇଁ ଅମର ହୋଇ ରହିଯାଇଛନ୍ତି । ସେ ଥିଲେ ସଂସ୍କୃତ ଏବଂ ଓଡ଼ିଆ ଭାଷାରେ ପ୍ରବୀଣ । ଅତି ସରଳ ଓ ସାବଲୀଳ ଜୀବନ୍ତ ରୂପଦେଇ ଉତ୍କଳୀୟଙ୍କ ହୃଦୟକୁ ଭଗବତ ମହିମା ରଞ୍ଜିତ କରିଯାଇଛନ୍ତି । ତାଙ୍କ ରଚିତ ଦ୍ୱାଦଶଖଣ୍ଡ ଓଡ଼ିଆ ଭାଗବତ ସାମଗ୍ରିକ ରୂପେ ଉତ୍କଳର ପୁରପଲ୍ଲୀରେ ଅମୂଲ୍ୟ ଗ୍ରନ୍ଥ ରୂପେ ପଠିତ ଓ ପୂଜିତ ହେଉଅଛି ।

ପ୍ରତି ଗ୍ରାମର ଭାଗବତ ଟୁଙ୍ଗୀ ଗୁଡ଼ିକ ହେଉଛି ଭକ୍ତି ଓ ଶ୍ରଦ୍ଧା ଓ ମିଳନର ସ୍ୱରୂପ । ୧୪୯୧ ମସିହାରେ ପୁରୀ ଜିଲ୍ଲାର କପିଳେଶ୍ୱରପୁର ଶାସନରେ ତାଙ୍କର ଜନ୍ମ । ପିତାଙ୍କ ନାମ ଭଗବାନ ଦାଶ ଓ ମାତାଙ୍କ ନାମ ପଦ୍ମାବତୀ ଦେବୀ । ସଂସ୍କୃତ ସାହିତ୍ୟରେ ପାଣ୍ଡିତ୍ୟ ଲାଭ କରିଥିଲେ ହେଁ ନିଜ ଭାଷା, ମାତୃଭୂମି ତଥା ମାତାଙ୍କ ସମ୍ମାନାର୍ଥେ ଓଡ଼ିଆ ଭାଷାରେ ଭାଗବତ ରଚନା କରିବା ପାଇଁ ପୁରୀ ଶ୍ରୀମନ୍ଦିରସ୍ଥ କଳ୍ପବଟ ବୃକ୍ଷର ଛାୟାକୁ ନିଜର କର୍ମଭୂମି ରୂପେ ସ୍ଥିର କରିଥିଲେ ଏବଂ ସଂକଳ୍ପବଦ୍ଧ ହୋଇଥିଲେ । ତାଙ୍କର ସମସାମୟିକମାନେ ହେଲେ ଶ୍ରୀ ଅଚ୍ୟୁତାନନ୍ଦ ଦାଶ, ବଳରାମ ଦାଶ, ଶିଶୁ ଅନନ୍ତ ଓ ଯଶୋବନ୍ତ ଦାଶ । ଓଡ଼ିଶାରେ ସେମାନେ ବଳିଷ୍ଠ ଭକ୍ତି ରସାତ୍ମକ କାଳଜୟୀ ଗ୍ରନ୍ଥମାନ ରଚନା କରି ଜନ୍ମଭୂମିକୁ ମହିମାନ୍ୱିତ କରିଛନ୍ତି । ଜଗନ୍ନାଥ ଦାଶଙ୍କ ଧ୍ୟାନ, ତପସ୍ୟା ଓ ଶ୍ରୀକୃଷ୍ଣ ଭକ୍ତି ରସ ତଥା ଅଗାଧ ପାଣ୍ଡିତ୍ୱରେ ଗଦ୍‌ଗଦ୍ ହୋଇ ମହାପୁରୁଷ ଶ୍ରୀ ଚୈତନ୍ୟ ପୁରୀ ଧାମରେ ରହଣି କାଳରେ ତାଙ୍କୁ ଅତିବଡ଼ି ଉପାଧିରେ ମଣ୍ଡିତ କରିଥିଲେ । ଶ୍ରୀଜଗନ୍ନାଥ ଦାଶ ନିଜର ଅମୂଲ୍ୟ ଭକ୍ତିଗ୍ରନ୍ଥ 'ଭାଗବତ' ସହିତ ଦହିଖେଳ, ବୋଲେହୁଁଗୀତା, ଗୁପ୍ତ ଭାଗବତ, ଦାରୁବ୍ରହ୍ମ ଗୀତା, ମୃଗୁଣୀ ସ୍ତୁତି, ଇତିଶା ପୁରାଣ ଆଦି ରଚନା କରି ଜଣେ ମହାନ ଓଡ଼ିଆ କବିର ପରିଚୟ ଦେଇଯାଇଛନ୍ତି ।

ସେ ତାଙ୍କର ପ୍ରଥମ ସ୍କନ୍ଦ ଭାଗବତର ମଙ୍ଗଳାଚରଣରେ ପରମ ପୁରୁଷ ଶ୍ରୀ ଭାଗବତଙ୍କୁ ନିଜର ଅତିପ୍ରିୟ ଦେବମୂର୍ତ୍ତି ଶ୍ରୀଜଗନ୍ନାଥଙ୍କୁ ନୃସିଂହ ରୂପେ ଆରାଧନା କରି ଲେଖିଛନ୍ତି:-

ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ।।
ଯାହାର ଆଦି ମଧ୍ୟ, ଅନ୍ତ ବିଚାର ନ ଘଟେ ଅନନ୍ତ ।।
ଇନ୍ଦ୍ରିୟ ଅର୍ଥ ନଜାଣନ୍ତି ସତ୍ୟ ଯେ ନିତ୍ୟ ପ୍ରକାଶନ୍ତି ।।

ଆନନ୍ଦମନେ ବେଦସାର | ବ୍ରହ୍ମାଣ୍ଡ କଲା ସେ ବିସ୍ତାର ।।
ଯାର ସ୍ୱରୂପ ହୃଦେ ଛନ୍ତି | ବେଦ ପୁରୁଷ ନ ଜାଣନ୍ତି ।।
ସତ୍ୟ ପରମାନନ୍ଦ ହରି | ଯାହା ଭାବିଲେ ଭୁଇଁ ତରି ।।
ତା'ର ଚରଣେ ନିତ୍ୟ ଧ୍ୟାନ | କରି ତରନ୍ତି ସାଧୁଜନ ।।
ସେ ହରି ପାଦ ହୃଦେ ଧରି | ପ୍ରବନ୍ଧେ ଗୀତ ପଦକରି ।।
ଅଶେଷ ଜଗତର ହିତେ | ବନ୍ଦଇ ଦାସ ଜଗନ୍ନାଥେ ।।

ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ସମଗ୍ର ପୁରାଣ ସାହିତ୍ୟ ମଧ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଅଛି । ଓଡ଼ିଆ ଭାଗବତ କେବଳ କୃଷ୍ଣ ଚରିତ୍ର ବର୍ଣ୍ଣନା ପାଇଁ ନୁହେଁ ଏହା କବି ପ୍ରତିଭା, ଭାଷା, ଶବ୍ଦ ସଂଯୋଜନାରେ ଅଦ୍ୱିତୀୟ । ଏହା ଦୁଇଟି ବୈଷ୍ଣବ ମତବାଦର ସମନ୍ୱୟରେ ମୂଳଗ୍ରନ୍ଥ ସଂସ୍କୃତ ଶ୍ରୀମଦ୍‌ଭାଗବତ ଆଧାରରେ ରଚିତ ହେଲେ ହେଁ କବି ନିଜର ମୌଳିକତା ରକ୍ଷା କରିପାରିଛନ୍ତି । ସେ ଏହି ଗ୍ରନ୍ଥରେ ନିର୍ଗୁଣ ବ୍ରହ୍ମ, ଜୀବ-ପରମର ସମ୍ପର୍କ, ଯୋଗମାର୍ଗର ସ୍ୱାତନ୍ତ୍ର୍ୟ । ଅନାସକ୍ତ ସନ୍ନ୍ୟାସର ଆନନ୍ଦ, ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର ଦର୍ଶନକୁ ଅତି ସରଳ ତରଳ ଓ ସାବଲୀଳ ବର୍ଣ୍ଣନା କରି ଉତ୍କଳୀୟ ଜନଜୀବନକୁ ଉଚିତ ମାର୍ଗରେ ନେଇଛନ୍ତି ଓ ଏକ ସ୍ୱତନ୍ତ୍ର ଆଧ୍ୟାତ୍ମିକ ସଂସ୍କୃତିର ଅୟମାରମ୍ଭ କରିଛନ୍ତି । ଫଳତଃ ଉତ୍କଳୀୟ ଜନମାନସ ଏକ ନିର୍ଭରଯୋଗ୍ୟ ଭିତ୍ତିଭୂମି ଉପରେ ଦଣ୍ଡାୟମାନ ହୋଇପାରିଛି ।

ଜଗବନ୍ଧୁ ସିଂହ 'ପ୍ରାଚୀନ ଉତ୍କଳ' ଗ୍ରନ୍ଥରେ ଲେଖିଛନ୍ତି- ଉତ୍କଳୀୟ - ଗ୍ରାମୀଣ ସମାଜରେ ବିସୂଚିକା, ମହାମାରୀର ପ୍ରାଦୁର୍ଭାବ ସମୟରେ ଗ୍ରାମ ମଧ୍ୟରେ ଭାଗବତ ପାଠ, ହରିହାଟ, ସପ୍ତାଙ୍ଗ ଭାଗବତ ଇତ୍ୟାଦି ଅନୁଷ୍ଠାନ କରି ଲୋକମାନଙ୍କ ମନରେ କାଳଭୟରୁ ରକ୍ଷା ମିଳିବାର ବିଶ୍ୱାସ ସୃଷ୍ଟି ହୋଇଥିଲା । ବି.ସି. ମଜୁମଦାର ତାଙ୍କ Typical selection from oriya literature ରେ ମତବ୍ୟକ୍ତ କରିଛନ୍ତି ଯେ, ତାହାଲୀମାନଙ୍କରେ ଭାଗବତ ପାଠ ହେବା ଦ୍ୱାରା ଓଡ଼ିଆମାନେ ସମ୍ପୂର୍ଣ୍ଣ ସ୍ୱାକ୍ଷର ହେବାରେ ଓଡ଼ିଆ ଭାଗବତ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲା । ସେମାନଙ୍କର ଭାଗବତ ବିଶ୍ୱାସ ଓ କୃଷ୍ଣ ଚରିତ୍ରର ଅସୀମତା ଯୁକ୍ତ ଦୃଢ଼ ଭାବଧାରା ଓ ବିଶ୍ୱାସ ଅସ୍ଥି ମଜ୍ଜାଗତ ହୋଇପାରିଥିଲା । ଭାଗବତ ପ୍ରେମରେ ଓଡ଼ିଆ ପ୍ରାଣ ଭକ୍ତିର ରସରେ ଗଦଗଦ ହୋଇ ଉଠିଥିଲା । ପରିବାରର କୌଣସି ବୟସ୍କ ବ୍ୟକ୍ତିର ଆସନ୍ନ ମୃତ୍ୟୁକାଳରେ ଅନ୍ୟାନ୍ୟ ଉପଚାର ସହିତ ବିଶେଷ ଅଧ୍ୟାୟେ ଭାଗବତ ପଠନ ହେଉଛି ଉତ୍କଳୀୟ ସଂସ୍କୃତି ଓ ପରମ୍ପରାର ଅଂଶ । ତେଣୁ ଜଗନ୍ନାଥ ଦାସ ତାଙ୍କ ଭାଗବତରେ ଉଲ୍ଲେଖ କରିଛନ୍ତି:-

ଏଭାଗବତ ଧର୍ମ କଥା । | ହେଲେ ଖଣ୍ଡଇ ଭବବ୍ୟଥା ।।
ଏ ଧର୍ମ ଭାଗବତ ମତ । | ଈଶ୍ୱର ବଚନ ନିର୍ମିତ ।।

ପରମ ଶାସ୍ତ୍ର ଭାଗବତ । ଅଭ୍ୟାସ କରୁଥିବ ନିତ୍ୟ ॥
ଯା ମାୟା ସଂସାର କାରଣ । ସୃଷ୍ଟି ପାଳନ ସଂହାରଣ ॥

ଭାଗବତର ରାସ ପଞ୍ଚାଧ୍ୟାୟୀରେ ବଂଶୀଧ୍ୱନି, ଗୋପୀମାନଙ୍କର ଅଭିସାର ଶ୍ରୀକୃଷ୍ଣଙ୍କ ସହିତ କଥୋପକଥନ, ଦିବ୍ୟରମଣ, ଗୋପୀମାନଙ୍କ ଦ୍ୱାରା ପ୍ରଦତ୍ତ ବସନାସନ ଉପରେ ଶ୍ରୀକୃଷ୍ଣଙ୍କ ବିରାଜମାନ, ଗୋପୀମାନଙ୍କ କୂଟ ପ୍ରଶ୍ନର ଉତ୍ତର, ରାସନୃତ୍ୟ, ରାସକ୍ରୀଡ଼ା, ଜଳକେଳି ଓ ଜଳବିହାର ପ୍ରଭୃତିର ବର୍ଣ୍ଣନା ଅତି ଉଚ୍ଚକୋଟିର ଓ ଦିବ୍ୟତାରେ ପରିପୂର୍ଣ୍ଣ । ଏହା ଜଗନ୍ନାଥ ଦାସଙ୍କ କବିତ୍ୱର ଶ୍ରେଷ୍ଠ ଆଲେଖ୍ୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ନନ୍ଦନନ୍ଦନ ଗୋବିନ୍ଦଙ୍କ ପରି, ବ୍ରଜ ଗୋପୀଗଣ ମଧ୍ୟ ପରମ ରସମୟୀ ଓ ସଚ୍ଚିଦାନନ୍ଦମୟୀ । ସାଧନ ଦୃଷ୍ଟିରୁ ବିଚାର କଲେ ଗୋପୀମାନେ କେବଳ ଜଡ଼ ଶରୀର-ଧାରୀ ରମଣୀ ନୁହଁନ୍ତି । ବରଂ ସୂକ୍ଷ୍ମ ଶରୀରରେ ପ୍ରାପ୍ତ ହେବାକୁଥିବା ସ୍ୱର୍ଗ, କୈବଲ୍ୟଦ୍ୱାର ଅନୁଭୂତ ମୋକ୍ଷବାସନା ତ୍ୟାଗ କରି ସେମାନେ କେବଳ ସଚ୍ଚିଦାନନ୍ଦ ଘନ ଶ୍ରୀକୃଷ୍ଣଙ୍କୁ ହୃଦୟରେ ଧାରଣ କରିଛନ୍ତି । ଗୋପୀମାନେ ଶ୍ରୀକୃଷ୍ଣଙ୍କ ଚରଣଧୂଳି ସ୍ପର୍ଶ କରି ନିଜକୁ ଧନ୍ୟ ମନେ କରିଛନ୍ତି । ବ୍ରହ୍ମା, ଶଙ୍କର, ଉଦ୍ଧବ ଏବଂ ଅର୍ଜୁନଙ୍କ ପରି ଭଗବାନଙ୍କ ପ୍ରେମ ପ୍ରାପ୍ତି ପାଇଁ ନିଜର ଅଭିଳାଷା ପ୍ରକାଶ କରିଛନ୍ତି ।

ଏ ଗୋପୀମାନଙ୍କର ଜନ୍ମ । ଏ ମହୀତଳେ ବଡ଼ ଧନ୍ୟ ॥
କୃଷ୍ଣର ଗୀତନାଚେ ସୁଖୀ । ପ୍ରେମେ ବିହ୍ୱଳ ପଦ୍ମମୁଖୀ ॥
ଦେବେ ନ ଜାଣିଲେ ଯାହାଙ୍କୁ । ଏ ଗୋପୀ ପାଇଲେ ତାହାଙ୍କୁ ॥
ରାସ ଉତ୍ସବେ ଏ କାମିନୀ । କୃଷ୍ଣଚରଣ କରେ ଘେନି ॥

XXX XXX XXX

ଏହାଙ୍କ ପଦରଜ ମୁହିଁ । ନିରତେ କପାଳେ ଘେନଇ ॥

ଶ୍ରୀକୃଷ୍ଣଙ୍କ ପୂର୍ଣ୍ଣବ୍ରହ୍ମ ସନାତନ ରୂପକୁ ଉତ୍ତମ ଭାବେ ଜ୍ଞାତ ହୋଇ ତାଙ୍କ ସହିତ ପ୍ରୀତି ସମ୍ପର୍କକୁ ସୁଦୃଢ଼ କରିଥିବା ପରମ ବ୍ରଜାଙ୍ଗନମାନଙ୍କ ପାଇଁ ପରମ ସୌଭାଗ୍ୟର ମୁହୂର୍ତ୍ତ ପାଲଟିଛି । ସେମାନେ ଶ୍ରୀକୃଷ୍ଣଙ୍କର ଅନ୍ତର୍ଯ୍ୟାମୀ, ଯୋଗେଶ୍ୱର ସ୍ୱରୂପ ପରମାତ୍ମାଙ୍କୁ ଲାଭ କରିବା ପାଇଁ ବ୍ୟଗ୍ର ହୋଇ ଉଠିଛନ୍ତି । ଏଣୁ ସାଂସାରିକ ସମସ୍ତ ମୋହମାୟା, ଗୁରୁ, ସଖା, ପୁତ୍ର, କନ୍ୟା, ସ୍ୱାମୀ, ଶ୍ୱଶୁର, ଶାଶୁ ମମତା ତ୍ୟାଗକରି ପ୍ରଗଲ୍‌ଭା ନଦୀ ପରି ଧାଇଁଛନ୍ତି । ଭକ୍ତ ବତ୍ସଳ ପ୍ରଭୁ ଗୋପୀମାନଙ୍କର ସହିତ କ୍ରୀଡ଼ାରେ ଲୀନ ହୋଇଛନ୍ତି ।

ଗୋପୀଙ୍କ ଦେଖିଣ ବିକଳ । ଦୟା ବସିଲା ଆଦିମୂଳ ॥
ଆନନ୍ଦେ ଘେନି ଭୂଜ ତୋଳି । ଆସ ବୋଇଲେ ବନମାଳୀ ॥
ତକ୍ଷଣେ ପାଇଲେ ଜୀବନ । ହରଷ ଗୋପୀଙ୍କର ମନ ॥

ଯେ ଶୁଭାଶୁଭ ପରିତ୍ୟାଗ ପୂର୍ବକ ହର୍ଷ, ଦ୍ୱେଷ, ଆଶା, ଆକାଂକ୍ଷା ଠାରୁ ଉର୍ଦ୍ଧ୍ୱରେ

ରହି ଭଗବତ ପ୍ରେମରେ ବିଲୀନ ହୋଇଯାଏ, ଚତୁର୍ଦ୍ଦିଗରେ ଭଗବାନ ବିଷ୍ଣୁ ବା ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିପାରେ, ସେ ହିଁ ପ୍ରକୃତ ହରି ଭକ୍ତ ।

ଭାଗବତରେ ଅହେତୁକୀ ଭକ୍ତିଭାବର ବର୍ଣ୍ଣନା କରାଯାଇଛି । ଏଥିରେ ନବଧା ଲକ୍ଷଣ ଚିହ୍ନିତ ହୋଇଅଛି । ଭଗବାନଙ୍କ ନାମ ଶ୍ରବଣ, ନାମକୀର୍ତ୍ତନ, ନାମସ୍ମରଣ, ସେବା, ପୂଜା, ପ୍ରଣିପାତ, ତାଙ୍କର ଦାସତ୍ୱ ଗ୍ରହଣ ପାଇଁ ଅଙ୍ଗୀକାରବଦ୍ଧତା, ସଖା ଓ ଆତ୍ମୋତ୍ସର୍ଗ ଦ୍ୱାରା ଭକ୍ତ ଭଗବାନଙ୍କୁ ପ୍ରାପ୍ତ କରିଥାଏ ।

ସର୍ବୋପରି ଶ୍ରୀଜଗନ୍ନାଥ ଦାସଙ୍କ ଶ୍ରୀମଦ୍ ଭାଗବତରେ ଭକ୍ତିଧର୍ମର ଅସଲ ସ୍ୱରୂପ ପ୍ରକାଶିତ ହୋଇଛି । ଭାଗବତର ତୃତୀୟ ସ୍କନ୍ଧରେ ଉନବିଂଶ ଅଧ୍ୟାୟରେ ମୈତ୍ରେୟ ଓ ବିଦୂର କଥୋପକଥନରେ ମାତା ଦେବହୂତି ଓ ଭଗବାନ କପିଳଙ୍କ ଉପାଖ୍ୟାନରେ ପରମାର୍ଥ ଜ୍ଞାନ ପ୍ରସଙ୍ଗରେ ଭକ୍ତର ଶୁଦ୍ଧ ସ୍ୱରୂପ ବର୍ଣ୍ଣିତ ହୋଇଅଛି ।

ଈଶ୍ୱର ଅନ୍ତର୍ଯ୍ୟାମୀ ଓ ସର୍ବ ପ୍ରାଣୀଙ୍କର ଅନ୍ତରାତ୍ମା । ପରମବ୍ରହ୍ମ ହିଁ ସୃଷ୍ଟି, ସ୍ଥିତି, ଲୟର କାରଣ । ସେ ହିଁ ଦୈବୀ ବିଧାତା, ସେ ହିଁ ବସ୍ତୁଭେଦର କାରଣ ଓ କର୍ତ୍ତା । ସେ ହିଁ କାଳ । ସକଳ ବସ୍ତୁର ସୃଷ୍ଟି ଓ କ୍ଷୟର ମୂଳ ହେତୁ ଭଗବତ୍ ଗୀତାରେ ବିଶ୍ୱରୂପ ଦର୍ଶନ ବେଳେ ଆତ୍ମ ପରିଚୟ ଦେଇ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି:- କାଳୋଽସ୍ମି 'ଲୋକକ୍ଷୟକୃତ ପ୍ରବୃଦ୍ଧ'- ମୁଁ ଲୋକକ୍ଷୟକାରୀ ପ୍ରବଦ୍ଧ କାଳ । ଏହାର ମହିମା ଅସୀମ । ସକଳ ଜଗତ କାଳର ଅଧୀନ । କାଳ ନିକଟରେ ପ୍ରିୟ ଓ ଅପ୍ରିୟର ଭାବ ନାହିଁ । ଏ ସଂସାରରେ ସୃଷ୍ଟ ସମସ୍ତ ବସ୍ତୁର ବିନାଶ ହିଁ କାଳର କର୍ମ ।

ଉକ୍ତ କାଳୋତ୍ତୀର୍ଣ୍ଣ ହୋଇ ଭକ୍ତିରସକୁ ସଂଜୀବିତ କରି, ଭକ୍ତି-ଧର୍ମର ପ୍ରବାହରେ ସକଳ ଜୀବ ଓ ବସ୍ତୁକୁ ସମିଶ୍ରିତ କରି ଭଗବତ୍ ଭକ୍ତି ଧର୍ମରେ ନିମଗ୍ନ ରହି ଏହାର ମହତ୍ୱର ଜୟଗାନ କରେ ।

ଶ୍ରୀଜଗନ୍ନାଥ ଦାସଙ୍କ ରଚିତ ଭାଗବତ ଗ୍ରନ୍ଥ ହେଉଛି ଓଡ଼ିଆ ଭାଷାର କାଳଜୟୀ ଗ୍ରନ୍ଥ । ଏଥିରେ ଓଡ଼ିଆ ସଂସ୍କୃତି ଓ ଜୀବନ ଛତ୍ରେ ଛତ୍ରେ ପରିସ୍ଫୁଟ । ଭାଗବତ ଟୁଙ୍ଗି ତ ଆଉ ଗ୍ରାମେ ଗ୍ରାମେ ନାହିଁ । ମାତ୍ର ଜଗନ୍ନାଥ ଦାସ ଓ ତାଙ୍କ ରଚିତ ଗ୍ରନ୍ଥକୁ ଓଡ଼ିଆ ଜାତି କେବେ ଭୁଲିପାରିବ ନାହିଁ ।

*'ଶ୍ରଦ୍ଧା' ପ୍ଲଟ ନଂ ୪୬୯୩, ଆଦିମାତା କଲୋନୀ,*
*ମଞ୍ଚେଶ୍ୱର ରେଲବାଇ କଲୋନୀ, ଭୁବନେଶ୍ୱର-୭୫୧୦୧୭*
*ମୋ: ୯୪୩୯୭୩୨୩୧୭*

# ଶ୍ରୀକୃଷ୍ଣ କିଏ ?

ଡକ୍ଟର ବନମାଳୀ ବାରିକ (୪୬୩)

ନିକଟରେ ସୁପ୍ରିମ୍‌କୋର୍ଟର ବରିଷ୍ଠ ଆଇନ୍‌ଜୀବୀ ପ୍ରଶାନ୍ତ ଭୂଷଣ କହିଲେ 'ଶ୍ରୀକୃଷ୍ଣ ଜଣେ ଲମ୍ପଟ' । ଚାରିଆଡ଼େ ପ୍ରତିବାଦର ସ୍ୱର ଉଠିଲା । ଜନମତ ଆଗରେ ତାଙ୍କୁ ଏଥିପାଇଁ କ୍ଷମା ମାଗିବାକୁ ପଡ଼ିଲା ।

ଅବଶ୍ୟ ଭାରତରେ ଇଂରେଜ ଶାସନର ପ୍ରାରମ୍ଭରେ ଖ୍ରୀଷ୍ଟଧର୍ମର ପ୍ରଚାର କାର୍ଯ୍ୟ ଚାଲିଥିଲା । ମିଶନାରୀମାନେ ଶିକ୍ଷା ବିସ୍ତାର ସହ ଧର୍ମପ୍ରଚାର କ୍ଷେତ୍ରରେ ନିଯୁକ୍ତ ଥିଲେ । ସେମାନେ କହୁଥିଲେ- ତମର କୃଷ୍ଣ ଲହୁଣୀ ଚୋର । ଆମର ଯୀଶୁ ପ୍ରେମର ଅବତାର । ତମର କୃଷ୍ଣ ରାତିରେ ଘର ଘର ବୁଲି ପରସ୍ତ୍ରୀମାନଙ୍କ ସହ ରାସଲୀଳାରେ ମାତୁଥିଲେ । ଆମର ଯୀଶୁ ପାପୀମାନଙ୍କ ପରିତ୍ରାଣ ପାଇଁ ମୁଣ୍ଡରେ କଣ୍ଟାର ମୁକୁଟ ପିନ୍ଧି ଥିଲେ । ତମର ଦେବତାମାନଙ୍କ ସଂଖ୍ୟା ଗଣିହେବ ନାହିଁ । ଆମର ଯୀଶୁ ଈଶ୍ୱର ପୁତ୍ର-ଧରାପୃଷ୍ଠରେ ଶାନ୍ତି ପ୍ରତିଷ୍ଠା ପାଇଁ ତାଙ୍କର ଦୀନ ଦରିଦ୍ର ରୂପ ।

କିନ୍ତୁ ଭାରତ ଭୂମିରେ ଶ୍ରୀକୃଷ୍ଣଙ୍କ ପ୍ରତିଷ୍ଠାର ତୁଳନା ନାହିଁ । ହଜାର ହଜାର ବର୍ଷ ଧରି ଆମର ମାଟି ପାଣି ପବନରେ ଭରି ରହିଛି ଶ୍ରୀକୃଷ୍ଣ- ବିଶ୍ୱାସ । ଆକୁମାରୀ ହିମାଚଳ ଶ୍ରୀକୃଷ୍ଣଙ୍କର କେତେ ରୂପ, କେତେ ଧାରଣା, କେତେ ଅନୁଭବ, କେତେ ସାଧନା । ଶ୍ରୀକ୍ଷେତ୍ରରେ ସେ କୃଷ୍ଣ-ଜଗନ୍ନାଥ । ହସ୍ତିନାପୁରରେ ସେ ଶାନ୍ତିଦୂତ । ମହାଭାରତ-ଯୁଦ୍ଧ ଭୂମିରେ ସେ ଅଦୃଶ୍ୟ ଚକ୍ରଧାରୀ, ଦ୍ରୌପଦୀଙ୍କ ପ୍ରାର୍ଥନା ସଭାରେ ସେ ଲଜ୍ଜାନିବାରଣକାରୀ ଆର୍ତ୍ତବଲ୍ଲଭ, ଗୋପପୁରରେ ସେ ନନ୍ଦଲାଲା, ମଥୁରାରେ ସେ କଂସାସୁରର ଘାତକ, ଦ୍ୱାରକାରେ ସେ ଦ୍ୱାରକାଧୀଶ । ଇମିତି ସେ କେତେ କ'ଣ ।

ଏକଥା ସତ ଯେ ଶ୍ରୀକୃଷ୍ଣ ଇତିହାସର ଜଣେ କୀର୍ତ୍ତିମାନ ପୁରୁଷ । ବହୁ ପୁରାଣରେ ତାଙ୍କ କୃତିତ୍ୱର ବିସ୍ତୃତ ବର୍ଣ୍ଣନା ରହିଛି । ପୁରାତତ୍ତ୍ୱବିତ୍‌ମାନେ ଦ୍ୱାରକାର ଭଗ୍ନାବଶେଷ ସମୁଦ୍ର ଗର୍ଭରୁ ଆବିଷ୍କାର କରିଛନ୍ତି । ବେଦ ବେଦାନ୍ତରେ ମଧ୍ୟ ତାଙ୍କ ପୁରୁଷକାରର ପରିଚୟ ମିଳେ । କାହାଣୀ ତ ଲମ୍ବିଛି ଭାସମାନ ଦାରୁ ବା ଅପୋଡ଼ାପିଣ୍ଡ ପର୍ଯ୍ୟନ୍ତ । ତେବେ ଏ ସମସ୍ତ କଳ୍ପନା ଜଳ୍ପନା, କାହାଣୀ ଅତିକାହାଣୀ, ପୂଜନ କୀର୍ତ୍ତନ, ବିତର୍କ ବି ସମ୍ବାଦ, ପରିଶେଷରେ ଶ୍ରୀକୃଷ୍ଣ ଥିଲେ ଜଣେ ମାଟିର ମଣିଷ । କିନ୍ତୁ ତାଙ୍କୁ ଜଣେ ଅସାଧାରଣ ମଣିଷ ରୂପେ ବିଚାର କଲେ କିଛି ଭୁଲ ହେବ କି ?

ପୃଥିବୀ ପୃଷ୍ଠରେ ଆମେ ଅନେକ ସାଧାରଣ ମଣିଷ ରୂପେ ଜୀବନ ନିର୍ବାହ କରୁଛୁ । ସେମାନଙ୍କ ମଧ୍ୟରେ ଜଣେ ଜଣେ ଅସଧାରଣ ମଣିଷର ଆବିର୍ଭାବ ହେଉ ନାହିଁକି ? ଗାନ୍ଧି

ଯୁଗରେ ଆମେ ଦେଖିଛୁ ଆଇନ୍‌ଷ୍ଟାଇନ୍‌ଙ୍କୁ, ନେତାଜୀଙ୍କୁ, ନେହେରୁଙ୍କୁ, ମାର୍କ୍ସଙ୍କୁ, ମାଓସେତୁଙ୍ଗଙ୍କୁ, ଟଲଷ୍ଟୟଙ୍କୁ, ରବୀନ୍ଦ୍ରନାଥଙ୍କୁ, ହିଟଲରଙ୍କୁ, ଚର୍ଚ୍ଚିଲ୍‌ଙ୍କୁ । ଯୁଦ୍ଧ ବିଶ୍ୱଯୁଦ୍ଧର ଭୟଙ୍କର ରଣଭେରୀ ମଧ୍ୟରେ ଚାଲିଛି ଶାନ୍ତିର ଜୟଗାନ । ଗୁଳିଗୋଳା, କମାଣର କୋଳାହଳ ମଧ୍ୟରେ ଚାଲିଛି ଲଳିତ-କୋମଳ କାବ୍ୟର ଆବାହନ । ଦୁର୍ଭିକ୍ଷ-ମହାମାରୀ-ଅତ୍ୟାଚାର ଭିତରେ ଚାଲିଛି ମାନବତାର ବନ୍ଦାପନା । ଏସବୁ ଗୋଟିଏ ଗୋଟିଏ ଅସାଧାରଣ ଜୀବନତନ୍ତ୍ରର କଥା ।

ମୋର ଅଙ୍ଗେ ନିଭେଇଥିବା ଛୋଟ ଛୋଟ କଥାରୁ ଚର୍ଚ୍ଚା ଆରମ୍ଭ କରିବା । ମୁଁ ବିଜୁ ପଟ୍ଟନାୟକଙ୍କୁ ହାଇସ୍କୁଲ ପଢ଼ିବା ବେଳୁ ଦେଖିଛି । ତାଙ୍କର ସଭାସମିତିକୁ ଅହେତୁକ ଆକର୍ଷଣରେ ଧାଇଁଛି । ତାଙ୍କର ମୁଖ୍ୟମନ୍ତ୍ରୀତ୍ୱ ଦେଖିଛି, କେନ୍ଦ୍ର ମନ୍ତ୍ରୀତ୍ୱ ଦେଖିଛି, ବିରୋଧି ନେତୃତ୍ୱ ଦେଖିଛି । ଭୋଟ ରାଜନୀତିରେ ତାଙ୍କ ପରାଜୟ ଦେଖିଛି । ତାଙ୍କ ଉଦାରପଣ ଦେଖିଛି । ତାଙ୍କ ବଡ଼ପଣ ଦେଖିଛି । ତାଙ୍କରି ନିନ୍ଦାଗାନ କରୁଥିବା ବନ୍ଧୁମାନଙ୍କ ସାଙ୍ଗରେ ମିଶିଛି । କିନ୍ତୁ ବିଜୁବାବୁ ଏକ ଅନନ୍ୟ ଆକର୍ଷଣ । ମୁଁ କହେ- ଏମାନେ ଜଣେ ଜଣେ ସ୍ୱର୍ଜିତ ପ୍ରତିଭା । ଏହାଙ୍କ ପଛରେ ଭକ୍ତମାନେ ତ ଧାଇଁଛନ୍ତି । ଆମଭଳି ଅଭକ୍ତମାନେ (ରାଜନୀତିରେ ମସଗୁଲ୍ ନଥିବା) ମଧ୍ୟ ଧାଇଁଥାନ୍ତି । ସେ ଜଣେ ଚିରନ୍ତନ ପ୍ରେମର ବିନ୍ଦୁ । ତାଙ୍କ ଦେହାନ୍ତରେ ଭୁବନେଶ୍ୱରରୁ ପୁରୀ ପର୍ଯ୍ୟନ୍ତ ଲମ୍ବିଥିବା ଲୋକ ଗହଳି ଯିଏ ନଦେଖିଛି, ତାକୁ ଭାଷାରେ ବର୍ଣ୍ଣନା କରାଯାଇନପାରେ । ଖବର କାଗଜର ଲମ୍ବା ସ୍ତମ୍ଭରେ କୁହାଯାଇନପାରେ କିମ୍ବା ଭାଷଣର ମଞ୍ଚରୁ ଉଚ୍ଚ କଣ୍ଠରେ ଜୟଗାନ କରାଯାଇନପାରେ । ମୁଁ ତାଙ୍କୁ ଭଲପାଉଥିଲି । ଆମେ ତାଙ୍କୁ ଭଲ ପାଉଥିଲୁ । ସେ ଭଲ ପାଇବାର ସୀମା ନାହିଁ, ସରହଦ ନାହିଁ ।

ସେଇଭଳି ଜଣେ ଜଣେ ସଙ୍ଗୀତକାର, ଜଣେ ଜଣେ ସାହିତ୍ୟ ସାଧକ, ଜଣେ ଜଣେ ସାଧୁ/ସନ୍ଥ, ଜଣେ ଜଣେ ମହାତ୍ମାଙ୍କ ଆକର୍ଷଣରେ ଲୋକମାନେ ମାଇଲ ମାଇଲ ବାଟ ଚାଲନ୍ତି । ହିନ୍ଦୁ ମୁସଲମାନର ଭେଦ ନଥାଏ । ନାରୀ ପୁରୁଷର ଭେଦ ନଥାଏ । ଜାତି ଅଜାତିର ଭେଦ ନଥାଏ । ଧନୀ ଦରିଦ୍ରର ଭେଦ ନଥାଏ । ସେଇ ଅସାଧାରଣ ପ୍ରତିଭାର ସ୍ପର୍ଶ/ଆହ୍ୱାନ ବ୍ୟକ୍ତିର/ସମୂହର ମନକୁ, ଚେତନାକୁ ଉଦ୍‌ବେଳିତ କରେ, ଆଲୋକିତ କରେ, ଆନ୍ଦୋଳିତ କରେ, ତରଙ୍ଗାୟିତ କରେ ।

ସମାଜର ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରୁଥିବା କେତେଜଣ ସ୍ୱନାମଧନ୍ୟ ବ୍ୟକ୍ତିବିଶେଷଙ୍କ କଥା ଉଲ୍ଲେଖ କରିବା ଉଚିତ ମନେ କରୁଛି । ହକି ଖେଳାଳୀ ଧ୍ୟାନଚାନ୍ଦଙ୍କୁ ପ୍ରାୟ ସମସ୍ତେ ଜାଣନ୍ତି । କ୍ରିକେଟ୍ ଖେଳାଳୀ ସଚିନ୍ ତେନ୍ଦୁଲକର ବା ଇମ୍ରାନ୍ ଖାଁ (ପାକିସ୍ତାନ)ଙ୍କ ଅଜସ୍ର ପ୍ରଶଂସକଙ୍କ କଥା କିଏ ନଜାଣେ । ସେହିପରି କେତେଜଣ ଫୁଟ୍‌ବଲ ଖେଳାଳୀ ଯଥା- ବ୍ରାଜିଲ୍‌ର ପେଲେ ଓ ଆର୍ଜେଣ୍ଟିନାର ମାରାଡୋନାଙ୍କ ଗୌରବ ଗାଥା

ବିଶ୍ୱବିଦିତ । ବାଗ୍ମୀ ଗୌରୀକୁମାର ବ୍ରହ୍ମାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ, ଦର୍ଶନଶାସ୍ତ୍ରବିତ୍ ହୃଦାନନ୍ଦ ରାୟଙ୍କ ଅମୃତବର୍ଷୀ ବିଚାର ଏବଂ ରାଜନୀତିଶାସ୍ତ୍ରୀ ଶ୍ରୀରାମଚନ୍ଦ୍ର ଦାଶଙ୍କ ସାମ୍ବିଧାନିକ ବିଶ୍ଳେଷଣ ଆମମାନଙ୍କୁ ମନ୍ତ୍ରମୁଗ୍ଧ କରିଛି । ଆମ ସହରରେ/ଇଲାକାରେ ଯଦି ଏମିତି ଜଣେ ଜଣେ ବ୍ୟକ୍ତି ରହିପାରନ୍ତି, ଦେଶକୁ ଅଭିଭୂତ କରୁଥିବା, ବିଶ୍ୱକୁ ଅଭିଭୂତ କରୁଥିବା ବ୍ୟକ୍ତି ନରହିବେ କାହିଁକି ?

ଏହିପରି ବ୍ୟକ୍ତିମାନେ ହେଲେ- ଶ୍ରୀରାମ, ଶ୍ରୀକୃଷ୍ଣ, ଯୀଶୁ, ଗାନ୍ଧୀ, ମାର୍କ୍ସ ପ୍ରଭୃତି । ସେମାନେ ଦେଖାଇଥିବା ପଥରେ ସାଧାରଣ ମଣିଷମାନେ ବାଟ ଚାଲନ୍ତି, ତାଙ୍କୁ ପୂଜା କରନ୍ତି, ତାଙ୍କୁ ଝୁରି ହୁଅନ୍ତି ।

ବର୍ତ୍ତମାନ କେବଳ ଶ୍ରୀକୃଷ୍ଣଙ୍କ କଥା ବିଚାର କରିବା । ସେ ଜଣେ ନିପୁଣ ବଂଶୀବାଦକ । ତାଙ୍କ ବଂଶୀର ମୂର୍ଚ୍ଛନାରେ ଅଗଣିତ ନରନାରୀ, ପଶୁପକ୍ଷୀ, ସାଗର ସରିତ-ସମସ୍ତେ ଆମୋଦିତ ହୁଅନ୍ତି । ସେ ଜଣେ ବୀର । ପରାକ୍ରମରେ କେତେ ଅସୁରଙ୍କୁ ବିନାଶ କରିଛନ୍ତି । ସେ ଜଣେ ବିଚକ୍ଷଣ ଶାନ୍ତିଦୂତ । କୌରବ ପାଣ୍ଡବଙ୍କ କଳହର ଅବସାନ ନିମନ୍ତେ ସେ ନାନା କୌଶଳ ଅବଲମ୍ବନ କରିଛନ୍ତି । ସେ ଜଣେ ଯୋଗ ଗୁରୁ । ଗୀତାରେ ଯୋଗର ମହିମା ବ୍ୟାଖ୍ୟା କଲାବେଳେ ଜ୍ଞାନ, ସାଂଖ୍ୟ, କର୍ମ, ସନ୍ନ୍ୟାସ ଇତ୍ୟାଦିର ଗୌରବ ଦର୍ଶାଇଛନ୍ତି । ସେ ଜଣେ ମହାନ ଧର୍ମ ସଂସ୍ଥାପକ । ସ୍ୱଧର୍ମ, ପରଧର୍ମ ଚର୍ଚ୍ଚା ଅବକାଶରେ ଧର୍ମଜ୍ଞାନର ବିଶଦ ଆଲୋଚନା ଆମକୁ ବିସ୍ମିତ କରେ । ଯଦୁବଂଶର ପତନ ମୂଳରେ ତାଙ୍କର ଅଲୌକିକ ଭୂମିକା ବିଶେଷ ଉଲ୍ଲେଖଯୋଗ୍ୟ । ସେ ଜଣେ ବିଶିଷ୍ଟ କୂଟନୀତିଜ୍ଞ । ଯୁଦ୍ଧ ପରିଚାଳନା ସହ ତାଙ୍କର ସମୟାନୁସାରୀ ଉପଦେଶ, ଆଦେଶ, ବା ନିର୍ଦ୍ଦେଶ ଫଳରେ ପାଣ୍ଡବ ସେନାଙ୍କର ବିଜୟ ସହଜ ହୋଇଛି । ସେ ଜଣେ ଅଭିନବ ରାଷ୍ଟ୍ର ନାୟକ । ଭାରତ ବର୍ଷର ଭବିଷ୍ୟତକୁ ସେ ନିଜେ ନିର୍ମାଣ କରିଯାଇଛନ୍ତି । ଆଜି ବି ତାଙ୍କର ରାଜନୀତି, ଯୁଦ୍ଧନୀତି ଦେଶର ଆଦର୍ଶ ହୋଇରହିଛି । ସେ ଜଣେ ପ୍ରିୟତମ ସଖା । ସେ ସୁଦାମାର ସଖା, ସେ ଦ୍ରୌପଦୀର ସଖା, ସେ ଅର୍ଜୁନର ସଖା, ସେ ଗୋବର୍ଦ୍ଧନଗିରିବାସୀଙ୍କ ସଖା, ସେ ଗୋପାଳ ବାଳକମାନଙ୍କର ସଖା, ସେ ଗୋପାଙ୍ଗନାମାନଙ୍କର ସଖା, ସେ ସକଳ ବିପଦର ସଖା ।

ପରିଶେଷରେ କହେ-ଶ୍ରୀକୃଷ୍ଣ ଏକ ପୌରାଣିକ ଚରିତ୍ର । ଏକ ଐତିହାସିକ ଚରିତ୍ର, ସହସ୍ର କିମ୍ବଦନ୍ତୀର ନାୟକ, ବହୁ ଲୋକ କଥା/ଲୋକଗୀତର ଚର୍ଚ୍ଚିତ ଚରିତ୍ର, ବହୁ କାବ୍ୟ/ନାଟକ/ମହାକାବ୍ୟର ମହାନାୟକ । ତାଙ୍କୁ ଏତେ ସହଜରେ ନିନ୍ଦିତ କରିବା କ'ଣ ଠିକ୍ କଥା ।

*୪ ବି, ସନି ସିଟାଡେଲ, ଗଜପତି ନଗର, ଭୁବନେଶ୍ୱର-୫*

*ମୋ: ୯୭୭୬୩୪୯୫୮୯*

# ଉତ୍କଳର ଉତ୍କର୍ଷ ଓ ସ୍ୱାତନ୍ତ୍ର୍ୟ

**ପ୍ରଦୀପ୍ତଚନ୍ଦ୍ର ମହାନ୍ତି (୬୦୦)**

ଦୀର୍ଘ ଚାରିବର୍ଷ ହେବ ସାରା ଭାରତର ଅନେକ ଅଞ୍ଚଳ ଭ୍ରମଣ କରିବା ପରେ ମୁଁ ଦୃଢ଼ଭାବରେ କହିବି ଯେ, ସବୁ ରାଜ୍ୟର କଳା, ସଂସ୍କୃତି, ପରମ୍ପରା ଠାରୁ ଓଡ଼ିଶାର କଳା, ସଂସ୍କୃତି, ପରମ୍ପରା ସ୍ୱତନ୍ତ୍ର । ଅତୀତରେ ଓଡ଼ିଶା ଯେ ସବୁ କ୍ଷେତ୍ରରେ ଉତ୍କର୍ଷ ଲାଭ କରିଥିଲା ଏହା ନିଃସନ୍ଦେହ । ଓଡ଼ିଶାର କଳା ସ୍ୱତନ୍ତ୍ର ଓ ଉତ୍କୃଷ୍ଟ, ତେଣୁ ଉତ୍କୃଷ୍ଟ କଳାର ଦେଶ ଉତ୍କଳ । ଅର୍ଥାତ୍ ଚାରୁକଳା, କାରୁକଳା, ଭାସ୍କର୍ଯ୍ୟ, ସ୍ଥପତି ବିଦ୍ୟା ମଧ୍ୟ ଉଚ୍ଚମାନର ଏବଂ ସ୍ୱତନ୍ତ୍ର । ସେହିପରି ଓଡ଼ିଶାର ଶିଳ୍ପ ଶାସ୍ତ୍ର କୋଣାର୍କ, ପୁରୀ, ଭୁବନେଶ୍ୱର ଠାରୁ ଖିଚିଂ ପର୍ଯ୍ୟନ୍ତ ଓଡ଼ିଶାର କୋଣ ଅନୁକୋଣରେ ଥିବା ସମସ୍ତ ପୁରାତନ ମନ୍ଦିର, ଭାରତରେ ଥିବା ସେହିଭଳି ମନ୍ଦିର ଠାରୁ ଉତ୍କୃଷ୍ଟ ଏବଂ ସ୍ୱତନ୍ତ୍ର ।

ସାରା ଭାରତର ସବୁ ଦିଅଁଦେବତାଙ୍କ ମନ୍ଦିର ଠାରୁ ଶ୍ରୀଜଗନ୍ନାଥଙ୍କ ମନ୍ଦିର ଓ ରୀତିନୀତି ସ୍ୱତନ୍ତ୍ର । ଓଡ଼ିଶାର ଆରାଧ୍ୟ ଦେବତା ପ୍ରଭୁ ଜଗନ୍ନାଥଙ୍କର ରାଜକୀୟ ଦିନଚର୍ଯ୍ୟା ଯଥା ତଡପଲାଗି, ଅବକାଶ ବେଶ, ମଣୋହୀ, ପହୁଡ, ଶାହାଣମେଲା, ରୋଷହୋମ, ଦ୍ୱାରପାଳପୂଜା ଷାଠିଏ ପଉଟିର ଅନ୍ନପ୍ରସାଦ, ଭୋଗମଣ୍ଡପରେ ଛପନଭୋଗ, ନାଟ ମଣ୍ଡପରେ ଦେବଦାସୀ ନୃତ୍ୟ, ଚିତାଲାଗି, ଧୂପ, ଆଳତୀ, ବାରମାସର ତେର ପର୍ବ ଏସବୁ କେଉଁଠି ନାହିଁ । ବାରମାସରେ ତେର ଯାତ୍ରା ଯଥା ରଥଯାତ୍ରା, ଚନ୍ଦନଯାତ୍ରା, ଝୁଲଣ ଯାତ୍ରା, ଦୋଳଯାତ୍ରା ସବୁ ସ୍ୱତନ୍ତ୍ର ଧରଣର । ଜଗନ୍ନାଥ ଯେ ସାଆଁତ, ପତିତପାବନ, ଲକ୍ଷେ ରାଜାର ମଉଡମଣି, ଉତ୍କଳର ଗଜପତି ରାଜା ତାଙ୍କର ପ୍ରଥମ ସେବକ । ଗଜପତି ଜଗନ୍ନାଥଙ୍କ ରାଉତ ବା ତାଙ୍କ ଚଳନ୍ତି ପ୍ରତିମା ବୋଲି କୁହାଯାଏ । ଏହାହିଁ ଆମ ଓଡ଼ିଶାର ପରିଚୟ । ଭାରତର ପ୍ରସିଦ୍ଧ ତୀର୍ଥକ୍ଷେତ୍ର କାଶି, ଦ୍ୱାରିକା, ବଦ୍ରିକା, ମଥୁରା, ବୃନ୍ଦାବନ, ରାମେଶ୍ୱର, ହରିଦ୍ୱାର ଯେଉଁ ସ୍ଥାନକୁ ଯାଅ ଅନ୍ୟ କେଉଁଠାରେ ଏ ପ୍ରକାର ପରମ୍ପରା ନାହିଁ । ଆନନ୍ଦ ବଜାରର ମହାପ୍ରସାଦ, ଅବଢ଼ାର ପ୍ରାଚୁର୍ଯ୍ୟ ଭାରତରେ କୌଣସି ମନ୍ଦିରରେ ଦେଖାଯାଏ ନାହିଁ । ପର୍ଯ୍ୟାପ୍ତ ଭକ୍ତ ଓ ଦର୍ଶନାର୍ଥୀ ଯଦି ରାତି ୧୦ଟାରେ ମନ୍ଦିରରେ ପ୍ରସାଦ ଖାଇବା ପାଇଁ ଆସନ୍ତି ତେବେ ଉପାସ ଫେରିବେ ନାହିଁ । ଜଗନ୍ନାଥଙ୍କ ପାଖରେ ଭୋଗଲାଗି ହେଉଥିବା ଅନେକ ପ୍ରକାର ପିଠାପଣା ଯଥା-ପୋଡ଼ପିଠା, ପୁଳି, ଭଜାମଣ୍ଡା, ଆରିସା, କାକରା, ସରପୁଳୀ, ଖିରମୋହନ, ବଲ୍ଲଭ, ଚିତଉ, ମାଲପୁଆ ଭାରତର ଅନ୍ୟ କୌଣସି ମନ୍ଦିରରେ ମିଳିନଥାଏ ।

ମାର୍ଗଶିର ମାସରେ ଓଡ଼ିଆଣୀ ଧାନମାଣରେ ଲକ୍ଷ୍ମୀଙ୍କ ପୂଜା କରିବା ସମୟରେ ପ୍ରକାର ପ୍ରକାର ପିଠା ଯଥା-ଚକୁଳି, ପୁଳି, ମଣ୍ଡା, ଗଇଣ୍ଠା, ଭଜାମଣ୍ଡା, ଆରିସା, କାକରା, ବୁଢ଼ା ଚକୁଳି, ଚିତଉ, ପୁରବରା, ଅଟକାଳୀ ଆଦି ଘରେ ତିଆରି କରି ଭୋଗ କରିଥାଏ । ଏତେପ୍ରକାର ପିଠାପଣା କୌଣସି ରାଜ୍ୟରେ ମିଳେ ନାହିଁ । ଚାଉଳ ବଟା ପିଠଉରେ ଓଡ଼ିଆଣୀ ଘରସାରା ଯେଉଁ ଝୋଟିଚିତା ପକାଏ ତାହା ସାରା ଭାରତରେ ସ୍ୱତନ୍ତ୍ର । ପୁଣ୍ୟପର୍ବରେ ଓଡ଼ିଆଣୀଙ୍କର ସମ୍ମିଳିତ ହୁଳହୁଳି ଧ୍ୱନି ଅନନ୍ୟ । ପଶ୍ଚିମ ଓଡ଼ିଶାରେ ଯେଉଁ ସମୟରେ ନୂଆଖାଇ ପର୍ବ ପାଳିତ ହୋଇ ଘରେ ଘରେ ନବାନ୍ନ ଖିଆଯାଏ ତାହା ଅନ୍ୟତ୍ର ପାଳିତ ହୁଏ ନାହିଁ । ଧାନ ଚାଷରେ ଓଡ଼ିଶା ଥିଲା ପ୍ରଥମ, ଓଡ଼ିଶାର ମୂଳଚାଷୀମାନେ ପ୍ରଥମେ ଧାନ ଚାଷ କରିଥିଲେ ଏଥିରୁ ସ୍ପଷ୍ଟ ଅନୁମେୟ ।

ଓଡ଼ିଶାର ନୌବାଣିଜ୍ୟ ଯେ ଦିନେ ସମୃଦ୍ଧ ଥିଲା ଏକଥା ଆମେ ଐତିହାସିକ ପର୍ବ ଆକାରରେ ଏପର୍ଯ୍ୟନ୍ତ ଧୁମ୍‌ଧାମ୍‌ରେ ପାଳିଆସୁଛେ । ଧନଧାନ୍ୟରେ ଭରପୁର ଥିବା କଳିଙ୍ଗକୁ ଦଖଲ କରିବା ପାଇଁ ମଗଧ ସମ୍ରାଟ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ । ଏହି ମାଟିରେ ସେ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ ହୋଇଥିଲେ । ତାଙ୍କ ଜୀବନର ଗତିପଥ ଏହି ମାଟିରେ ହିଁ ବଦଳିଯାଇଥିଲା । ଲକ୍ଷ ଲକ୍ଷ ବୀର ଓଡ଼ିଆ ଯୁଦ୍ଧରେ ମୃତାହତ ହୋଇଥିଲେ ମଧ୍ୟ ପରାଜୟ ବରଣ କରିନଥିଲେ । ଓଡ଼ିଶାର ବୀରବାଦ୍ୟ ଢ଼ୋଲ, ବଡ଼କାଠ ବାଇଦ, ମର୍ଦ୍ଦଳ, ପଖଜ, ମୃଦଙ୍ଗ ଆଦି ବାଦ୍ୟ ଓଡ଼ିଶାର ସ୍ୱତନ୍ତ୍ର । ଇଂରେଜମାନେ ଗୋଟିଏ ସମୟରେ ସାରା ଭାରତ ଦଖଲ କରି ନିଜ ଅକ୍ତିଆରକୁ ନେଇଯାଇଥିଲେ ମଧ୍ୟ ସ୍ୱାଭିମାନୀ ଓଡ଼ିଆମାନଙ୍କର ମୂଳ ଦୁର୍ଗ ଖୋର୍ଦ୍ଧାଗଡ଼କୁ ଦଖଲ କରିବା ପାଇଁ ସେମାନଙ୍କୁ ନାକେଦମ୍ ହେବା ପାଇଁ ପଡ଼ିଥିଲା । କଳିଙ୍ଗ ସମ୍ରାଟ ମହାମେଘ ବାହାନ ଐର ଖାରବେଳ କଳିଙ୍ଗର ରାଜଧାନୀ ତୋଶାଳୀଗଡ଼ରୁ ଆରମ୍ଭ କରି ଭାରତ ବର୍ଷର ଅର୍ଦ୍ଧେକ ଅଞ୍ଚଳ ନିଜ ଦଖଲକୁ ଆଣି ସୁଶାସନ ଦେଇଥିଲେ । ରାଜା କପିଳେନ୍ଦ୍ର ଦେବ ବୀର ଓଡ଼ିଆ ସୈନ୍ୟଙ୍କ ଦ୍ୱାରା ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ଜୟ କରି ଏକାଧିପତ୍ୟରେ ରଖିଥିଲେ । ସେଥିପାଇଁ ଉତ୍କଳ ଗୌରବ ମଧୁସୂଦନ ଲେଖିଛନ୍ତି..."ତୋ ପୂର୍ବପୁରୁଷ ଜୟ କରିଥିଲେ ଗଙ୍ଗା ଠାରୁ ଗୋଦାବରୀ" ଏହା ହେଉଛି ଓଡ଼ିଶାର ଗରିମାମୟ ଇତିହାସ ।

ବର୍ତ୍ତମାନ ଭାରତରେ ସମସ୍ତ ରାଜ୍ୟର ରାଜଧାନୀକୁ ବୁଲିଆସିଲେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱର, ଏହା ଯେ ସରସ, ସୁନ୍ଦର, ପରିଚ୍ଛନ୍ନ, ଅପେକ୍ଷାକୃତ ପ୍ରଦୂଷଣମୁକ୍ତ, ସ୍ୱାସ୍ଥ୍ୟକର ଜଳବାୟୁଯୁକ୍ତ ଏହା ନିଃସନ୍ଦେହ । ଯଦିଓ ଚଣ୍ଡିଗଡ଼ ଓ ଭୁବନେଶ୍ୱରର ଗଠନଶୈଳୀ ଏକାପ୍ରକାରର ଓ ଏକାୟତନ ବିଶିଷ୍ଟ, କିନ୍ତୁ ଚଣ୍ଡିଗଡ଼ ସହରରେ ତିନୋଟି ରାଜ୍ୟର ରାଜଧାନୀ ଚାଲୁଥିବା କାରଣରୁ ଏହା ଆବାଦପୂର୍ଣ୍ଣ । ଉଭୟ ଭୁବନେଶ୍ୱର ଓ ଚଣ୍ଡିଗଡ଼

କ୍ରମବଦ୍ଧିଷ୍ଣୁ କାରଣରୁ ଚଣ୍ଡିଗଡ଼ ଅପେକ୍ଷା ଭୁବନେଶ୍ୱର ଅଧିକ ଅନୁକୂଳ, କାରଣ ଏହାର ଚର୍ତୁପାର୍ଶ୍ୱରେ ଥିବା ବିସ୍ତୀର୍ଣ୍ଣ ପ୍ରାକୃତିକ ଜଙ୍ଗଲଯୁକ୍ତ ପ୍ରଦୂଷଣମୁକ୍ତ ସମତଳ ଅଞ୍ଚଳ ଏହାକୁ ଭବିଷ୍ୟତରେ ଏକ ସ୍ମାର୍ଟସିଟି କରାଇବା ପାଇଁ ଅଧିକ ଉପଯୁକ୍ତ । ଭୁବନେଶ୍ୱର ଉପକଣ୍ଠରେ ଥିବା ଚନ୍ଦକା ପ୍ରାକୃତିକ ହାତୀ ଅଭୟାରଣ୍ୟ ଗାରତରେ ବିରଳ । ବିଲ, ବଣ, ପାହାଡ଼, ଝରଣା, ଜଳପ୍ରପାତ, ନଦୀ, ସମୁଦ୍ରକୂଳ, ତ୍ରିକୋଣ ଭୂମି, ନଦୀ ମୁହାଣ, ଅଭୟାରଣ୍ୟ, ନଦୀକୂଳ ଅଭୟାଞ୍ଚଳ, ସମୁଦ୍ର ବେଳାଭୂମି ଅଭୟକୂଳ, ନଦୀ ଅଭୟଜଳ, ମିଠାଜଳ ହ୍ରଦ, ଲୁଣିଜଳ ହ୍ରଦ, ସନ୍ତସନ୍ତିଆ ଭୂମି, ମାଳଭୂମି, ପାହାଡ଼ି ଇଲାକା ଭୁଗୋଳ ପାଠରେ ପ୍ରାୟ ସବୁ ନିଖୁଣ ପ୍ରାକୃତିକ ଉଦାହରଣ ଓଡ଼ିଶା ଭୁଖଣ୍ଡରେ ଦେଖିବାକୁ ମିଳେ । ଏଠାରେ କେଉଁଠି ନା କେଉଁଠି ବରଫ ପାତ ମଧ୍ୟ ହୁଏ । ଗ୍ରୀଷ୍ମରେ ଅସହ୍ୟ ଗରମ ଅନୁଭୂତ ହୁଏ । ୫୦ ଘଣ୍ଟାରୁ ଉର୍ଦ୍ଧ୍ୱ ସମୟ ଧରି ଲଗାତାର ବର୍ଷା ମଧ୍ୟ ହୋଇଥାଏ । ଶୀତଦିନେ ସମଗ୍ର ଏସିଆ ମହାଦେଶରୁ ଚଢ଼େଇମାନେ ଉଡିଆସନ୍ତି ଏହି... "ଉତ୍କଳ କମଳା ବିଳାସ ଦୀର୍ଘିକା, ମରାଳ ମାଳିନୀ ନିଳାମ୍ବୁ ଚିଲିକା"କୁ । ଭୂତତ୍ତ୍ୱ ପାଠ ଦେଖିଲେ ଜଣାଯାଏ ଯେ ଓଡ଼ିଶାର ମାଟିତଳେ ଅଜସ୍ର ମୂଲ୍ୟବାନ ଖଣିଜ ସମ୍ପଦ ଭରପୁର ହୋଇରହିଅଛି ।

ଓଡ଼ିଆମାନେ ସର୍ବାପେକ୍ଷା ଅତିଥି ପରାୟଣ । ଏମାନେ ଅତିଥି ସତ୍କାରରେ ଆନନ୍ଦ ଲାଭ କରିଥାନ୍ତି, ଯାହା ଆର୍ଯ୍ୟସଂସ୍କୃତିର ଏକ ମହାନ ପରମ୍ପରା । ବେଦରେ ବର୍ଣ୍ଣିତ ହୋଇଛି- "ଅତିଥି ଦେବୋ ଭବଃ" । କୌଣସି ଓଡ଼ିଆ ଘରେ ଅତିଥି ପହଞ୍ଚିଲେ ଯେତେ ଅଭାବ ଥିଲେ ମଧ୍ୟ କୁଣିଆଙ୍କ ପାଇଁ ସଙ୍ଗେ ସଙ୍ଗେ ଛଅ ତରକାରୀ ନଅ ଭଜା କରାଯାଏ । ମାମୁଘରେ, ମାଉସୀ ଘରେ, ପିଉସୀ ଘରେ ଅବେଳରେ ପହଞ୍ଚିଗଲେ ହାଣ୍ଡିରେ ପଖାଳ ଥାଏ । ସାଙ୍ଗେ ସାଙ୍ଗେ ବଡିଚୂରା ହୋଇଯାଏ, ବାଇଗଣ ପୋଡ଼ି କଞ୍ଚାଲଙ୍କା, ସୋରିଷ ତେଲ, ରସୁଣରେ ମନ୍ଥି ଦିଆଯାଏ କିମ୍ବା ସୁଖୁଆଟେ ଭାଜିଦେଲେ ସଙ୍ଗେ ସଙ୍ଗେ ପଖାଳ ସାଙ୍ଗକୁ ତିନି ତୁଅଣ ପ୍ରସ୍ତୁତ ହୋଇଯାଏ । ଆମେ ଅଣଓଡ଼ିଆ ବନ୍ଧୁ ଘରେ ଦିନ ୩ଟାବେଳେ ଭୋକରେ ପହଞ୍ଚିଲେ ଆପଣ ଖାଦ୍ୟ ପରସାର ଫରକ ଅନୁଭବ କରିପାରିବେ । ପଖାଳ ସାଙ୍ଗରେ ଆଳୁ, ବାଇଗଣ, ଟମାଟୋ, ଭେଣ୍ଡି, ଛଚିନ୍ଦ୍ରା, ଜହ୍ନି ଏପରିକି ଛତୁ ଠାରୁ ମାଛ ପର୍ଯ୍ୟନ୍ତ ଚୂଲିରେ ପୋଡ଼ି ଚଟଣି ବନେଇ ବା ପାଗ କରି ଯେ ଖାଇଛି ସେ ହିଁ ତା'ର ମଜା ଚାଖିଛି । ଅମ୍ବ ଖଟା ରସ ଦିଆ ଛୋଟ ଛୋଟ ମାଛ ବା ଚୂନା ମାଛ ବେସର ମଧ୍ୟ ଓଡ଼ିଶାର ସ୍ୱତନ୍ତ୍ର ବ୍ୟଞ୍ଜନ । କୌଣସି ଅଣଓଡ଼ିଆ ଲୋକ ଓଡ଼ିଆ ଖାଦ୍ୟ କେବଳ ଦେଖି ଏହାର ସ୍ୱାଦ ଆକଳନ କରିପାରିବ ନାହିଁ । ଏହା ବ୍ୟତୀତ କାଂଜି, ଖୁଦତୁଉଣ ବା ଖୁଦିପିତା ଠାରୁ ଆରମ୍ଭ କରି ବେଷର, ମହୁର, ରାଇ, ଶାଗ ଖରଡା, ଜାଉ ଏସବୁ ଜିନିଷ ଅଣଓଡ଼ିଆଙ୍କ ପାଇଁ ସ୍ୱପ୍ନ । ଏହା ଆମର ହାଣ୍ଡିଶାଳର ଜିନିଷ, ସମ୍ପୂର୍ଣ୍ଣ ନିଜସ୍ୱ । କିନ୍ତୁ ଓଡ଼ିଆଘରର ଡାଲମା,

ଭଜାସନ୍ତୁଳା, ପାଣିସନ୍ତୁଳାକୁ ଏବେ ସମସ୍ତେ ଆଦରିଲେଣି । କାରଣ ଏହା ନିଃରୋଗ, ସ୍ୱାସ୍ଥ୍ୟକର, ଭାତ ଓ ରୁଟି ଉଭୟ ପାଇଁ ଯୋଗ୍ୟବ୍ୟଞ୍ଜନ । ଉପକୂଳ ଓଡ଼ିଆଙ୍କ ଡାଲମାରେ ଥୋଡ଼େ ଚିଙ୍ଗୁଡ଼ି ପଡ଼ିଲେ ଅଧିକ ଆନନ୍ଦଦାୟକ ।

ଓଡ଼ିଆ ଲୋକଙ୍କ ହାତଟେକି ଯୋଡହସ୍ତ ନମସ୍କାର ମୁଦ୍ରା ଅତ୍ୟନ୍ତ ସୁନ୍ଦର । ବର୍ତ୍ତମାନର ଗଜପତିଙ୍କ ନମସ୍କାର ମୁଦ୍ରା ଏହାର ଜ୍ୱଳନ୍ତ ଉଦାହରଣ । ଓଡ଼ିଆ ବୋହୁମାନଙ୍କର ମୁଣ୍ଡିଆ ମରା (ଭୂମିଷ୍ଠ ପ୍ରଣାମ) ଓ ସେମାନଙ୍କ ଓଢ଼ଣୀ ପକା କୌଣସି ରାଜ୍ୟର ମହିଳାମାନଙ୍କ ଠାରୁ ଆମ ରାଜ୍ୟର ମହିଳାମାନେ ଯେ ଉନ୍ନତ ଏହା କୁହାଯାଇପାରିବ ।

ଓଡ଼ିଆମାନଙ୍କ ସାଂସ୍କୃତିକ ପରମ୍ପରା ସ୍ୱତନ୍ତ୍ର ଓ ଉଚ୍ଚମାନର । ଓଡ଼ିଆମାନେ ସର୍ବାପେକ୍ଷା ଅଧିକ ନାଟରଙ୍ଗ ପ୍ରୀୟ । ଯାତ୍ରା, ଅପେରା, ଜମାଣ, ଭେଟ, ଦୋଳ ମେଳଣ, ପଟୁଆର, ରାମଲୀଳା, କୃଷ୍ଣଲୀଳା, ଭାରତଲୀଳା, ଝାମୁଯାତ୍ରା, ବର୍ଷସାରା ବିଭିନ୍ନ ପର୍ବ ପର୍ବାଣୀ, ଓଷା ବ୍ରତ, ମେଳା ମଉଛବରେ ଓଡ଼ିଶାର ପରିଚୟ ପରିପୁଷ୍ଟ । ମୋର ଅନୁମାନ ଓଡ଼ିଆମାନେ ଅଧିକ ଭୋଜି ଓ ଭୋଜନ ପ୍ରିୟ । ଅନ୍ୟମାନଙ୍କ ଠାରୁ ଅପେକ୍ଷାକୃତ ଅଧିକ ତରକାରୀ, ସାଗ୍‌ସବଜୀ ଖାଇଥାନ୍ତି । ଓଡ଼ିଶା ବ୍ୟତୀତ ଛେନାପୋଡ ଅନ୍ୟ କୌଣସି ଜାଗାରେ ମିଳେ ନାହିଁ । ଏହାଛଡ଼ା ଛେନାଖଇ, ଛେନା ମୁଡ଼୍‌କି, ଛେନାଝିଲି, ଛେନାକାକରା, ଛେନାତାଡ଼ିଆ, ଛେନାପାଏସ୍‌, ଛେନାଗଜା, ରାବିଡ଼ି, ରସାବଳୀ ଓଡ଼ିଶାର ସ୍ୱତନ୍ତ୍ର ମିଷ୍ଟାନ୍ନ ।

ଓଡ଼ିଆ ଭାଷା, ଓଡ଼ିଆ ଲିପି ଯେ ଶାସ୍ତ୍ରୀୟ ଏକଥା କିଛି ଭାରତୀୟ ଭାଷା ଓ ଲିପିକୁ ଅଧ୍ୟୟନ କରିଲେ ସ୍ପଷ୍ଟ ଜାଣିହେବ । ଓଡ଼ିଶୀ ନୃତ୍ୟ, ଓଡ଼ିଶୀ ସଙ୍ଗୀତ କେତେ ଶାସ୍ତ୍ରୀୟ ଓ ସ୍ୱାତନ୍ତ୍ର୍ୟ ବଜାୟ ରଖିଛି ତାହା ଭାରତୀୟ ଅନ୍ୟାନ୍ୟ ନୃତ୍ୟ ଓ ସଙ୍ଗୀତ ସହିତ ତୁଳନା କଲେ ନିଶ୍ଚୟ ଜଣାଯାଏ । ଏହା ବ୍ୟତୀତ ଓଡ଼ିଶାର ଲୋକନୃତ୍ୟ, ଲୋକସଂଗୀତ, ଲୋକଗୀତ, ଶଗଡ଼ିଆଗୀତ, କାନ୍ଦଣାଲହରୀ, ଛାନ୍ଦ, ଚଉପଦୀ, ଚମ୍ପୁ, ଢଗଢମାଳୀ ଅନନ୍ୟ ଓ ଅସଂଖ୍ୟ । ସାରଳା ଦାସଙ୍କ ଓଡ଼ିଆ ମହାଭାରତ କେବଳ ଓଡ଼ିଆଭାଷାରେ ପ୍ରଥମ ମହାକାବ୍ୟ ନୁହେଁ ଏହା ଭାରତରେ ଅନ୍ୟାନ୍ୟ ମହାକାବ୍ୟମାନଙ୍କ ମଧ୍ୟରେ ଏକ କାଳଜୟୀ ମହାଗ୍ରନ୍ଥ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ରଚିତ ଶତାଧିକ କାବ୍ୟର ଶବ୍ଦ ସମ୍ଭାର, ଅର୍ଥ ଓ ଭାବଗାମ୍ଭୀର୍ଯ୍ୟ ଭାରତର ଅନ୍ୟ କୌଣସି ଭାଷା ସାହିତ୍ୟରେ ବିରଳ । ଲୋକକଳା ହିସାବରେ ପାଲା, ଦାଶକାଠିଆ, ଗୋଟିପୁଅ ନାଚ, ଘୁଡୁକି, ଦୁଆରୀ, ସଙ୍ଗୀତ, ରାସ, ସୁଆଙ୍ଗ, ଚଢ଼େଇ-ଚଢ଼େଇଆ, ପତର-ସଉରା, କେଳା-କେଲୁଣି, ଧୋବା-ଧୋବଣୀ, ଶବର-ଶବରୁଣୀ, ଘୋଡ଼ାନାଚ, ବାଘନାଚ, ନାଗା ତଗା ନାଚ, ପାଇକନାଚ, କଣ୍ଢେଇ ନାଚ ଆଦି ଓଡ଼ିଶାର ସ୍ୱତନ୍ତ୍ର ପରିଚୟ ।

ଓଡ଼ିଶାର ଭୁବନେଶ୍ୱର ନିକଟବର୍ତ୍ତୀ ତଥା ଅନ୍ୟ ଅନେକ ସ୍ଥାନରେ ଦୁର୍ଗ, ଗଡ ଓ

ସୁଡ଼ଙ୍ଗ ଅଛି, ଯାହା ପ୍ରାଚୀନ ଇତିହାସର ମୂକସାକ୍ଷୀ । ଭୁବନେଶ୍ୱରରେ ରାଜ୍ୟ ସଂଗ୍ରହାଳୟ ସାଙ୍ଗକୁ ଅନ୍ୟାନ୍ୟ ଛୋଟ ଛୋଟ ସଂଗ୍ରହାଳୟ, ନନ୍ଦନକାନନ ପ୍ରାଣୀ ଉଦ୍ୟାନ, ଉଦ୍ଭିଦ ଉଦ୍ୟାନ, ଧଉଳି ବୌଦ୍ଧ ଶାନ୍ତିସ୍ତୁପ, ଖଣ୍ଡଗିରି ଗୁମ୍ଫାରେ ଜୈନ କୀର୍ତ୍ତିରାଜି, ଅଶୋକଙ୍କ ଶିଳାଲିପି, ବ୍ରାହ୍ମି, ଖରୋଷ୍ଠି ଓ ପାଲିଭାଷା ଆମ ଭାଷା ଓ ଲିପି ଇତିହାସର ଗରିମାମୟ ମୁକସାକ୍ଷୀ । ଲିଙ୍ଗରାଜ ମନ୍ଦିର ପରି କାରୁକାର୍ଯ୍ୟ ପୂର୍ଣ୍ଣ ସୁଉଚ୍ଚ ମନ୍ଦିର ଭାରତରେ ବହୁତ କମ୍ ଦେଖାଯାଏ । କୋଣାର୍କର ସୂର୍ଯ୍ୟମନ୍ଦିରର କାରୁକାର୍ଯ୍ୟ ଭାରତରେ ଆଶ୍ଚର୍ଯ୍ୟ । ପ୍ରଭୁ ଜଗନ୍ନାଥଙ୍କ ରଥଯାତ୍ରା ଭାରତରେ ଅଦ୍ୱିତୀୟ । ଚିଲିକା ହ୍ରଦ ପରି ବିଶାଳ ଲୁଣିଜଳ ହ୍ରଦ ବିରଳ, ରଘୁରାଜପୁରର ପଟ୍ଟଚିତ୍ର ଦେଶରେ ଆଦୃତ । ଓଡ଼ିଶାର ହସ୍ତତନ୍ତ ପାଟଶାଢ଼ୀ ମଧ୍ୟ ଓଡ଼ିଶାର ପରିଚୟ । ଏତଦଭିନ୍ନ ଓଡ଼ିଶାର ବିଭିନ୍ନ କୋଣ ଅନୁକୋଣରେ ପ୍ରାଚୀନ କୁଟୀର ଶିଳ୍ପ, ପ୍ରାଚୀନ ହସ୍ତକଳା, ବିଭିନ୍ନ ପ୍ରକାରର ଆଞ୍ଚଳିକ ଲୋକକଳା, ବିଭିନ୍ନ ପ୍ରକାରର ଆଦିବାସୀ ସଂସ୍କୃତି (ଆଦିବାସୀ ନୃତ୍ୟ, ବାଦ୍ୟ, ସଂଗୀତ, ବେଶଭୁଷା, ଜୀନବଚର୍ଯ୍ୟା, ଖାଦ୍ୟ, ଭାଷା) ଏବଂ ବିଭିନ୍ନ ପ୍ରକାରର ଭାରତ ପ୍ରସିଦ୍ଧ ଆଞ୍ଚଳିକ ଖାଦ୍ୟ, ଉଦାହରଣ ସ୍ୱରୂପ ଭୁବନେଶ୍ୱର କୋରାଖଇ ଏହିପରି ଜିନିଷ ଦେଖିବାକୁ ମିଳେ ଯାହା ଭାରତର ସବୁ ପ୍ରାନ୍ତମାନଙ୍କ ଠାରୁ ଓଡ଼ିଶା ଯେ ଭାରତରେ ସବୁ ଦିଗରୁ ସ୍ୱତନ୍ତ୍ର ଏବଂ ଉତ୍କର୍ଷ ଏହା ପ୍ରମାଣିତ ହୋଇଥାଏ । ଏଥିପାଇଁ ଗୋପବନ୍ଧୁ ଲେଖିଛନ୍ତି...

"ଭାରତ ସରସୀ ଉତ୍କଳ କମଳ
ତା ମଧ୍ୟେ କେଶର ପୂଣ୍ୟ ନୀଳାଚଳ"

*ଆବାହକ: ଓଡ଼ିଆ ସ୍ୱାଭିମାନ ରକ୍ଷାମଞ୍ଚ*
*ମୋ: ୯୪୩୮୧୬୮୪୧୦*

# ମଦ୍ୟପୁରଠୁଁ ମାନପୁର କେତେଦୂର

ଶିଶିର କୁମାର ଚୌଧୁରୀ (୪୮୪)

ଏଇ ଆମରି ଗାଁ, ସୁନ୍ଦର ତାର ଆମ୍ବତୋଟା, ସୁନୀଳ ତା'ର ବଣ ପାହାଡ଼, ରସ ରସିଆ ରଜ ମଉଜ, ମଧୁର ତା'ର ନାଁ ।

ଗାଁର ନାମ 'ମାନପୁର', ଘଟଣାବହୁଳ, ଅନେକ ମିଠାମିଠା ସ୍ମୃତିରେ ଭରପୁର । ଏଇ ଗାଁର ଶହେବର୍ଷର ଅଷ୍ଟପ୍ରହରୀର ନାମ ଅଛି; ତଥା ଛତିଶବର୍ଷର ମା ଲକ୍ଷ୍ମୀଙ୍କ ପୂଜାର ପରମ୍ପରା ଅଛି । ଅନେକ ନିଷ୍ଠା ଓ କାଷ୍ଠାର ପର୍ବ; ଯେଉଁଥିପାଇଁ ଆଜି ଗାଁର ଲୋକେ ସ୍ୱଚ୍ଛଳ, ସ୍ୱାଭିମାନୀ, ଅପରିଗ୍ରାହୀ । ଯାହାକରନ୍ତି, ନିଜ ଘରୁ ଚାନ୍ଦା ଦେଇ; ଆମ ଗାଁର ହାଇସ୍କୁଲ ବା ମାଇନର ସ୍କୁଲ ଆମରି ଗାଁ ଲୋକଙ୍କ ଚାନ୍ଦାରେ ଗଢ଼ା ହୋଇଥିଲା ।

ସତେ ଯେମିତି ଆମ ଗାଁ ମାଟିରେ ସ୍ୱାଭିମାନର ଚାରା, କେଉଁ ଅଦେଖା ହାତର ଦରଦ ସ୍ପର୍ଶରେ କେଉଁକାଳରୁ ପୋତା ହୋଇଛି । ଭାରି ଭଲଲାଗେ ଏଠାକାର ପର୍ବପର୍ବାଣୀ, ପଂକ୍ତିଭୋଜନ, ଅଷ୍ଟପ୍ରହରୀର ନଗର କୀର୍ତ୍ତନ । ଦୂରରେ ଚାକିରୀ କରୁଥିବା ପୁଅ, ଶାଶୁଘରେ ସ୍ୱାମୀ ପିଲାଙ୍କ ସାଙ୍ଗେ କାଳପାତୁଥିବା ଝିଅ ଏଇ ସମୟକୁ ଅନେଇଥାଏ; ଗାଁକୁ ଯିବ, ସମସ୍ତଙ୍କ ସାଙ୍ଗେ ମିଶିବ, ପର୍ବ ପର୍ବାଣୀର ମଜ୍ଜା ନେବ । ମଣିଷ ଜନ୍ମନିଏ ଏଇ ଗାଁରେ, ମାଆର ଗର୍ଭରୁ ପୁଣି ଆଶା ରଖେ ମିଶିବାକୁ ଏହାରି ମାଟିରେ ଜୀବନକୁ ଶେଷ କରି । ଯେମିତି ସ୍ୱର୍ଗକୁ ଏଠାରୁ ସିଧା ରାସ୍ତା ପଡ଼ିଛି ।

ସବୁ ଠିକ୍ ଚାଲିଥିବା ଆମ ଗାଁରେ ଘଟିଲା ସାମାଜିକ ପରିବର୍ତ୍ତନର ଏକ ମନ୍ଦ ପରିଣତି । ଚାଳିଶ ବର୍ଷ ତଳେ କଲେଜରେ ପଢ଼ିବା ବେଳେ ଯେଉଁ ଜିନିଷ ପ୍ରତି ବହୁଳ ଭାବେ ଘୃଣା ଥିଲା, ଏବେ ତା'ର ବହୁଳ ପ୍ରସାର ଘଟିଲା । ସେହି ସ୍ରୋତରୁ ଆମ ଗାଁ ବାଦ ଯାଆନ୍ତା କିପରି ? ଥରେ ବିଜେବି କଲେଜ ହଷ୍ଟେଲ୍‌ରେ ଆମେ କେତେଜଣ ଫାଷ୍ଟ ଇୟର ପିଲା ୧୨୫ ଅନ୍ତେବାସୀଙ୍କ ମଧ୍ୟରେ ଥିବା ଜଣେ ମାତ୍ର ମଦୁଆଙ୍କୁ ପଣାସଂକ୍ରାନ୍ତିରେ ଟିକେ ଭାଙ୍ଗ ମାଗିଥିବାରୁ ସେ ବହୁତ ଦୁଃଖ କରିଥିଲେ ଏବଂ ତାଙ୍କର ଅନ୍ୟ ବନ୍ଧୁମାନଙ୍କ ପାଖରେ ଏହା ପ୍ରକାଶ କରିଥିଲେ ।

କିନ୍ତୁ ଆଜି ୧୫/୨୦ ବର୍ଷର ପିଲା ମଦପିଉଛି, ବାପା ମାଆଙ୍କ ପାଖରେ ସ୍ୱୀକାର କରୁଛି । ପଚାରିଲେ କହୁଛି ସବୁଆଡ଼େ ଚାଲିଛି, ବମ୍ବେ ବାଙ୍ଗାଲୋରରେ ଏହା ଫେସନ, ଆମେ ତ କେବେ କେବେ ନେଉଛୁ । ଆମ ଗାଁ ପାଖ ଚୋଲକାନୀରେ ୨/୩ ବର୍ଷ ତଳେ ଥରେ ଦେହୁରୀ ସାହିର ମହିଳାମାନେ ଏକଜୁଟ୍ ହେଲେ । ତାଙ୍କ ସ୍ୱାମୀମାନେ ମଦ ପିଇ

ସବୁ ରୋଜଗାରକୁ ଉଡାଇଦେଇଥିଲେ । ତେଣୁ ସେମାନେ ସବୁ ମଦଦୋକାନ ବନ୍ଦ କଲେ । ଝାଡୁ ଧରି ସବୁ ମଦୁଆ ଓ ମଦଦୋକାନୀଙ୍କୁ ଗୋଡ଼େଇ ଗୋଡ଼େଇ ପିଟିଲେ । ବିଦେଶୀ ମଦ ବିକୁଥିବା ଜଣକୁ ଛମାସ ଜେଲ୍ ପଠାଇଲେ । ଫଳରେ ସେ ଗାଁ ଓ ପାଖ ଗାଁ ଚିଦ୍ରୀର ମହୁଲୀମଦ ପିଉଥିବା ବୁଢ଼ାମାନେ ଏବଂ ଫରେନ୍‌ଲିକର ପିଉଥିବା ପିଲାମାନେ ବଡି ଭୋରରୁ ରାତି ଏଗାରଟା ପର୍ଯ୍ୟନ୍ତ ଆମ ଗାଁକୁ ଲାଇନ୍ ଲଗାଇଲେ ଏବଂ ସରଳ ସୁନ୍ଦର ଆମ ଗାଁ 'ମାନପୁର' ହୋଇଗଲା 'ମଦ୍ୟପୁର' ।

ଆମ ଗାଁର ସାତଟି ପରିବାର ମଦ ବ୍ୟବସାୟକୁ ରୋଜଗାରର ପନ୍ଥା ରୂପେ ଗ୍ରହଣ କରି ଉଲ୍ଲସି ଉଠୁଥିଲେ । ସୂର୍ଯ୍ୟୋଦୟ ପୂର୍ବରୁ ମଦୁଆଙ୍କ ଧାଡିଛୁଟୁଥାଏ, ଯେଉଁଭଳି ଶ୍ରାବଣ ମାସିଆ ଶିବଭକ୍ତଙ୍କ କାଉଡ଼ିଆ ଧାଡ଼ି । ସତେକି ମଦ ହୋଇଯାଇଛି ମହାପ୍ରସାଦ । ଭାରି ଅତିଷ୍ଠ ଲାଗୁଥାଏ । କିଭଳି ଗାଁରୁ ମଦ ଦୂର ହେବ, ସେଇ ଚିନ୍ତା ଆମକୁ ଗ୍ରାସ କରୁଥାଏ । ଗାଁର ଭବିଷ୍ୟତ ବଂଶଧର କିଭଳି ସୁଧୁରିବେ ସମସ୍ତଙ୍କର ଏଇ ଚିନ୍ତା ।

ମଝିରେ ମଦବେପାରୀମାନଙ୍କୁ କେହି କେହି ବାରଣ କରନ୍ତି । ମୁଁ ବି କେତେଥର ସେମାନଙ୍କୁ ତାଗିଦ୍ କରିଛି । ଥାନା ପୋଲିସ୍‌ର ଭୟ ଦେଖାଇଛି । ତାଙ୍କ ମଧ୍ୟରୁ କେଇଜଣ ଛଅ ମାସର ମହଲତ ନିଅନ୍ତି । ହେଲେ ବେପାର ତା' ବାଟରେ ଚାଲେ । ପାଖ ଜଙ୍ଗଲରୁ ମହୁଲୀମଦ ସାଇକେଲରେ ବୁହାହୋଇଆସେ, ଆଉ ଏସିଡ୍ ମିଶା ଫରେନ୍ ଲିକର ପାଖ ସହରରୁ ପହଞ୍ଚିଯାଏ । ବେଳେବେଳେ ବେପାରୀଙ୍କ ପୁଅମାନେ ୭୦/୮୦ କିଲୋମିଟର ସ୍ପିଡ୍‌ରେ ମଟରସାଇକେଲ ଚଳାଇ ମଦ ବୋହିଆଣନ୍ତି । ପରେ ଚେନାଚୁର, ପାମ୍ପଡ, ବରା, ଚିକେନ ପକୋଡା ପ୍ରସ୍ତୁତ ହୋଇଥାଏ । ସକାଳ ୬ରୁ ରାତି ୧୨ ପର୍ଯ୍ୟନ୍ତ ୩/୪ ଗାଁର ମଦୁଆ ପିଲାଙ୍କର ଗହଳି ଲାଗେ । ସହରରେ ପାଠ ପଢୁଆ ପିଲେ ଗାଁ ମାଟିରେ ଏ ସୁଯୋଗକୁ ହାତେଇ ଆନନ୍ଦ ଅନୁଭବ କରନ୍ତି । ପାଟିର ଦୁର୍ଗନ୍ଧ ଛଡେଇବା ପାଇଁ ଗୁଟ୍‌ଖା ଖାଇନିଅନ୍ତି । ଘରେ ପଚାରିଲେ କହନ୍ତି ଏଇ ଗୁଟ୍‌ଖା ଖାଇଥିଲି । କେହି ବାରଣ କଲେ, କହନ୍ତି "ଆର ମାସକୁ ଛାଡ଼ିଦେବି" । ଭାରି ଭୟ ଲାଗେ, କି କାଳ ହେଲା ଆସି, କଳିଯୁଗର ଶେଷ ପର୍ଯ୍ୟାୟରେ ମନ ତ ସତ୍ୟ ଆଡକୁ ଯିବା କଥା । କିନ୍ତୁ ଏପରି ବିପର୍ଯ୍ୟୟ କାହିଁକି ? ପୁଣି ମନେପଡେ ସେହି ଦ୍ୱାପର ଶେଷର ସନ୍ତରାବନରେ ସୋମରସ ପାନ ?

ଏଇତ ମଦ୍ୟଯୁଗର ନହବତ ବାଜିଲାଣି । ନେତା, ମନ୍ତ୍ରୀ, ଶିଳ୍ପପତି ଓ ଅଫିସରଙ୍କ ଗୁପ୍ତଧନର ଲିଷ୍ଟ ନେଇ ତଦନ୍ତ ଆରମ୍ଭ ହେଲାଣି । ରାମଦେବଙ୍କ ଯୋଗଶିକ୍ଷା, ଆନ୍ନାଙ୍କ ଆନ୍ଦୋଳନ ଏସବୁ ନୂଆ ଯୁଗର ମାଙ୍ଗଳିକ ବଜେଇ ଚାଲିଛନ୍ତି । ତେବେ ଆମ ଗାଁର ମଦବେପାର କେବେ ବନ୍ଦ ହେବ ? ଏମିତି ଚିନ୍ତା ରହୁଥାଏ, ଅମା ଅନ୍ଧାର ରାତିରେ ଲାଇନ୍ କଟିଗଲାପରେ ଝଡ଼ ଆସିଲେ ଯେପରି ଲାଗେ, ସେହିପରି ଲାଗୁଥାଏ ।

ଶେଷରେ ଆମ ଗାଁରେ ଲୋକେ ଜାଗିଲେ । ଲକ୍ଷ୍ମୀପୂଜା ମିଟିଙ୍ଗ୍‌ରେ ମଦ ବେପାରୀମାନଙ୍କୁ ସଭାକୁ ଡାକି ମଦ ବିକିବାକୁ ବାରଣ କରାଗଲା । ସେମାନେ ସମସ୍ତେ ମହଲତ୍ ନେଲେ । କିନ୍ତୁ ଗୋଟିଏ ପିଲା କହିଲା, ଆମେ ମରିବୁ ପଛେ, ମଦବେପାର ଛାଡିବୁନି । ଲୋକମାନେ ପୋଲିସ ଥାନାକୁ ଦରଖାସ୍ତ ଦେଲେ । ପୋଲିସ ଆସିଲେ, ସେମାନଙ୍କୁ ତାଗିଦ୍ କଲେ । ସେମାନଙ୍କୁ ଥାନାକୁ ଡାକି ବୁଝାଇଲେ । ତା'ପରେ ସେମାନେ କିଛିଦିନ ବେପାର କମେଇଦେଲେ । କିନ୍ତୁ ମାସେ ପରେ ଯେପରି ଚାଲିଥିଲା ତାଠୁଁ ଅଧିକା ବେପାର ହେଲା । ପଚାରିଲେ କହିଲେ, 'ଆମର କେହି କିଛି କରିପାରିବେନି" । ବୋଧହୁଏ ଥାନାରେ ମାସିକିଆ ଚାନ୍ଦା ଫିକ୍ସ ହୋଇଗଲା ।

ଥାନାବାବୁ ବଦଳିଲେ, ନୂଆ ଥାନାବାବୁ ଆସିଲେ । କମ୍ପ୍ଲେନ୍ ଗଲା, ସେ ଆସିଲେ, ଦୋକାନି ଚେକ୍ କଲେ । ସେମାନଙ୍କୁ ଆରେଷ୍ଟ କରି ତିନିଦଫାରେ ଜେଲ୍‌କୁ ପଠାଇଲେ । ସେମାନେ ଜେଲ୍‌ରୁ ବେଲ୍‌ରେ ଆସି ପୁଣି ବେପାର କଲେ ।

ଶେଷରେ ଆମ ଗାଁର ମହିଳାମାନେ ଆଗକୁ ଆସିଲେ । ପାଖ ଗାଁ ଟୋଲକାନୀର ଅଗ୍ରଣୀ ମହିଳାମାନେ ସହଯୋଗ ଦେଲେ । ସମସ୍ତେ ମିଶି ରାଲି କଲେ । ସବୁ ଦୋକାନୀଙ୍କୁ ଧମକାଇଲେ । ମଦ ବନ୍ଦ ନକଲେ ପେଟ୍ରୋଲ ଢାଳି କେବିନ ଓ ଘରପୋଡିଦେବାକୁ ସତର୍କ କରିଦେଲେ । ସେଇ କେତେଦିନ ମଦ ବନ୍ଦ ହେଲା ପୁଣି ଦି'ମାସ ପରେ ଯେଉଁକଥାକୁ ସେଇ କଥା । ବର୍ଷେ ଦି'ବର୍ଷ ପର୍ଯ୍ୟନ୍ତ ନିରବିଚ୍ଛିନ୍ନ ଭାବେ ମାନପୁରରେ ପୁଣି ମଦ୍ୟପୁରର ସିରିଏଲ୍ ଚାଲିଲା । କିଛି ଲୋକେ ଠାକୁରଙ୍କୁ ଡାକିଲେ । ବୋଧେ ଶେଷରେ ସର୍ବନିୟନ୍ତା ଶୁଣିଲେ । ଶେଷରେ ଆମ ମାନପୁର ପୁରୁଣାସାହିର ତିନୋଟି ଯାକ ସ୍ୱୟଂ ସହାୟକ ଗୋଷ୍ଠୀର ମହିଳା ସଦସ୍ୟାମାନେ ଏକାଠି ହେଲେ । ହାତରୁ ଚାନ୍ଦା ଦେଇ ଗାଡ଼ିଭଡା କରି ଥାନାକୁ ଗଲେ, ସେଠାରେ ଏହି ଉତ୍କଟ ସମସ୍ୟା ବିଷୟରେ ଜଣାଇଲେ । ସେଠୁ ସିଧା ଯାଜପୁର ଯାଇ କଲେକ୍ଟର ଓ ଏସ୍.ପିଙ୍କୁ ଦେଖାକଲେ । ସେ ଦୁହେଁ ସବୁକଥା ବୁଝିବା ବୋଲି ଆଶ୍ୱାସନା ଦେଲେ । ଏମାନେ କହିଲେ କିପରି ଲୋକାଲ୍ ପୋଲିସ୍ ମଦ ବିକାଳୀଙ୍କୁ ସାହାଯ୍ୟ କରୁଛି । ଜିଲ୍ଲାର ମୁଖ୍ୟ କହିଲେ ଯେ 'ସବୁ ଠିକ୍ ହୋଇଯିବ' ।

ଆମ ଗାଁର ମହିଳାମାନେ ଚେତାବନୀ ଦେଲେ, "ଯଦି ସାତଦିନ ମଧ୍ୟରେ ମଦ ବନ୍ଦ ନହେବ, ଆମେ ଜିଲ୍ଲାପାଳଙ୍କ ଅଫିସ ଘେରାଉ କରିବୁ । ଏତେଦିନ ହେଲା ଆମେ ଯେତେ କଷ୍ଟ ପାଇଲୁଣି ଆମକୁ ବହୁତ ବାଧିଲାଣି । ଏଣୁ ଦରକାର ପଡିଲେ ଆମେ ନ କରିବା କାମ ବି କରିବୁ ।"

୬୦/୭୦ ଜଣ ରାଗିଲା ମହିଳାଙ୍କ ଦମ୍ଭିଲା କଥାରେ ଜିଲ୍ଲାପାଳ ପ୍ରଭାବିତ ହେଲେ ଏବଂ ମଦ ବନ୍ଦ କରିବାର ନିର୍ଭର ପ୍ରତିଶ୍ରୁତି ସହ ସେମାନଙ୍କୁ ବିଦାୟ ଦେଲେ । ତା'ରି

ଫଳ ସ୍ୱରୂପ ଆଜି ଆମ ଗାଁରୁ ମଦ ହଟିଛି । ଗାଁକୁ ମଟରସାଇକେଲ୍‌ର ଧାଡ଼ି ବନ୍ଦ ହୋଇଛି । ମଝିରେ ମଝିରେ ମଦବେପାରୀ ଓ ତାଙ୍କ ସ୍ତ୍ରୀମାନେ ଗାଁବାଲାଙ୍କୁ ଗାଳିଦେଲେ, ଏଇ ମହିଳାମାନେ ସେମାନଙ୍କୁ ଶୋଧାଶୋଧି କରି ଜବତ କରୁଛନ୍ତି । ଥାନାରୁ ପୋଲିସମାନେ ଆସି ବେଳେବେଳେ ଚେକିଂ କରି ଯାଉଛନ୍ତି ଓ ତାଗିଦ୍ ବି କରୁଛନ୍ତି ।

ପ୍ରକୃତରେ ଆମ ଗାଁର ସଚେତନଶୀଳ ପ୍ରୌଢ଼ମାନେ ଯାହା କରିନପାରିଲେ, ତାହା ଗାଁର ମହିଳାମାନେ କରିଦେଲେ । ମାନପୁରର ମାନସମ୍ମାନ ତ ସେମାନେ । ସେମାନେ ଯେମିତି ଗଢ଼ିବେ, ଏଇ ଗାଁର ପିଲେ ସେମିତି ହେବେ । ସେମାନେ ଜାଗିବାରୁ ତ ଆମ ଗାଁର ରୂପ ଆଜି ବଦଳୁଛି । ସମସ୍ତେ ମିଳିମିଶି ସଜାଗ ରହିଲେ ଏମିତି ସବୁ ସମସ୍ୟା ସମାଧାନ ହୋଇଯିବ ।

ଏଇ କିଛିଦିନ ତଳେ ଆମ ଗାଁରେ ଗଣେଶପୂଜା ହୋଇଥିଲା । ବଡ ଗଣେଶ ମୂର୍ତ୍ତିସାଙ୍ଗକୁ ଭୋଜିଭାତ ଚାଲିଛି । ତା' ସାଙ୍ଗକୁ ଭସାଣୀ ଉତ୍ସବ ସେଥିରେ ଦାମିକା ବାଜାବାଲାଙ୍କ ନାଚ ଗୀତ ଓ ସମୂହ ଶୋଭାଯାତ୍ରା । ଗ୍ରାମ୍ୟ ଜୀବନରେ ଆଉ ଏକ ଉତ୍ସବକୁ ଜନ୍ମ ଦେଇଛି ।

ପୂଜା ପରଦିନ ସନ୍ଧ୍ୟାବେଳେ, ଆମ ଗାଁରେ ଛୋଟପିଲାମାନଙ୍କ ନୃତ୍ୟ ଗୀତ ଓ କୁଇଜ ଚାଲିଥାଏ, ଗାଁର ସ୍ତ୍ରୀପୁରୁଷ, ପିଲାବୁଢ଼ା ସଭିଏଁ ଏହାକୁ ଉପଭୋଗ କରୁଥାନ୍ତି । ନିଜ ଗାଁରେ ପିଲାଙ୍କ କଳା ପ୍ରଦର୍ଶନ ଦେଖିବାକୁ ଟିଭିର ଦୃଶ୍ୟଠାରୁ ବି' ଭଲଲାଗେ । ଯେମିତି ପିଲାବେଳର ଫୁଟବଲ ମ୍ୟାଚ୍‌ରେ ଯୋଗଦାନ ଏବେ ବି' ତ ଆମ ପାଇଁ ସବୁଜ ସତେଜ ସ୍ମୃତି ।

କୁଇଜ୍ ପରିଚାଳନା କରୁଥିବା ପିଲାଟି ମତେ କିଛି କହିବା ପାଇଁ ଅନୁରୋଧ କରିବାରୁ ମୁଁ ତାଙ୍କୁ ମଦ୍ୟପାନର ଉପକାରିତା ସମ୍ପର୍କରେ ପ୍ରଶ୍ନ ପଚାରିବାକୁ କହିଲି । ସେ ସମସ୍ତଙ୍କୁ ପଚାରିଲେ ମଧ୍ୟ କେହି ଉତ୍ତର ଦେଲେନି ।

ତା'ପରେ ମୋ ପାଳି । ମୁଁ ପଚାରିଲି ପିଲାଏ, "ମଦ କେଉଁଥିରୁ ତିଆରି ହୁଏ ?" ବିୟର କିପରି ପଚାପାଳକୁଟାର ନିର୍ଯ୍ୟାସ, ସାକାରିନ ଓ କିଛି କେମିକାଲ ମିଶି ତିଆରିହୁଏ ତାହା ମୁଁ ବୁଝାଇଲି । ପାରାଦୀପରେ ଥିବା ଏକ ବିୟର କାରଖାନା ଦେଖିବାକୁ ଯାଇଥିବା ମୋର ଜଣେ ବନ୍ଧୁଙ୍କୁ କିଭଳି ସେଠାକାର ଷ୍ଟାଫ୍‌ମାନେ ଭିତରକୁ ଯିବାକୁ ବାରଣ କଲେ ତାହା କହିଲି । ବମ୍ବେ, ବାଙ୍ଗାଲୋର, କଲିକତାରେ ସନ୍ଧ୍ୟାହେଲେ କିଭଳି ପଚାଫଳକୁ ଫଳ ଦୋକାନରୁ ସଂଗ୍ରହ କରାଯାଏ ଏବଂ ତା'ର ରସରୁ କିଭଳି ମଦ୍ୟପ୍ରସ୍ତୁତ କରି କମ୍ପାନୀମାନେ ଭଲ ବୋତଲରେ ରଖି ସଭ୍ୟ ଓ ବିଜ୍ଞ ବୋଲାଉଥିବା ମଣିଷମାନଙ୍କୁ ଯୋଗାନ୍ତି ତାହା ବୁଝାଇଲି । ପଚାରିଲି, ପିଲାଏ "ଜରିଭିତରେ ଥିବା ଗୁଟୁକାରେ କଣ

ମିଶେ ଜାଣିଛ କି ?" ସେମାନଙ୍କ ଆଗ୍ରହ ଦେଖି କହିଲି, "ମୁଁ ବହିରୁ ପଢ଼ିଛି, କଡା ହେବା ପାଇଁ ଗୁଟୁକାରେ ଚମ୍ପେଇନୋଳି, ଅସରପା ଓ ଝିଟିପିଟିକୁ ମାରି ଶୁଖାଇ ତା'ର ଗୁଣ୍ଡକୁ ମିଶାଯାଏ" ।

ପଚାରିଲି, "ପିଲାଏ ତୁମେ ବଡହେଲେ କ'ଣ ମଦ ଖାଇବ ?"

ଏକାଥରକେ ୧୫/୨୦ଜଣ ପିଲା କହିଲେ "ନା" ।

ମୁଁ କହିଲି "ଶପଥ କରିବ କି ?"

ସେମାନେ ସମସ୍ୱରରେ କହିଲେ ଆଜ୍ଞା !

ମୁଁ ମାଇକ୍ରୋଫାନ୍ ବଢ଼େଇଦେଲି ।

ଜଣ ଜଣ କରି ୪୦/୫୦ ଜଣ ଶପଥ କଲେ । ନିଜ ନାମ ପ୍ରକାଶ କରି ଶ୍ରୀଗଣେଶଙ୍କୁ ସାକ୍ଷୀ ରଖି ଜୀବନରେ କେବେ ମଦ ଖାଇବେନି ବୋଲି କହିଲେ । ତା'ପରେ ବଡପିଲାଙ୍କ ମଧ୍ୟରୁ ୩/୪ଜଣ ମଧ୍ୟ ଶପଥ ନେଲେ ।

ସମସ୍ତେ ଭାରି ଖୁସି ହୋଇଗଲେ । ଏହାଦେଖି ପାଖରେ ବସିଥିବା ମଦଦୋକାନୀ ଓ କେତେଜଣ ମଦୁଆ ତାଟକା ହୋଇଗଲେ ।

ଏଇ ଛୋଟ ପିଲାଙ୍କ ଶପଥ ନେବାର ଭଙ୍ଗୀରୁ ଲାଗିଲା, ଯେ ଆମ ଗାଁର ଭବିଷ୍ୟତ ବଂଶଧରମାନେ ମାନପୁରକୁ ଏକ ନୂଆରଙ୍ଗରେ ରଙ୍ଗାଇବେ ! ଯେଉଁଠି ଥିବ ଉତ୍ତରଦାୟିତ୍ୱ, କର୍ତ୍ତବ୍ୟବୋଧ, ମାନ୍ୟତା, ସ୍ୱାଭିମାନ ତଥା ମଣିଷପଣିଆର ସତେଜତା । ଲାଗୁଥିଲା ସେମାନେ ବଜାଉଥିଲେ ମଦ୍ୟର ଯୁଗବୀଣା; ଯାହାର ଧ୍ୱନିରେ ମଦ୍ୟପୁରରୁ ମଦ୍ୟଦୂର ହୋଇ ମାନପୁର ଗାଁର ମାନ ପ୍ରତିଷ୍ଠା ହେଉଥିଲା ।

*ମାନପୁର, ପୋ: ଗୋବର୍ଦ୍ଧନପୁର,*
*ଯାଜପୁର - ୭୫୫୦୧୯*
*ମୋ: ୭୭୫୦୮୬୯୫୯୭*

# ମା' ମାଟି ପ୍ରତି ଅନୁରାଗ

ଇଂ ଉଦୟନାଥ ମହାପାତ୍ର (୨୮୧)

ଜଗତର କ୍ରମବିକାଶ, ସଭ୍ୟତାର ପ୍ରଗତି ଭିତରେ ମାଟି ସହ ମଣିଷର ସମ୍ପର୍କ ଠିକ୍ ମାଆ ସହ ନିବିଡ଼ ସମ୍ପର୍କ ଭଳି ରହି ଆସିଛି । ସେଇଥିପାଇଁ କୁହାଯାଉଥିଲା- 'ସେ' ତ ମାଟି ନୁହେଁ ଆମ ମାଆଟି । ଶିଶୁଟିଏ ଭୂମି ଉପରେ ପଡ଼ି କୁଆଁକୁଆଁ ରଡି ଛାଡୁଥିଲା ବେଳେ ମା' ତା ଦେହର ଧୂଳିକୁ ପଣତ କାନିରେ ଝାଡ଼ିଦେଇ କୋଳକୁ ନେଉଥିଲା । ଶିଶୁଟି ବଡ଼ ହେଲାପରେ ବି ସେଇ ଧୂଳି ବୋଳି ହୋଇ କବାଡ଼ି ଖେଳୁଥିଲା ନତୁବା ବୋହୂ ବୋହୂକା ଖେଳ । ବଡ଼ ହେଲାପରେ ମାଟି ସହ ମାଟି ହୋଇ ଚାଷ କରି ନିଜ ପରିବାରକୁ ଚଳଉଥିଲାବେଳେ ଦୁନିଆକୁ ଆହାର ଯୋଗାଉଥିଲା । ଗୁମ୍ଫାରୁ ବାହାରି ମଣିଷ ମାଟିରେ ଘର ତିଆରି ଶିଖିଲା । ଫୁଟେ ଦି'ଫୁଟ ମୋଟେଇର ମାଟି କାନ୍ଥ ଉଠେଇ ତା' ଉପରେ ତାଳ ପତ୍ର ଘୋଡେଇ ପତ୍ର କୁଡ଼ିଆ ନିର୍ମାଣ କଲା । ସମୟ କ୍ରମେ ତାଳପତ୍ର ପରିବର୍ତ୍ତେ ନଡ଼ା-କୁଟାରେ ଚାଳକୁ ଛାଇଲା । ଚାଳ ଛପର ତଳେ ମାଟିର ଆଟୁକଲା । ଏଭଳି ମାଟି ଘରକୁ ସୂର୍ଯ୍ୟଙ୍କ ତାପ ଭେଦୁନଥିଲା ।

ସମୟକୁ ନେଇ ଗୃହ ନିର୍ମାଣରେ ଅନେକ ପରିବର୍ତ୍ତନ ହେଲା । 'ଟାଇଲ ଛପର ଘର-ନିଆଁକୁ ନଥିବ ଡର' ଧ୍ୱନି ସହ ତାଳମିଳାଇ ଚାଳ ଛପର ପରିବର୍ତ୍ତେ ଟାଇଲ୍, ଆଜବେଷ୍ଟସ୍, ଟିଣ ଚାଦର ପରେ ଏବେ ପୁରା ଛାତକୁ କଂକ୍ରିଟ୍ କରାଯାଉଛି । ଛାତ ବଦଳିଲା ଭଳି ମାଟି କାନ୍ଥ, ମାଟି ଚଟାଣ, ମାଟି ମୂଳଦୁଆ ସବୁକିଛି ବଦଳିବାରେ ଲାଗିଛି । ମାଟିଘର ଅସନା ଲାଗୁଛି । ମାଟି-ବଦଳରେ ପଥର ବା ପୋଡ଼ାମାଟି ଇଟାରେ ମୂଳଦୁଆ ଠାରୁ ଛାତ ପର୍ଯ୍ୟନ୍ତ ଗଢ଼ା ହେଉଛି । ଇଟାର ଜନ୍ମ କୁଆଡ଼େ ପାଞ୍ଚ ହଜାର ବର୍ଷ ପୂର୍ବରୁ । ଯଦିଓ ଏବେ କୋଇଲା ପାଉଁଶ (Flying Ash) ନିର୍ମିତ ଇଟାକୁ ଗୃହ ନିର୍ମାଣରେ ବ୍ୟବହାର ଲାଗି ଜୋର ଦିଆଯାଉଛି । ତଥାପି ପୋଡାମାଟିର ଇଟା ତା'ର ପ୍ରାଧାନ୍ୟ ହରାଇ ନହିଁ । କ୍ରମଶଃ ମାଟିରେ ତିଆରି ଘର ସହ ଚାଳଛପର ଛାତ ଅପସରି ଯିବା ପରେ ଏହି ସବୁ ନୂଆଘରେ ନିଆଁର ଡର ରହିଲା ନାହିଁ ସିନା ତାତିଲା ପବନରେ ଲୋକେ ଏବେ ବେଶ୍ ଡହଳ ବିକଳ ହେଉଛନ୍ତି । ଅଥଚ ଚାଳ ଛପର ଥିବା ମାଟିଘର ଅଞ୍ଚଳକୁ ଅବିକଶିତ ଅଞ୍ଚଳ ରୂପେ ଗଣ୍ୟ କରାଯାଉଛି ଏବଂ ପକ୍କାଘର ନିର୍ମାଣ ଲାଗି ସରକାରଙ୍କ ସହାୟତା ବଢ଼ି ବଢ଼ି ଚାଲିଛି । ଫଳରେ ମାଟି ଘର ପ୍ରତି ହତାଦର ବଢୁଛି ।

ଅନ୍ୟପଟରେ ପୋଡ଼ାମାଟି ଇଟାର ଆଦର ବଢି ଚାଲିଛି । ଆଉ ବଢ଼ି ଚାଲିଛି- ମାଟି ମାଆ ଉପରେ ଅତ୍ୟାଚାର । ଯେଉଁ ଉର୍ବର ମାଟିରେ ଫସଲ ହୁଅନ୍ତା ହାଣ୍ଡି ଆଟିକା ଗଢ଼ା ହୁଅନ୍ତା । ସେ ସବୁ ଉର୍ବର ଦୋରସା ମାଟିକୁ ଧରାପୃଷ୍ଠରୁ ବିଦାରି ନେଇ ଇଟା ତିଆରି କରାଯାଉଛି । ଏକ ଆକଳନ ଅନୁସାରେ ଆମ ଦେଶରେ ପ୍ରାୟ ଦଶହଜାର ଇଟା ତିଆରି କାରଖାନା ରହିଛି । ଅନେକ ଦେଶରେ ମାଟିର ଅବକ୍ଷୟକୁ ରୋକିବା ଲାଗି ଇଟା ତିଆରିକୁ ସମ୍ପୂର୍ଣ୍ଣ ନିଷିଦ୍ଧ କରାଯାଇଥିଲାବେଳେ ଆମ ଦେଶର ସରକାର ଏଥିପ୍ରତି ସମ୍ପୂର୍ଣ୍ଣ ବୀତସ୍ପୃହ । ଏହାର କାରଣ ହେଲା- କେନ୍ଦ୍ର ଠାରୁ ରାଜ୍ୟ ସରକାର ପର୍ଯ୍ୟନ୍ତ ସମସ୍ତେ ଇଟା ବେପାରୀଙ୍କ ଦୟାରେ ହିଁ ପରିଚାଳିତ । ତେଣୁ ଏହାକୁ ବନ୍ଦ କରିବ କିଏ ?

ଆଜିକାଲି ବିକାଶ କହିଲେ ରାସ୍ତା ନିର୍ମାଣ, ସମ୍ପ୍ରସାରଣ, କାରଖାନା ସ୍ଥାପନ, ନଦୀ ବନ୍ଧ ବାନ୍ଧି ଜଳ ଭଣ୍ଡାର ନିର୍ମାଣ, ରେଳ ପଥ ନିର୍ମାଣ, ବିଭିନ୍ନ ଜନ କଲ୍ୟାଣକାରୀ ଯୋଜନା ଯଥା ବିଦ୍ୟାଳୟ, ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ, ଡାକ୍ତରଖାନା ଆଦି ସ୍ଥାପନ, ଖଣି ଖନନକୁ ହିଁ ବୁଝାଏ । ଏଥିପାଇଁ ଆବଶ୍ୟକ ହୁଏ ଲକ୍ଷ ଲକ୍ଷ ଏକର ଜମି ଏବଂ ଅଧିକାଂଶ ଜମି ହେଉଛି ଜଙ୍ଗଲ ଓ ଚାଷଜମି । ଖୁବ୍ କମ ପରିମାଣର ପଡ଼ିଆ ଜମି ଏଥିଲାଗି ଆବଶ୍ୟକ ହୁଏ । ଫଳରେ ବିସ୍ଥାପନ କରିବା ଅନିବାର୍ଯ୍ୟ ହୋଇପଡ଼େ । ଯୁଗ ଯୁଗ ଧରି ଗୋଟିଏ ଯାଗାରେ ରହିଥିବା ଲୋକଙ୍କୁ ତାଙ୍କ ଭିଟାମାଟିରୁ ଉତ୍‌ଖାତ କରାହୁଏ । କେବଳ ଭିଟାମାଟି ଲୋପ ପାଏ ନାହିଁ ଚାଷ ଜମି, ସବୁଜ ଘଞ୍ଚ ଜଙ୍ଗଲ ବି ନିଶ୍ଚିହ୍ନ ହୋଇଯାଏ । ସେ ସବୁ ସ୍ଥାନରେ ଗଢ଼ି ଉଠେ କେବଳ କଂକ୍ରିଟ୍ ଜଙ୍ଗଲ । ମାଟି ନିଜର ସତ୍ତା ହରାଏ । ଅନେକ କ୍ଷେତ୍ରରେ ବିସ୍ଥାପନ ଏତେ ସହଜରେ ହୁଏ ନାହିଁ । ମାଟି ମାଆ ପ୍ରତି ଥିବା ମୋହ ମମତାକୁ କାଟିଦେଇ ଲୋକେ ଅନ୍ୟସ୍ଥାନକୁ ଯିବା ପାଇଁ ରାଜି ହୁଅନ୍ତି ନାହିଁ । ପ୍ରତିବାଦ କରନ୍ତି । ପ୍ରତିବାଦ ତୀବ୍ର ହେଲେ ସରକାର ବଳପ୍ରୟୋଗ କରନ୍ତି । କଳିଙ୍ଗନଗର ଗୁଳିକାଣ୍ଡରେ ଲୋକେ ମଲେ । ପାରାଦୀପରେ ପ୍ରତିବାଦ କରି ଅନେକ ଲୋକ ଜେଲ୍ ଗଲେ । ଏଭଳି ପରିସ୍ଥିତି ହେଲା ଯେ ପୋସ୍କୋ ଭଳି ବିରାଟ କମ୍ପାନୀ ୫୨ ହଜାର କୋଟି ଟଙ୍କା ବିନିଯୋଗର ଲୋଭ ଦେଖାଇଥିଲେ ବି ଲୋକେ ସେଥିରେ ଭଳିଗଲେ ନାହିଁ । କମ୍ପାନୀ ନିରାଶ ହୋଇ ଫେରିଗଲା । ବାଲିଆପାଳରେ ବିସ୍ଥାପନ ବିରୋଧୀଙ୍କ ଆନ୍ଦୋଳନ ଫଳରେ କ୍ଷେପଣାସ୍ତ୍ରଘାଟି ହୋଇପାରିଲା ନହିଁ । ସ୍ୱାଧୀନତା ପାଇବା ପରେ ୧୯୪୮ ମସିହାରେ ଓଡ଼ିଶାରେ ପ୍ରଥମ କରି ଏକ ବୃହତ୍ତ ନଦୀବନ୍ଧ ପ୍ରକଳ୍ପ ହିରାକୁଦ ନଦୀବନ୍ଧ ନିର୍ମାଣ ହେବା ଲାଗି ସ୍ଥିର ହେଲା । ଏଠାରେ ବିସ୍ଥାପିତଙ୍କ ପ୍ରତିବାଦ ଏତେ ତୀବ୍ର ଥିଲା ଯେ ୧୯୫୫ ପର୍ଯ୍ୟନ୍ତ ନିର୍ମାଣ ହୋଇପାରିନଥିଲା । ସେହିବର୍ଷ ମଇମାସରେ ପୋଲିସ ୨ଥର ଫ୍ଲାଗ ମାର୍ଚ୍ଚ କଲା । ଭୟରେ ହେଉ ବା ଜୋର ଜବରଦସ୍ତ ଲୋକଙ୍କୁ

ବିସ୍ଥାପିତ କରାଗଲା । ୨ବର୍ଷ ପରେ ବନ୍ଧ କାମ ଶେଷ ହେଲା । କିନ୍ତୁ ଏବେ ସୁଦ୍ଧା ବୁଡ଼ି ଅଞ୍ଚଳର କିଛି ଲୋକେ କ୍ଷତିପୂରଣ ପାଇବା ଲାଗି ଦାବି କରି ଆସୁଛନ୍ତି । ହିରାକୁଦ ବିସ୍ଥାପିତଙ୍କ ଅସନ୍ତୋଷର ତୀବ୍ରତା ୧୯୬୪ ମସିହାର ପ୍ରସ୍ତାବିତ ଟିକରପଡ଼ା ବନ୍ଧ ଅନୁସନ୍ଧାନ ବେଳେ ଅନୁଭୂତ ହୋଇଥିଲା । ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହର ଲାଲ ନେହେରୁ ଶୁଭ ଦେଇଥିଲେ ହେଁ ବୌଦ୍ଧ, ସୁବର୍ଣ୍ଣପୁର, ଆଠମଲ୍ଲିକ ଅଞ୍ଚଳର ଲୋକେ ବିସ୍ଥାପିତ ହେବାର ଆତଙ୍କରେ ଦୁର୍ବାର ଆନ୍ଦୋଳନ କରିବା ଫଳରେ ଯୋଜନା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ସେହି ଠାରୁ ଆଜି ପର୍ଯ୍ୟନ୍ତ ପ୍ରାୟ ୫୨ ବର୍ଷ ବିଶେଷଜ୍ଞ ଠାରୁ ଆରମ୍ଭ କରି ରାଜନେତାଙ୍କ ପର୍ଯ୍ୟନ୍ତ ସମସ୍ତେ ମହାନଦୀରେ ଟିକରପଡ଼ା ସମେତ ଆହୁରି ୨ଟି ବନ୍ଧ ନିର୍ମାଣର ଆବଶ୍ୟକତା ଥିବା କଥା କହିଛନ୍ତି । ହେଲେ ସମ୍ଭାବିତ ବିସ୍ଥାପିତଙ୍କ ରୋଷର ଶିକାର ହେବାକୁ କେହି ସାହସ କରିନାହାନ୍ତି । ଏହାର କାରଣ ହେଉଛି ଯେତିକି ଘର ଓ ଚାଷ ଜମି ବୁଡ଼ିବ ସେତିକି ପରିମାଣର ଉର୍ବର ଜମି, ବାସପୋଯୋଗି ଜମି ବିସ୍ଥାପିତଙ୍କୁ ଯୋଗାଇଦେବା ଆଦୌ ସମ୍ଭବ ନୁହେଁ ।

ବିଶ୍ୱ ଜନସଂଖ୍ୟା ୭ଶହ କୋଟି ଟପିସାରିଛି । ୭୦ବର୍ଷ ତଳେ ଭାରତର ଜନସଂଖ୍ୟା ୩୦ କୋଟି ଥିଲା । ଏବେ ୧୩୦ କୋଟି ହେବାକୁ ଯାଉଛି । ଅନୁରୂପ ଭାବରେ ଓଡ଼ିଶାର ଲୋକସଂଖ୍ୟା ଦେଢ଼କୋଟିରୁ ସାଢ଼େ ୪ କୋଟି ହେଲାଣି । ଏମାନଙ୍କ ରହଣି ଲାଗି ଘର, ପାଠପଢ଼ା ଲାଗି ବିଦ୍ୟାଳୟ, ଚିକିତ୍ସାଳୟ, ରାସ୍ତା ନିର୍ମାଣ ଲାଗି ଜମି ଅଧିକୃତ ହେଉଛି । ଫଳରେ ଜଙ୍ଗଲ ଓ ଚାଷ ଜମି ହ୍ରାସ ପାଇବାରେ ଲାଗିଛି । ଧରାକୁ ଶସ୍ୟ ଶ୍ୟାମଳା କରୁଥିବା ଜମି ଉପର ସ୍ତରର ମୃତ୍ତିକା ଯାହା ୨ରୁ ୮ ଇଞ୍ଚ ବହଳର ହୋଇଥାଏ ତାକୁ ଇଟା ଭାଟିବାଲା ରାମ୍ପି ନେଲେ । ଏଭଳି ଉର୍ବର ମାଟିସ୍ତର ସୃଷ୍ଟି ଲାଗି ଆବଶ୍ୟକ ହୁଏ ହଜାର ହଜାର ବର୍ଷ । ଗୋଟିଏ ପଟେ ଜନସଂଖ୍ୟା ପାଟି ଗଣିତ ଧାରାରେ ବଢୁଥିଲାବେଳେ ସେମାନଙ୍କ ନିମନ୍ତେ ଖାଦ୍ୟ ଯୋଗାଉଥିବା ଉର୍ବର ମାଟିଥିବା ଜମି କମିବାରେ ଲାଗିଛି । ଫଳରେ ଯେଉଁ ହାରରେ ଜନସଂଖ୍ୟା ବୃଦ୍ଧି ପାଉଛି ଖାଦ୍ୟାଭାବରେ ଠିକ୍ ସେହି ହାରରେ ଅନାହାର ମୃତ୍ୟୁ ଘଟିବା ସ୍ୱାଭାବିକ ।

ଦିନେ କଟକରୁ ଭୁବନେଶ୍ୱର ଫେରିବା ବେଳେ ଦିନ ୨ଟାରେ ରାସ୍ତାକଡ଼ ହୋଟେଲ୍ ନିକଟରେ ମଟର ସାଇକେଲ୍, କାର ପ୍ରବଳ ଭିଡ଼ ଦେଖିଲି । ହୋଟେଲଟି ଆଦୌ ଆଭିଜାତ୍ୟ ସମ୍ପନ୍ନ ନୁହେଁ । ଝୁଲୁଥିବା ବୋର୍ଡଟି ଦେଖିଲି । ମାଟି ହାଣ୍ଡିରେ ପ୍ରସ୍ତୁତ ଖାଦ୍ୟର ତାଲିକା । ଆଗରୁ କେବଳ ମାଟି ହାଣ୍ଡିରେ ପ୍ରସ୍ତୁତ ମାଂସ ମିଳୁଥିବା କଥା ଉଲ୍ଲେଖ ଥିଲାବେଳେ ଏବେ ସେହି ତାଲିକାରେ ଯୋଗ ହୋଇଛି- ମାଛ ତରକାରୀ, ଡାଲମା, ଛିଞ୍ଚଡା, ଭେଜିଟେବୁଲ୍ ପଲାଉ । ବୁଝିବାରେ କିଛି ଅସୁବିଧା ହେଲା ନାହିଁ ଯେ ମାଟି

ହାଣ୍ଡିରେ ପ୍ରସ୍ତୁତ ଖାଦ୍ୟର ବାସ୍ନା ହିଁ ଆକର୍ଷିତ କରିଛି- ଆଭିଜାତ୍ୟ ସମ୍ପନ୍ନ ବ୍ୟକ୍ତିମାନଙ୍କୁ । ଆଗକୁ ଆଗଉଥିଲାବେଳେ ମୋର ମନେ ପଡୁଥିଲା ୭୦ବର୍ଷ ତଳର କଥା । ମାଟି ହାଣ୍ଡିରେ ପଳାଏ ତେଲ ପକେଇ ଫୁଟଣରେ ଡାଲି ବଘାରିଲା ବେଳର ବାସ୍ନାରେ ମୁଁ ମୋହିତ ହେଉଥିଲି । ପୁଣି ମନେ ପଡ଼ିଲା ଗାଁ ଠାକୁରାଣୀଙ୍କ ମାଳେଣା କଥା । ପିଲାବେଳେ ଦେଖିଛି ମାଜେଣା ଲାଗି କୋଠ ପୋଖରୀରୁ ଶଗଡ଼ଗାଡ଼ିରେ ଗୋଟାଏ ଗୁଦ୍ରରେ ମାଛ ଧରା ହୋଇ ଆସେ । ଦିନ ୧୨ଟା ବେଳୁ ୬-୭ ଜଣ ସେବାୟତ ମାଛ କାଟନ୍ତି । ଗାଣ୍ଡୁଆରେ କଟାମାଛ ଯାଇ ପୋଖରୀରେ ଧୁଆ ହୋଇ ଆସିଲାପରେ ରୋଷଶାଳରେ ପ୍ରସ୍ତୁତି କାର୍ଯ୍ୟ ଆରମ୍ଭ ହୋଇଥାଏ । ସମସ୍ୟା ଦେଖାଦିଏ ମାଛ ତରକାରୀ ଲାଗି ଆବଶ୍ୟକ ପିତଳ ହଣ୍ଡାକୁ ନେଇ । ଆଜିଭଳି ସେତେବେଳେ ଟେଣ୍ଟ ହାଉସ୍‌ରୁ ଆଲ୍‌ମୁନିୟମ ବିରାଟ ଟବ୍ ଆସୁନଥିଲା । ଗାଁ ଲୋକଙ୍କ ପାଖରେ ହଣ୍ଡା ଥିଲେ ବି ଆମିଷ ରୋଷେଇ ଲାଗି ନଦେବା ଲାଗି ମିଛ ବାହାନା କରନ୍ତି । ହେଲେ ପାଖ ପଡ଼ୋଶୀ ଗାଁରେ ମାଗିଲେ ଠାକୁରାଣୀଙ୍କ କାମ ଲାଗି ଆଗ୍ରହରେ ବାହାର କରିଦିଅନ୍ତି । ଠାକୁରାଣୀ ମାଜେଣା ପ୍ରସାଦ ସେବନ ଲାଗି ପାଖ ଗାଁର ସମସ୍ତଙ୍କୁ ନିମନ୍ତ୍ରଣ କରାଯାଉଥିଲା । ଗାଁର ପୁରୁଖା ଲୋକଙ୍କୁ ପଚାରେ ଏବେ ଲୋକଙ୍କ ଅବସ୍ଥା ସୁଧୁରିବା ପରେ କିଛି ଲୋକ ପିତଳ ହଣ୍ଡା କିଣିଲେଣି ହେଲେ ଆଗରୁ ତ ଗାଁରେ ଗୋଟାଏ ଦି'ଟା ହଣ୍ଡା ମିଳୁନଥିବ । ଏତେ ମାଛ ରୋଷେଇ ହେଉଥିଲା କିପରି ? ସେମାନେ କହୁଥିଲେ ଆଗରୁ ମାଜେଣା ପୂର୍ବରୁ କୁମ୍ଭାର ୮-୧୦ଟି ମାଟି ହାଣ୍ଡି ଆଣି ଦେଉଥିଲା । ସେ ହାଣ୍ଡି ସବୁ ଧାନ ଉଷୁଆଁ ହାଣ୍ଡି ଠାରୁ ବି ବଡ଼ ଥିଲା । ସେଥିଲାଗି ସେ କୋଠରୁ ପାଉଣା ପାଏ । ସେତେବେଳେ ମାଟି ହାଣ୍ଡିରେ ମାଛ ତରକାରୀ ରାନ୍ଧିବା କଥା ଶୁଣି ମତେ ଆଶ୍ଚର୍ଯ୍ୟ ଲାଗୁଥିଲା । ଆହୁରି ଆଶ୍ଚର୍ଯ୍ୟ ଲାଗେ ଗୁଦ୍ରେ ପରିମାଣର ମାଛ ତରକାରୀ ଲାଗି ଲୋଡ଼ା ହେଉଥିଲା- ମାତ୍ର ୩, ୪ ସେର ପେଷୁ ତେଲ । ଠାକୁରାଣୀଙ୍କ ଭୋଗରେ ପିଆଜ, ରସୁଣ ପଡ଼େ ନାହିଁ । ଗୋଟାଏ ଗୋଟାଏ ମାଟି ହାଣ୍ଡିରେ ୨ ବେଲା ସୋରିଷ ବଟା ଦିଆଯାଏ । ଆଜି ଭଳି ବହୁବିଧ ମସଲାତ ବ୍ୟବହାର ହେଉନଥିଲା । ବଡ଼ ଆଚମ୍ବିତ କଥାଟି ଥିଲା- ସୋରିଷ ତେଲ ଆଦୌ ବ୍ୟବହାର ହେଉନଥିଲା । ସେଇ ମାଛ ତରକାରୀ ଖାଇ ସେତେବେଳେର ଲୋକେ ଖୁବ୍ ପ୍ରଶଂସା କରୁଥିଲେ । କାରଣ ପଚାରିଲେ କହନ୍ତି- ସବୁ ସେଇ କୋଠ ପୋଖରୀ ମାଟିର କରାମତି । ସେ ପୋଖରୀର ମାଟିରେ ବଢ଼ିଥିବା ଶେଉଳ, ବାଳିଆ, ମାଗୁର, ଗଗୁଆ ଆଦି ମାଛ ବେଶ୍ ଚିକ୍କଣ ଓ ସ୍ୱାଦିଷ୍ଟ ଥିଲା । ଏବେ ବି ସେ ପୋଖରୀ ଅଛି । ପ୍ରତିବର୍ଷ ମାଜେଣା ବେଳକୁ ଧରାହେଉଛି । ମାତ୍ର ୪୦ରୁ ୫୦ କିଲୋ ମାଛ । କୁହାଯାଉଛି - ରାସାୟନିକ ସାର ଯୋଗୁଁ ମାଟି ଖରାପ ହୋଇଯାଇଛି । ସୁଆଦିଆ ମାଛ ସତେ ଯେପରି ଉଭେଇଗଲେ । ଉଭେଇଯାଇଛି ମାଟି ହାଣ୍ଡି- ପେଷୁ

ତେଲ । ବ୍ୟବହାର ହେଉନାହିଁ ବଟା ମସଲା । ଦାମୀ କମ୍ପାନୀର ଭଳିକି ଭଳି ମସଲା ଗୁଣ୍ଡରେ ତରକାରୀ ହେଉଛି । ସେତେବେଳର ନାମକୁ ମାତ୍ର ପେଷ୍ଟୁ ତେଲ ବ୍ୟବହାର ସ୍ଥାନରେ ଲିଟର ଲିଟର ସୋରିଷ ତେଲ ଢ଼ଳାହେଉଛି । ଜଣେ ଅଧେ ପୁରୁଣା ଲୋକଙ୍କ ମୁହଁ ସେଇ କଥାଟି ଘୋଷି ହେଉଛନ୍ତି- ଯେତେ ତେଲ ମସଲା ଢ଼ାଳିଲେ କ'ଣ ହେବ- ମାଟି ହାଣ୍ଡିରେ ରନ୍ଧା ମାଛବେସରର ସୁଆଦ ଆଉ ମିଳିବ ନାହିଁ । ସେଇ ମାଟିହାଣ୍ଡିର ରାନ୍ଧଣାର ମଜା ନେବା ପାଇଁ ବୋଧହୁଏ ସେଦିନ ରାସ୍ତାକଡ଼ ହୋଟେଲରେ ଏତେ ଭିଡ଼ ଜମିଥିଲା ।

ମୋ ମନରେ ପ୍ରଶ୍ନପରେ ପ୍ରଶ୍ନ ଉଙ୍କି ମାରୁଥିଲା । ସତରେ କ'ଣ ମାଟିମାଆ ପ୍ରତି ଆଦର ଲୋକଙ୍କୁ ପଛକୁ ଫେରେଇ ନେଇଛି ? ଠିଆ ହୋଇ ଗ୍ୟାସ୍‌ରେ ରୋଷେଇ କରୁଥିବା ଲୋକେ ଗ୍ୟାସ୍ ଚୁଲାରେ ମାଟିହାଣ୍ଡି ବସେଇ ରୋଷେଇ କରିବେ କିପରି ? ପୁଣି କ'ଣ ମାଟିରେ ଚୁଲ୍ଲୀ ତିଆରି ହେବ ? ନା, ଏହା କିଛି ବି ସମ୍ଭବ ନୁହେଁ । ଜଗନ୍ନାଥଙ୍କ ବଡ଼ ଦେଉଳରେ ଅଭଡ଼ା ଲାଗି ମାଟି କୁଡିଆର ଅଭାବ ବଢ଼ିଚାଲିଛି । ତା'ର କାରଣ ମାଟିର ଅଭାବ । ବହୁ ଦୂରରୁ ମାଟି ଆଣି କୁଡୁଆ ଗଢ଼ିବାରେ ବହୁ ଅଧିକ ଖର୍ଚ୍ଚ ହେଉଛି । ଫଳରେ ଅଭଡ଼ାର ଦାମ୍ ଆକାଶଛୁଆଁ । ଭକ୍ତମାନେ କେବଳ କଣିଟାଏ ପ୍ରସାଦ ନେଇ ମୁଣ୍ଡରେ ଛୁଆଁଇବେ ସିନା ପୂରା ପ୍ରସାଦ ସେବନ ଲାଗି ଆଗ୍ରହୀ ହେବେ ନାହିଁ । ଧରାପୃଷ୍ଠରୁ ମାଟି ଉଭାନ ହେଉଥିଲାବେଳେ ମାଟିହାଣ୍ଡି ରାନ୍ଧଣାର ମହକ ବି ଉଭେଇଯିବ । ଯେଉଁ ମାଟିକୁ 'ମାଟି ନୁହେଁ- ସେତ ଆମ ମାଆ'ଟି' କହୁଥିଲୁ- ସତରେ ତା'ର ଅବସ୍ଥା ଆଜି କେତେ ଦୟନୀୟ ।

ଏକଥା ସତ୍ୟ ଯେ ପ୍ରଗତିର ଧାରାକୁ ରୋକି ହେବ ନାହିଁ । କିନ୍ତୁ ପ୍ରଗତି ସହ ମାଟି ମାଆ ପ୍ରତି ଅନୁରାଗ କିପରି ସୁରକ୍ଷିତ ରହିବ; ସେ ଚିନ୍ତା କରିବା ଆବଶ୍ୟକ ।

*ପ୍ଲଟ୍ ନଂ-୫୪୨, ଭୋଇସାହି,*

*ନୟାପଲ୍ଲୀ, ଭୁବନେଶ୍ୱର-୧୨*

# ପୂଜା ପର୍ବ

ପ୍ରମୋଦା ଦାସ (୪୪୫)

ନାତି କଲେଜରୁ ଫେରି କହିଲା "ମାଆ- ଆଜି ଆମ କଲେଜ ଆଗରେ ଗୋଟିଏ ମେଢ଼ ବିସର୍ଜନ ହେବାକୁ ଗଲେ- ଥାର୍ଡ ଜେଣ୍ଡରମାନେ ନାଚୁଥିଲେ-

ହଁ ଗଣେଶ ମେଢ଼ ହୋଇଥିବ ।

ନାଁ- ସେ ଗଣେଶ ନୁହଁନ୍ତି । ସେ ଜଣେ ଲେଡ଼ି ଠାକୁର । ବାଘ ଉପରେ ବସିଛନ୍ତି । କାଖରେ ଗୋଟିଏ ଛୁଆ କାଖେଇଛନ୍ତି ।

ହଁ ତାହାହେଲେ ଖୁଦୁରୁକୁଣୀ ହୋଇଥିବେ ।

ସେ ମାଆ ମଙ୍ଗଳା ।

ନାତିର କଥା ଶୁଣି ସମସ୍ତେ ହସିଲୁ । ଆମର ଓଡ଼ିଆ ଘର । ଝିଅମାନେ ଥିଲାବେଳେ 'ଖୁଦୁରୁକୁଣୀ' ଠାକୁରାଣୀ ଘରେ ପୂଜା ପାଉଥିଲେ । ସେମାନେ ବାହାହୋଇ ଯିବାପରେ ଘରେ ଆଉ ସେ ପୂଜା ହେଉନାହିଁ । ଘରେ ପୂଜା ନହେଲେ ବି ପଡ଼ିଶା ଘରକୁ ପୂଜା ପାଇଁ ଭୋଗ ଯାଏ । ଟିକେ ଭାବିଲେ ଜାଣିବା-ପିଲାମାନେ ଆଜିକାଲି ପୂଜା ପାଠ କ'ଣ ଜାଣୁନାହାନ୍ତି । ଯେଉଁମାନଙ୍କ ଘରେ ଜେଜେମାଆ, ଆଈ ଅଛନ୍ତି-ସେମାନଙ୍କ ଘରେ କିଛି ପୂଜା ହେଉଛି । ଅଧିକାଂଶ ଆଧୁନିକ ମାଆମାନେ ପୂଜା ପାଠ ଠାରୁ ଦୂରରେ । ଏଣୁ ପିଲାମାନଙ୍କ ଉପରେ କିଛି ପ୍ରଭାବ ପଡୁନାହିଁ । ପୂଜା ପାଠର ସରଳୀକରଣ ହୋଇଗଲାଣି । ଅନେକ ପୂଜା ଲୋପ ପାଇଲାଣି । ଯୁଗ ସହିତ ସବୁ ଜିନିଷ ବଦଳି ଯାଉଛି । ପାଠପଢ଼ା, ଘରକାର୍ଯ୍ୟ ଓ ଚାକିରୀ ଆଳରେ ପୂଜାପର୍ବ ଫିକା ପଡ଼ିଯାଉଛି । ମାତ୍ର ପୂଜାପର୍ବ ବନ୍ଦ କରିବା ଉଚିତ୍ ନୁହେଁ । ଏହା ସମସ୍ତଙ୍କ ମନରେ ଈଶ୍ୱର ବିଶ୍ୱାସ ଜାଗ୍ରତ କରାଏ । ବିଜ୍ଞାନ ଯେତେ ଆଗେଇଲେବି ଈଶ୍ୱରତ ଅଛନ୍ତି । ଜଣେ ଡାକ୍ତର ରୋଗୀକୁ ଅପରେସନ କରିବା ଆଗରୁ ତା' ଛୁରୀକୁ ନମସ୍କାର କରି ରୋଗୀ ଦେହରେ ଲଗାଇଥାଏ । ପୂଜାପର୍ବ ଈଶ୍ୱର ବିଶ୍ୱାସ ଜଣାଇବାର ଏକ ମାଧ୍ୟମ । ଗଳ୍ପ ଛଳରେ ପିଲାମାନଙ୍କୁ ଭଲକଥା ଶିଖାଯାଏ । ଆଜିକାଲି ଗଳ୍ପ ପଢ଼ିବାକୁ ବା ଶୁଣିବାକୁ ପିଲାମାନଙ୍କର ବେଳ କାହିଁ ? ପାଠପଢ଼ାରୁ ଫୁର୍‌ସତ୍ ମିଳିଲେ ଟି.ଭି. କମ୍ପ୍ୟୁଟର, ହ୍ୱାଟ୍‌ସ୍‌ଆପ୍ ଓ ଫୋନ୍‌ରେ ସମୟ ବିତାଇବାକୁ ଭଲ ପାଉଛନ୍ତି । ଆଈ ଓ ଜେଜେ ମାଆମାନଙ୍କ ପାଖରୁ ସେ ପୁରୁଣା ପରୀରାଇଜର କାହାଣୀ ଶୁଣିବାକୁ ଆଉ ଆଗ୍ରହ ପ୍ରକାଶ କରୁନାହାନ୍ତି ।

ସମସ୍ତଙ୍କ ମନରେ ଈଶ୍ୱର ବିଶ୍ୱାସ ରହିବା ଉଚିତ୍ । ତା' ଦ୍ୱାରା ମଣିଷ ଭଦ୍ର, ନମ୍ର, ବିନୟୀ, ନିରହଙ୍କାରୀ ହୋଇଥାଏ । ଈଶ୍ୱର ଭାବାପନ୍ନ ହେଲେ ମନରେ ଭୟ ଜାଗ୍ରତ ହୁଏନାହିଁ । ତେଣୁ କର୍ତ୍ତବ୍ୟ କରିବାକୁ ପ୍ରେରଣା ମିଳେ ।

ପୂଜାପର୍ବ ପାଳନ ଅନେକ ଗଳ୍ପ ଓ କବିତା ମାଧ୍ୟମରେ ହୋଇଥାଏ । ଏଥିରୁ ଅନେକ ଶିକ୍ଷା ମିଳିଥାଏ । ଆମଘରେ ଯଦି ଖୁଦୁରୁକୁଣୀ ବା ଭାଲୁକୁଣୀ ଓଷା ହେଉଥାନ୍ତା 'ନାତି' ଠାକୁରାଣୀଙ୍କୁ ଦେଖିଥାଆନ୍ତା । ଚିହ୍ନିଥାନ୍ତା । ତଥପୋଇ ଓଷା ବହିଶୁଣି ତା'ର ଠାକୁର ବିଶ୍ୱାସ ହୋଇଥାଆନ୍ତା । ତଅପୋଇ କାହାଣୀରେ ଭାଇ ଭଉଣୀ ମଧ୍ୟରେ ସ୍ନେହ ରହିଛି । ଅତୀତରେ ସାଧବ ପୁଅମାନେ କେମିତି ସାତ ଦରିଆ ତେର ନଇ ପାର ହୋଇ ବଣିଜ କରିବାକୁ ଯାଉଥିଲେ ଓ ବଣିଜ କରି ଫେରିଲାବେଳକୁ ହୀରା, ନୀଳା, ମୋତି, ମାଣିକ ଆଣୁଥିଲେ ତାହା ଜାଣିଥାଆନ୍ତା । ଅନ୍ୟ ସବୁ ପୂଜାପର୍ବର ଶିକ୍ଷଣୀୟ ବିଷୟ ଓ ନୀତି କଥା ଆଦି ମଣିଷକୁ ଉତ୍ତମ ମାର୍ଗରେ ପରିଚାଳିତ କରିଥାଏ । ତେଣୁ ଆଧୁନିକ ମାଆମାନେ ଏଥିରୁ ଦୂରେଇଯିବା ଉଚିତ୍ ନୁହେଁ । ପାଠପଢ଼ା ମୋଟା ଅର୍ଥ ଉପାର୍ଜନ ଜୀବନର ଲକ୍ଷ୍ୟ ନହେଉ । ଭଲ ମଣିଷଟିଏ ଗଢ଼ିବା ଜୀବନର ଲକ୍ଷ୍ୟ ହେଉ । ଆମର ଜଗନ୍ନାଥ ଦେଶ । ଆମର ବାର ମାସରେ ତେର ପର୍ବ । ଆମେ ଏଥିରୁ ଦୂରେଇ ଯିବା କିପରି ?

*ମାର୍ଫତ -ଇଂ. ଆର୍.ପି. ଦାସ,*
*ଦେଉଳସାହି, କଟକ-୮*
*ଫୋନ୍-୯୯୩୭୭୭୮୩୦୦*

# ବାନରୀର ଆତ୍ମବଳି

ମହୀମୋହନ ତ୍ରିପାଠୀ (୭୩)

ଏହା ହେଉଛି ୧୯୬୯ ମସିହାରେ ଅନୁଷ୍ଠିତ ନବକଳେବର ସମୟର ଏକ ଚମକପ୍ରଦ ଘଟଣା । ସେଥର 'ବ୍ରହ୍ମ ପରିବର୍ତ୍ତନ' ନୀତି ଯଥାବିଧି ପାଳିତ ହେଲା । ପରମ୍ପରା ଅନୁଯାୟୀ ପୁରାତନ ବିଗ୍ରହମାନଙ୍କୁ କୋଇଲି ବୈକୁଣ୍ଠ ପରିସରରେ ଶିମୂଳୀଲତା ତଳେ ପାତାଳି କରାଯାଇଥିଲା । ପରେ ପରେ ଗୋଟିଏ ବାନରୀ ତା'ର ଛୁଆ ସହିତ ସେଠାରେ ପହଞ୍ଚିଲା । ବାନରୀ ଦୁଇତିନିଥର ସମାଧି ସ୍ଥଳ ଉପରେ ଘୂରି ଘୂରି ସେଠାରେ ବସିରହିଲା । ମହାପ୍ରଭୁ ଜଗନ୍ନାଥଙ୍କ ପୁରାତନ ବ୍ରିଗହ ଯେଉଁଠି ପାତାଳି ହୋଇଥିଲେ, ଠିକ୍ ସେହି ସ୍ଥାନରେ ସେ ବସିରହିଲା । ସେ ହଲଚଲ ହେଲା ନାହିଁ, କିମ୍ବା କିଛି ଆହାର କଲା ନାହିଁ । ଦିନକ ପରେ ତା'ର ଶିଶୁଟି ମା' କୋଳ ଛାଡ଼ି ବୁଲିବାକୁ ଲାଗିଲା । ବାନରୀ କିନ୍ତୁ ତା'ର ପିଲା ପ୍ରତି ଦୃଷ୍ଟି ନଦେଇ ସେଠାରେ ମୃତବତ୍ ପଡ଼ିରହିଲା । ତୃତୀୟ ଦିନ ସନ୍ଧ୍ୟା ପୂର୍ବରୁ ସେ ମୁମୂର୍ଷୁ ଅବସ୍ଥାରେ ନିଜ ଦେହକୁ ଘୂରାଇ ଘୂରାଇ ମହାପ୍ରଭୁଙ୍କ ସ୍ଥାନରେ ସିଧା ଦୁଇହାତ ମୁଣ୍ଡରେ ଲଗାଇ ପ୍ରାଣତ୍ୟାଗ କରିଥିଲା ।

*ଏମ୍.ଏ/୨, ବ୍ରିଟ୍ କଲୋନୀ,*
*ନୟାପଲ୍ଲୀ, ଭୁବନେଶ୍ୱର-୧୨*

# ଭାରତରତ୍ନ ଅଟଳ ବିହାରୀ ବାଜପେୟୀ

ଅରବିନ୍ଦ ତ୍ରିପାଠୀ (୫୭୩)

ଯେଉଁ କେତେଜଣ ମହାମାନବ ସ୍ୱକର୍ମ, ଆଚରଣ, ନେତୃତ୍ୱ, ଦେଶ ସେବା ଦ୍ୱାରା ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି ତଥା ସମସ୍ତ ବର୍ଗର ଜନସାଧାରଣଙ୍କ ଭିତରେ ନୂଆ ଆଶା ସୃଷ୍ଟି କରିପାରିଛନ୍ତି ସେହିପରି ଏକାଧାରାରେ ଜଣେ ସୁସାହିତ୍ୟିକ, ଦରଦୀ କବି, ବରିଷ୍ଠ ସାମ୍ବାଦିକ, ସଂଗଠକ, ସମ୍ପାଦକ, ରାଜନୈତିକ ବ୍ୟକ୍ତିତ୍ୱ ତଥା ଭାରତ ରାଜନୀତିର ଭୀଷ୍ମ ପିତାମହ, ହେଉଛନ୍ତି ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳବିହାରୀ ବାଜପେୟୀ । ସେ ଜଣେ ବିବାଦ ବିହୀନ ବ୍ୟକ୍ତିତ୍ୱର ଅଧିକାରୀ ଯାହାଙ୍କର କେହି ପ୍ରାୟ ବଇରୀ ନଥିଲେ । ବରଂ ସମସ୍ତେ ତାଙ୍କୁ ଶ୍ରଦ୍ଧା, ସମ୍ମାନ କରିଥାନ୍ତି । ଗତ ୨୭.୦୩.୨୦୧୫ ତାରିଖରେ ଭାରତର ମହାମହିମ ରାଷ୍ଟ୍ରପତି ପ୍ରଣବ ମୁଖାର୍ଜୀ ସମସ୍ତ ପ୍ରୋଟୋକଲ ଭାଙ୍ଗି ଅଟଳ ବିହାରୀଙ୍କ ବାସଭବନକୁ ଯାଇ ତାଙ୍କୁ ଭାରତରତ୍ନ ଉପାଧିରେ ସମ୍ମାନିତ କରିଥିଲେ ।

**ଜନ୍ମ ଓ ବାଲ୍ୟଶିକ୍ଷା-**

୧୯୨୪ ମସିହା ଡିସେମ୍ବର ୨୫ ତାରିଖରେ ମଧ୍ୟପ୍ରଦେଶର ଗୋଆଲିଅର ଠାରେ ପିତା କୃଷ୍ଣ ବିହାରୀ ବାଜପେୟୀ ଓ ମାତା କୃଷ୍ଣାବିହାରୀଙ୍କ ଔରସରୁ ଅଟଳ ଭୂମିଷ୍ଠ ହୁଅନ୍ତି । ପିତା ଅଧ୍ୟାପନା କରିବା ସହିତ କାବ୍ୟ ରଚନାରେ ରତ ରହୁଥିଲେ । ମାତା ସୁଗୃହିଣୀ ହେବା ସହିତ କାବ୍ୟ କବିତାରେ ଗଭୀର ରୁଚି ରଖୁଥିଲେ । ତୁଳସୀ ଦୁଇପତ୍ରରୁ ବାସିଲା ପରି ଅଟଳ ବିହାରୀଙ୍କ ସୁଗୁଣ ସବୁ ପିଲାଟି ଦିନରୁ ଜଣାପଡିଥିଲା । । ପ୍ରାଥମିକ ଶିକ୍ଷାପରେ ଅଟଳ ଗୋୟାଲିୟରର ଭିକ୍ଟୋରିଆ କଲିଜିଏଟ୍ ସ୍କୁଲରେ ନାମ ଲେଖାଇଥିଲେ । ଏହା ପରେ ଭିକ୍ଟୋରିଆ କଲେଜରେ ପାଠ ପଢ଼ିଲେ । ପାଠ ପଢ଼ା ସହିତ କବିତା ଲେଖିବା, ଲୋକମାନଙ୍କର ସୁବିଧା ଅସୁବିଧା ସମୟରେ ଠିଆ ହେବାକୁ ସେ ଭଲ ପାଉଥିଲେ ।

**ମହାବିଦ୍ୟାଳୟ ଶିକ୍ଷା-**

ବି.ଏ. ପାସ୍ କଲା ପରେ ଅଟଳ ରାଜନୀତି ବିଜ୍ଞାନରେ ମାଷ୍ଟର ଡିଗ୍ରୀ କରିବା ପାଇଁ କାନପୁର ଗଲେ । ସେଠାରେ ଡି.ଏ.ଭି. କଲେଜରେ ନାମ ଲେଖାଇଲେ । ମାଷ୍ଟର ଡିଗ୍ରୀ ହାସଲ କଲାପରେ ଜଣେ ଅଧ୍ୟାପକ ହିସାବରେ ରହିବାକୁ ତାଙ୍କର ପ୍ରବଳ ଇଚ୍ଛା ହେଉଥିଲା । ମାତ୍ର ବିଧିର ବିଧାନ ଥିଲା ଅନ୍ୟପ୍ରକାରର । ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘରେ ଯୋଗଦାନ କରି ଦେଶ ମାତୃକାର ସେବା କରିବା ପାଇଁ ସେ ମନ ବଳାଇଲେ । ଏହି

ସଂଗଠନରେ ସେ ସକ୍ରିୟ ହେବା ସହିତ ଧୀରେ ଧୀରେ ନିଜର ବୁଦ୍ଧି, ଜ୍ଞାନ ବଳରେ ସୁନାମ ଅର୍ଜନ କରିଥିଲେ । ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇ ୨୪ ଦିନ ଜେଲ ଦଣ୍ଡ ଭୋଗ କରିଥିଲେ । ଜେଲ୍‌ରୁ ଫେରି ସଂଘର ପ୍ରଚାରକ ଭାବରେ କାର୍ଯ୍ୟକଲେ ।

**ଖବରକାଗଜରେ ଯୋଗଦାନ-**

ଲକ୍ଷ୍ନୌରୁ ପ୍ରକାଶ ପାଉଥିବା ରାଷ୍ଟ୍ରଧର୍ମ ପତ୍ରିକାର ପ୍ରଥମ ସମ୍ପାଦକ ଭାବରେ ନିଯୁକ୍ତି ପାଇ ନିଜର ଅନ୍ତର୍ନିହିତ ଗୁଣ ବଳରେ ଏହାକୁ ବିକଶିତ କରାଇଥିଲେ । ସେଠାରୁ କାଶୀ ଯାଇ ସେ 'ଚେତନା' ନାମକ ଆଉ ଏକ ସାପ୍ତାହିକୀ ପତ୍ରିକାର ସମ୍ପାଦକ ଦାୟିତ୍ୱ ଗ୍ରହଣ କଲେ । 'ପାଞ୍ଚଜନ୍ୟ' ପତ୍ରିକାର ମଧ୍ୟ ଉଲ୍ଲେଖନୀୟ ଦାୟିତ୍ୱ ତୁଲାଇଥିଲେ ।

**ରାଜନୀତିକ ଘଟଣା-**

ଅଟଳ ବିହାରୀ କେତେଜଣ ପ୍ରମୁଖ ନେତାଙ୍କ ସହିତ ଜନସଂଘ ନାମକ ଗୋଟିଏ ରାଜନୈତିକ ଦଳରେ ଯୋଗଦେଲେ । ପରେ ଏ ଦଳରେ ବହୁ ସଭ୍ୟ ସାମିଲ୍ ହୋଇଥିଲେ । ୧୯୫୫ ମସିହାରେ ପ୍ରଥମ କରି ନିର୍ବାଚନରେ ଭାଗନେଇଥିଲେ ଏବଂ ବିଜୟଲକ୍ଷ୍ମୀ ପଣ୍ଡିତଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ପରାଜିତ ହୋଇଥିଲେ ମଧ୍ୟ ୧୯୫୭ ମସିହାରେ ବଲରାମପୁର ଲୋକସଭା ଆସନରୁ ପ୍ରଥମଥର ବିଜୟୀ ହୋଇଥିଲେ । ୧୯୬୨ ମସିହାରେ ରାଜ୍ୟ ସଭାର ସଦସ୍ୟ ଭାବରେ ମନୋନୀତ ହେଲେ । ୧୯୬୭ ମସିହାରେ ପୁଣି ଥରେ ଲୋକସଭାକୁ ନିର୍ବାଚିତ ହୋଇଆସିଲେ । ୧୯୬୮ ମସିହାରୁ ୧୯୭୩ ମସିହା ପର୍ଯ୍ୟନ୍ତ ଭାରତୀୟ ଜନସଂଘ ଦଳର ଅଧ୍ୟକ୍ଷ ଭାବରେ ମନୋନୀତ ହୋଇଥିଲେ । ସେ ୧୯୭୫ ମସିହାରେ ଜାତୀୟ ଜରୁରୀ ପରିସ୍ଥିତି ସମୟରେ ବିନା କାରଣରେ ୧୯ ମାସ କାଳ ଜେଲ ଦଣ୍ଡାଦେଶ କାଟିଥିଲେ । ୧୯୭୭ ମସିହାରେ ମୋରାରଜୀ ଦେଶାଇଙ୍କ ମନ୍ତ୍ରୀମଣ୍ଡଳରେ ବୈଦେଶିକ ମନ୍ତ୍ରୀ ଭାବରେ ସାମିଲ୍ ହୋଇଥିଲେ । ସେହିବର୍ଷ ଜାତିସଂଘରେ ହିନ୍ଦୀ ଭାଷଣ ଦେଇ ଭାରତର ପକ୍ଷ ଦୃଢ଼ ଭାବରେ ରଖିବା ସହିତ ସମସ୍ତ ଦେଶବାସୀଙ୍କୁ ଚକିତ କରିଦେଇଥିଲେ । ୧୯୮୦ ମସିହାରେ ଲାଲକୃଷ୍ଣ ଆଡଭାନୀଙ୍କ ସହିତ ମିଶି ଭାରତୀୟ ଜନତାପାର୍ଟି ନାମକ ନୂଆ ଦଳ ଗଠନ କଲେ । ବିରୋଧୀ ଦଳ ଭାବରେ ସେ ସରକାରଙ୍କୁ ବହୁ ଗଠନ ମୂଳକ ପରାମର୍ଶ ଦେଇ ସାହାଯ୍ୟ କରିବା ସହିତ ଦେଶର ସେବା କରିଥିଲେ । ଭାରତ ପ୍ରତି ଅଟଳ ବିହାରୀଙ୍କ ନିଃସ୍ୱାର୍ଥପର ସେବା ପାଇଁ ୧୯୯୨ ମସିହାରେ ପଦ୍ମ ବିଭୂଷଣ ଉପାଧିରେ ଭୂଷିତ ହୋଇଥିଲେ । ଉତ୍ତର ପ୍ରଦେଶ 'ହିନ୍ଦୀ ସଂସ୍ଥାନ' ପକ୍ଷରୁ 'ହିନ୍ଦୀ ଗୌରବ' ସମ୍ମାନରେ ସମ୍ମାନିତ ହୋଇଥିଲେ । ୧୯୯୫ ମସିହାରେ ସର୍ବଶ୍ରେଷ୍ଠ ସାଂସଦ ଭାବରେ ତାଙ୍କୁ ସମ୍ମାନିତ କରାଯାଇଥିଲା । ସେ ପାଇଥିବା ବହୁ ସମ୍ମାନ ମଧ୍ୟରେ

ଅନ୍ୟ କେତୋଟି ପ୍ରମୁଖ ସମ୍ମାନ ହେଲା କାନପୁର ବିଶ୍ୱବିଦ୍ୟାଳୟରୁ ଡିଲିଟ୍, ଲୋକମାନ୍ୟ ତିଲକ ଆୱାର୍ଡ ଇତ୍ୟାଦି । ଉପସାଗରୀୟ ମୁସଲମାନ ଦେଶ ଗୁଡ଼ିକ ତାଙ୍କୁ ମହାନ ଜନନାୟକ ଭାବରେ ସମ୍ବର୍ଦ୍ଧନା ଦେଇଥିଲେ । ୧୯୯୬ ମସିହାରେ ପ୍ରଥମ ଥର କରି ସେ ନିଜ ଦଳର ନେତୃତ୍ୱରେ ସରକାର ଗଢ଼ିଲେ । ଏହା ମାତ୍ର ୧୩ ଦିନ ପାଇଁ ରହିଥିଲା । ତାପରେ ୧୩ଟି ଦଳକୁ ମିଶାଇ ସରକାର ଗଠନ କଲେ ୧୩ ମାସ ପାଇଁ । ଏହି ସରକାରରୁ ଡି.ଏମ୍.କେ ସମର୍ଥନ ପ୍ରତ୍ୟାହାର କରିବାରୁ ଅଟଳବିହାରୀଙ୍କ ସରକାର ଭାଙ୍ଗିଯାଇଥିଲା । ୧୯୯୯ ମସିହାରେ ତ୍ରୟୋଦଶ ଲୋକସଭା ଗଠନ କରି ତୃତୀୟଥର ପାଇଁ ସେ ପୁଣିଥରେ ଭାରତର ପ୍ରଧାନମନ୍ତ୍ରୀ ହେଲେ । ଜଣେ ସୁବକ୍ତା, ଦୂରଦୃଷ୍ଟି ସମ୍ପନ୍ନ ବ୍ୟକ୍ତି ଓ ଜନନାୟକ ଭାବରେ ଭାରତୀୟ ଜନସାଧାରଣଙ୍କ ମନରେ ସେ ଏକ ବିରଳ ପରିଚୟ ସୃଷ୍ଟି କରିପାରିଛନ୍ତି । ନଅଥର ଲୋକସଭାର ସାଂସଦ ତଥା ଦୁଇଥର ରାଜ୍ୟସଭାର ସଦସ୍ୟ ହେବାର ଗୌରବ ସେ ଅର୍ଜନ କରିଛନ୍ତି । କବି ଭାବରେ ତାଙ୍କର ସୁଖ୍ୟାତି ରହିଛି । ତାଙ୍କ ରଚିତ ୫୧ଟି କବିତାର ସଂକଳନ ଅନେକ କଥା କବିତା ପୁସ୍ତକ ଆକାରରେ ପ୍ରକାଶ ପାଇଥିଲା । ତାଙ୍କ ପ୍ରଧାନମନ୍ତ୍ରୀତ୍ୱ ସମୟରେ ଚବିଶଟି ଆଞ୍ଚଳିକ ଦଳକୁ ନେଇ ଜାତୀୟ ଗଣତାନ୍ତ୍ରିକ ମେଣ୍ଟ ମିଳିତ ସରକାର ଗଠନ କରାଗଲା । ନେହେରୁଙ୍କ ପରେ ବାଜପେୟୀଜୀ ସର୍ବାଧିକ ତିନିଥର ପ୍ରଧାନମନ୍ତ୍ରୀ ହେବାରେ ରେକର୍ଡ ପ୍ରତିଷ୍ଠା କଲେ । "ଜୟ ଜବାନ, ଜୟ କିଶାନ"ର ନାରା ସହିତ 'ଜୟ ବିଜ୍ଞାନ'କୁ ସେ ଯୋଡିଥିଲେ । ସେ କୃଷି, ବିଜ୍ଞାନ, ସଡକ, ଯୋଗାଯୋଗ ଇତ୍ୟାଦିରେ ଉଲ୍ଲେଖନୀୟ କାର୍ଯ୍ୟ କରି ପ୍ରଶଂସିତ ହୋଇଥିଲେ । ପୋଖରାନ ପରୀକ୍ଷଣର ସଫଳତା, ଲାହୋର ଚୁକ୍ତି, ଭାରତ ପାକିସ୍ତାନ ସମ୍ପର୍କର ଉନ୍ନତି, ଜାତୀୟ ରାଜପଥର ଉନ୍ନତିକରଣ, ଯୋଗାଯୋଗ, ପ୍ରଧାନମନ୍ତ୍ରୀ ଗ୍ରାମ ସଡକ ଯୋଜନା ଇତ୍ୟାଦି ତାଙ୍କ କାର୍ଯ୍ୟକାଳ ସମୟର ସ୍ମରଣୀୟ କାର୍ଯ୍ୟ । ୧୯୯୮ ମସିହାରେ ୟୁ.ଏନ୍. ମିଲେନିୟମ ସମିତିରେ ଉଦ୍‌ବୋଧନ ଦେଇ ଭାରତ ଓ ଆମେରିକା ହାତ ମିଳାଇବାକୁ ବାର୍ତ୍ତା ଦେଇଥିଲେ । ଲାହୋର ବସ୍ ସେବା, ଅନ୍ୟ ପଡ଼ୋଶୀ ତଥା ଅନ୍ତରାଷ୍ଟ୍ରୀୟ ଦେଶମାନଙ୍କ ସହିତ ମିଶି କାର୍ଯ୍ୟ କରିବା ଏବଂ ବାଣିଜ୍ୟ ବେପାର ବୃଦ୍ଧି କରିବା ଆଦି ମହତ କାମ ସେ କରିଥିଲେ । ଗୁଜୁରାଟର ଗୋଧ୍ରାଠାରେ ଦଙ୍ଗା ହୋଇଥିବା ଘଟଣାରେ ଅଟଳଜୀ ସମସ୍ତ ରାଜନୀତିର ଉର୍ଦ୍ଧ୍ୱକୁ ଯାଇ ସେତେବେଳର ମୁଖ୍ୟମନ୍ତ୍ରୀ ନରେନ୍ଦ୍ର ମୋଦିଙ୍କୁ ରାଜଧର୍ମ ପାଳନ କରିବା ପାଇଁ କହିଥିଲେ । ଏହା ଜଣେ ଉତ୍ତମ ଶାସକର ପରିଚୟ ଦେଇଥିଲା ଏବଂ ସମସ୍ତ ବିରୋଧୀ ଦଳ ଆଚମ୍ବିତ ହୋଇଯାଇଥିଲେ । ଏପରି ଜନନାୟକ ଭାରତ ତଥା ବିଶ୍ୱରେ ବିରଳ ।

**ତାଙ୍କ ବିଷୟରେ କିଛି ଅଜଣା କଥା-**

# ସେ ଏକମାତ୍ର ଅଣକଂଗ୍ରେସ ପ୍ରଧାନମନ୍ତ୍ରୀ ଭାବେ ନିଜର କାର୍ଯ୍ୟକାଳ ସମ୍ପୂର୍ଣ୍ଣ କରିଛନ୍ତି ।
# ତିନିଥର ପ୍ରଧାନମନ୍ତ୍ରୀ ହେବାର ରେକର୍ଡ ତାଙ୍କ ନାମରେ ଅଛି ।
# ଜାତିସଂଘରେ ହିନ୍ଦୀଭାଷାରେ ବକ୍ତୃତା ଦେବାରେ ସେ ହେଉଛନ୍ତି ପ୍ରଥମ ତଥା ଏକମାତ୍ର ପ୍ରଧାନମନ୍ତ୍ରୀ ।
# ବାଜପେୟୀଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ପଣ୍ଡିତ ନେହେରୁ ଘୋଷଣା କରିଥିଲେ ଯେ ସେ ଦିନେ ଦେଶର ପ୍ରଧାନମନ୍ତ୍ରୀ ହେବେ । ତାଙ୍କ ଭବିଷ୍ୟତ ବାଣୀ ସତ୍ୟ ହେଲା ।
# ଜୀବନକାଳ ମଧ୍ୟରେ ତାଙ୍କ ଶରୀରରେ ୧୦ଥର ଅସ୍ତ୍ରୋପଚାର ହୋଇଛି ।
# ବାଜପେୟୀଙ୍କ ପ୍ରିୟ ସ୍ଥାନ ହେଉଛି ହିମାଚଳ ପ୍ରଦେଶର ମନାଲି ।
# ଡଃ ମନମୋହନ ସିଂହ ଅଟଳ ବିହାରୀ ବାଜପେୟୀଙ୍କୁ ଭାରତୀୟ ରାଜନୀତିର ଭୀଷ୍ମ ପିତାମହ ବୋଲି ସମ୍ବୋଧନ କରିଥିଲେ ।
# ଡିସେମ୍ବର ୨୦.୦୫ରେ ବାଜପେୟୀ ରାଜନୀତିରୁ ସନ୍ନ୍ୟାସ ନେଇଥିଲେ ।
# ଅବିବାହିତ ଥିବା ବାଜପେୟୀଙ୍କ ପାଳିତ କନ୍ୟା ହେଲେ ନମିତା ଭଟ୍ଟାଚାର୍ଯ୍ୟ ।

ପ୍ଲଟ ନଂ -୨୨୫/୧୭୬୮
ବମିଖାଲ, ଭୁବନେଶ୍ୱର-୧୦
ମୋ:- ୯୯୩୭୬୮୯୬୮୩

# ସାମାଜିକ ଦାୟିତ୍ୱ ଓ ରାଜନୀତି

ଶ୍ରୀ ରାମଚନ୍ଦ୍ର ମହାନ୍ତ (୪୨୭)

ସମାଜ ମନୁଷ୍ୟକୁ ସାମାଜିକତା ଏବଂ ମାନବିକ ମୂଲ୍ୟବୋଧର ଶିକ୍ଷା ପ୍ରଦାନ କରିଥାଏ । କଥା କହି ଶିଖିବା ଆଗରୁ ମଣିଷ ଶିଶୁଟିକୁ ଯଦି ଜଙ୍ଗଲରେ ପଶୁଙ୍କ ଗହଣରେ ଛାଡ଼ିଦିଆଯାଏ, ତେବେ ସେ ପଶୁଭଳି ଶବ୍ଦ ଉଚ୍ଚାରଣ କରିବାକୁ ଶିଖିଯାଏ, ମଣିଷ ଭଳି ଭାଷା କହିପାରେ ନାହିଁ । ତା'ର ଆଚାର ବ୍ୟବହାର ମଧ୍ୟ ପଶୁତୁଲ୍ୟ ହୋଇଯାଏ । ସେଥିପାଇଁ ଆମେ ସମାଜରେ ଏମିତି ଆଚରଣ କରିବା ଉଚିତ ଯାହା ଅନ୍ୟମାନଙ୍କ ପାଇଁ ଶିକ୍ଷଣୀୟ ହେବ । ଆମେ ସମସ୍ତେ କୌଣସି ନା କୌଣସି କ୍ଷେତ୍ରରେ ସମାଜର ଦାୟିତ୍ୱ ବହନ କରିଥାଉ । ପରିବାର ଭିତରେ ପିତାମାତା, ଗ୍ରାମରେ ଗ୍ରାମର ମୁଖ୍ୟ, ଅଞ୍ଚଳରେ ଅଞ୍ଚଳ ଅଧିକାରୀ, ଜିଲ୍ଲାରେ ଜିଲ୍ଲାପାଳ, ରାଜ୍ୟରେ ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ ତଥା ଅନ୍ୟାନ୍ୟ ମନ୍ତ୍ରୀ ଓ ବିଧାନସଭାର ସଦସ୍ୟ ଏପରି ଭାବରେ ଆମର କର୍ତ୍ତବ୍ୟ ପାଳନ କରିବା ଉଚିତ ଯେପରି ଏହା ଅନ୍ୟମାନଙ୍କ ପାଇଁ ଉଦାହରଣ ହେଉଥିବ ।

ପିତାମାତାଙ୍କର ଆଦର୍ଶ ପରିବାରରେ ସମସ୍ତେ ଗ୍ରହଣ କରନ୍ତି ଏବଂ ମାର୍ଜିତ ଓ ସୁସଂସ୍କୃତିସମ୍ପନ୍ନ ସମାଜ ଗଠନରେ ଭାଗିଦାର ହୁଅନ୍ତି । ପରିବାରର ପ୍ରତ୍ୟେକ ମଣିଷ ଆଦର୍ଶବାନ ହେଲେ ଆମ ରାଷ୍ଟ୍ର ଏକ ଆଦର୍ଶ ରାଷ୍ଟ୍ରରେ ପରିଣତ ହୁଅନ୍ତା । କିନ୍ତୁ ଦୁର୍ଭାଗ୍ୟର କଥା ଯେ, ନିଜର ଚରିତ୍ର ଓ ବ୍ୟବହାର ବିଷୟରେ ଆମେ ସଚେତନ ହେଉନାହୁଁ । ପରିଣାମ ସ୍ୱରୂପ ଆମର ପରିବାର ବିଶୃଙ୍ଖଳିତ ହେବା ସଙ୍ଗେ ସଙ୍ଗେ ସମାଜରେ ଅସାମାଜିକତା ଓ ବିଶୃଙ୍ଖଳା ଦେଖାଯାଉଛି । ସବୁଠାରେ ଆଜିକାଲି ରାଜନୀତିର ପ୍ରୟୋଗ ହେଉଛି; ତାହା ମଧ୍ୟ ଓଲଟା ଅର୍ଥରେ । ରାଜନୀତିର ପ୍ରକୃତ ଅର୍ଥ ତ ଶ୍ରେଷ୍ଠ ନୀତି । କିନ୍ତୁ ମିଥ୍ୟାଚାର ଏବଂ ଛଳନାପୂର୍ଣ୍ଣ ବ୍ୟବହାର ମାଧ୍ୟମରେ ଜଣେ ଅନ୍ୟ ଜଣକୁ ଠକିବା ପ୍ରକ୍ରିୟାକୁ ଆଜିକାଲି ଆମେ ରାଜନୀତି ବୋଲି ବୁଝୁଛୁ ।

ଆଜିକାଲି ସମ୍ବାଦପତ୍ରର ପୃଷ୍ଠା ଓଲଟାନ୍ତୁ ବା ଦୂରଦର୍ଶନରେ ପ୍ରସାରିତ ସମ୍ବାଦ ଶୁଣନ୍ତୁ କୌଣସିଟିକୁ ଶତପ୍ରତିଶତ ସତ୍ୟ ବୋଲି ଆଦୌ ବିଶ୍ୱାସ କରିହେବ ନାହିଁ । ସାମାନ୍ୟ ଘଟଣାକୁ ଅତିରଞ୍ଜିତ କରି ସମ୍ବାଦ ପରିବେଷଣ କରାଯାଉଛି । କେଉଁଠି ବା ସତ୍ୟ ଘଟଣାକୁ ସମ୍ପୂର୍ଣ୍ଣ ଭାବରେ ଲୁଚାଇଦେବା ପାଇଁ ପ୍ରଯତ୍ନ କରାଯାଉଛି । ଏହାଦ୍ୱାରା ସମ୍ବାଦ ପରିବେଷଣ କରୁଥିବା ସଂସ୍ଥା ଏବଂ ସମ୍ବାଦଦାତାମାନେ ସମାଜର କେତେ ଯେ କ୍ଷତି ସାଧନ କରୁଛନ୍ତି ତାହା ସେମାନେ ବୁଝିପାରୁନାହାନ୍ତି । ଯେ କୌଣସି ସମ୍ବାଦପତ୍ରର ପୃଷ୍ଠା ଓଲଟାଇଲେ

ନରହତ୍ୟା ଏବଂ ନାରୀଧର୍ଷଣର ଖବର ନିଶ୍ଚିତ ଭାବରେ ଦେଖିବାକୁ ମିଳିବ । ତେବେ କେଉଁଠି ଆତ୍ମହତ୍ୟାକୁ ହତ୍ୟାର ରୂପ ଦିଆଯାଉଛି ତ କେଉଁଠି ପ୍ରେମ ବ୍ୟାପାରର ବିଫଳତାକୁ ବଳାତ୍କାରର ରୂପ ଦିଆଯାଉଛି । ସମ୍ବାଦଦାତା ଯଦି ଘଟଣାଟିକୁ ବନେଇଚୂନେଇ ଲେଖିଦେଇ ତାକୁ ପ୍ରକାଶ କରାଇପାରିଲେ ଏବଂ ପାଠକମାନଙ୍କର ମନକୁ ଜିଣି ନେଇପାରିଲେ, ତେବେ ଅସତ୍ୟ ଘଟଣା ମଧ୍ୟ ସତ୍ୟରେ ପ୍ରତିପାଦିତ ହୋଇଯିବାକୁ ଡେରି ହେବନାହିଁ ।

ଆଜିକାଲି ରାଜନୀତି ଏପରି ଏକ ସ୍ତରରେ ପହଞ୍ଚିଗଲାଣି ଯେ, ସାଧାରଣ ଲୋକେ ରାଜନୀତିରେ ଜଡ଼ିତ ବ୍ୟକ୍ତିମାନଙ୍କୁ ସମ୍ମାନ ଦେବାକୁ କୁଣ୍ଠାବୋଧ କରୁଛନ୍ତି ଏବଂ ସନ୍ଦେହ ଚକ୍ଷୁରେ ଦେଖୁଛନ୍ତି । ଏହି ନେତାମାନେ କହୁଥିବା କଥାକୁ ସତ୍ୟ ବୋଲି ମାନିବାକୁ ସହଜରେ କେହି ରାଜି ହୁଅନ୍ତି ନାହିଁ ।

ଘଟଣାର ପ୍ରବାହରେ ଦୁର୍ଘଟଣାଟିଏ ଘଟିଥାଏ । ଜାଣି ଜାଣି ଏହା କେହି ଘଟାଇ ନଥାଏ । ଯାନ୍ତ୍ରିକ ତ୍ରୁଟି ଯୋଗୁଁ ଟ୍ରେନ୍ ବା ବସ୍‌ରେ ଦୁର୍ଘଟଣା ଘଟିଲେ ଏଥିପାଇଁ ବିଭାଗୀୟ ମନ୍ତ୍ରୀଙ୍କୁ ଦାୟୀ କରାଯାଏ । ଏପରିକି ମୁଖ୍ୟମନ୍ତ୍ରୀ ବା ପ୍ରଧାନମନ୍ତ୍ରୀଙ୍କୁ ଦାୟୀ କରିବାକୁ ଲୋକେ ପଛାନ୍ତି ନାହିଁ । ସେମାନଙ୍କର କୁଶପୁତ୍ତଳିକା ଦାହ କରାଯାଏ ଏବଂ ସେମାନଙ୍କର ଇସ୍ତଫା ଦାବି କରାଯାଏ । ଏସବୁ କରିବା କ'ଣ ଠିକ୍? ମୋ ମତରେ ଏଥିପାଇଁ ଆମେ ସମସ୍ତେ ଦାୟୀ । ମୋ ପୁଅ ଚୋରୀ, ଡକାୟତି କରିବ, ହତ୍ୟା କରିବ ବା ଧର୍ଷଣ ବ୍ୟାପାରରେ ଲିପ୍ତ ହେବ-ଏଥିପାଇଁ ମୁଁ ଦାୟୀ, ମୋ ସମାଜ ଦାୟୀ । ଏଥିପାଇଁ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ବା ପ୍ରଧାନମନ୍ତ୍ରୀଙ୍କୁ ଦାୟୀ କରିବାର କୌଣସି କାରଣ ନାହିଁ । ଯେଉଁମାନେ ସମାଜସେବୀ ଭାବରେ ପ୍ରତିଷ୍ଠିତ ଏବଂ ବହୁ ସମ୍ମାନରେ ସମ୍ମାନିତ, ସେମାନେ ସ୍ଥିର ଚିତ୍ତରେ ବିବେକ ଦ୍ୱାରା ପରିଚାଳିତ ହୋଇ କୁହନ୍ତୁ ତ ମନ୍ତ୍ରୀମାନଙ୍କୁ ଦାୟୀ କରିବାଟା କ'ଣ ଠିକ୍? ସମାଜକୁ ଠିକ୍ ଭାବରେ ଦିଗ୍‌ଦର୍ଶନ ଦେଇନପାରି ମଧ୍ୟ ଆମେ ସମାଜସେବୀ ବୋଲାଉଛୁ । ସମାଜ ସଂସ୍କାର କାର୍ଯ୍ୟ ଠିକ୍ ଭାବରେ ନ କରି ମଧ୍ୟ ଆମେ ପୁରସ୍କାର ଗ୍ରହଣ କରୁଛୁ, ସମ୍ମାନିତ ହେଉଛୁ । ସମାଜରେ ଘଟୁଥିବା ଅସାମାଜିକ ଘଟଣା ପାଇଁ ଆମେ କହିପାରିବୁ ଯେ, ପ୍ରଶାସନର ମୁଖ୍ୟ ଏଥିପାଇଁ ନିଜଆଡୁ ନିଜକୁ ଦାୟୀ କରିବା ଉଚିତ । ତେବେ ପ୍ରଶାସନିକ ବ୍ୟବସ୍ଥାର ସୁଧାର ପାଇଁ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରିବା ଛଡ଼ା ସେ ବା କ'ଣ କରିପାରିବେ ? ଦୋଷୀ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ରାଜନେତାମାନଙ୍କର କର୍ତ୍ତବ୍ୟ । ଦୋଷୀମାନଙ୍କୁ ଦୃଷ୍ଟାନ୍ତମୂଳକ ଦଣ୍ଡ ଦିଆଗଲେ ଭବିଷ୍ୟତରେ ସେ ଧରଣର ଦୁର୍ଘଟଣା ପ୍ରାୟ ଘଟନ୍ତା ନାହିଁ ।

ଯୁଗ ପରିବର୍ତ୍ତନ ସହ ତାଳଦେଇ ସମାଜରେ ଆମର ମଣିଷ ପଣିଆର ଅବକ୍ଷୟ ଘଟିଚାଲିଛି । ବର୍ତ୍ତମାନ ଭାରତର ବିପୁଳ ଜନସଂଖ୍ୟା ମଧ୍ୟରେ ସତ୍ୟବାଦୀ, ପରୋପକାରୀ,

ଧର୍ମବିଶ୍ୱାସୀ ଏବଂ ଅହିଂସା ଆଚରଣକାରୀ ମଣିଷଙ୍କ ସଂଖ୍ୟାର ବୃଦ୍ଧି ଅନୁଭବ କରି ହେଉନାହିଁ । ଆଜିକାଲି ବିଭିନ୍ନ ଧର୍ମ ଗୁରୁଙ୍କ ଦ୍ୱାରା ଦୀକ୍ଷିତ ବ୍ୟକ୍ତିମାନଙ୍କ ଭିତରୁ ଅନେକେ ଆଧ୍ୟାତ୍ମିକତା ଓ ମଣିଷପଣିଆର ପୋଷାକ ସିନା ପିନ୍ଧି ଦେଉଛନ୍ତି; ସେମାନଙ୍କ ଆଚରଣରେ ପରିବର୍ତ୍ତନ ହେଉନାହିଁ । ବରଂ ସେମାନେ "ଆପେ ବଞ୍ଚିଲେ ବାପର ନାମ" ନୀତିକୁ ଆପଣେଇ ନେଉଛନ୍ତି । ସେମାନେ ନିଜ ଗ୍ରାମ ଓ ସହର କଥା ଚିନ୍ତା କରିବା ଦୂରେ ଥାଉ, ନିଜ ପଡ଼ୋଶୀ କଥା ମଧ୍ୟ ଚିନ୍ତା କରୁନାହାନ୍ତି । ସମାଜରେ ଅନୀତି, ଦୁରାଚାର, ଅସାମାଜିକତା ବୃଦ୍ଧି ପାଇବା ସହିତ ଆର୍ଥିକ ଦୁର୍ବଳ ଶ୍ରେଣୀ ତଥା ଆଦିବାସୀ, ହରିଜନ ଶ୍ରେଣୀର ପରିବାର ଗୁଡ଼ିକ ସାମାଜିକ ଶୋଷଣର ଶିକାର ହେଉଛନ୍ତି । ଅନେକ କ୍ଷେତ୍ରରେ ସରକାରଙ୍କ ଯୋଜନା ଗୁଡ଼ିକର ସୁଫଳ ସେମାନଙ୍କ ପାଖରେ ପହଞ୍ଚିପାରୁନାହିଁ । ଫଳ ସ୍ୱରୂପ ମାଓବାଦ, ଆତଙ୍କବାଦ ଭଳି ଗୋଷ୍ଠୀ ସୃଷ୍ଟି ହେବାରେ ଲାଗିଛି । ସମାଜର ବିଭିନ୍ନ ବର୍ଗର ଲୋକମାନେ ସାମାଜିକ ବୈଷମ୍ୟର ଶିକାର ହେବା ସଙ୍ଗେ ସଙ୍ଗେ ସେମାନଙ୍କର ଝିଅ, ବୋହୂମାନେ ଧର୍ଷଣର ଶିକାର ହେବା ନିତିଦିନିଆ ଘଟଣାରେ ପରିଣତ ହେଲାଣି ।

ଏବେ ଆମକୁ ଗଭୀର ଭାବରେ ଚିନ୍ତା କରି ଏସବୁ ସମସ୍ୟାର ସମାଧାନର ପଥ ଖୋଜିବାକୁ ହେବ ଏବଂ ବେଳହୁଁ ସାବଧାନ ହେବାକୁ ପଡ଼ିବ । ପାଶ୍ଚାତ୍ୟ ସଭ୍ୟତାର ଅନ୍ଧ ଅନୁସରଣକୁ ହଟାଇବାକୁ ପଡ଼ିବ । ସମାଜର ବରିଷ୍ଠ ନାଗରିକ, ସ୍ୱେଚ୍ଛାସେବୀ ଅନୁଷ୍ଠାନ, ବିଭିନ୍ନ ଆଧ୍ୟାତ୍ମିକ ଓ ଧାର୍ମିକ ଅନୁଷ୍ଠାନମାନଙ୍କ ତରଫରୁ ସମାଜରେ ସଚେତନତା କାର୍ଯ୍ୟକ୍ରମ ଗ୍ରହଣ କରାଯାଉ । ବିଶୃଙ୍ଖଳିତ ସମାଜ ବ୍ୟବସ୍ଥାକୁ ସୁଧାରିବା ଆମ ସମସ୍ତଙ୍କର କର୍ତ୍ତବ୍ୟ । ଏହା କୌଣସି ପ୍ରଶାସନିକ ଅଧିକାରୀ ବା ରାଜନେତାଙ୍କର କର୍ତ୍ତବ୍ୟ ନୁହେଁ ।

ରାଜନୀତିକୁ ଏହାର ପ୍ରକୃତ ଅର୍ଥ ଶ୍ରେଷ୍ଠ ନୀତି ହିସାବରେ ଗ୍ରହଣ କରାଯାଉ । ଭଲ କର୍ମର ଫଳ ଭଲ ହିଁ ହେବ । ରାଜ୍ୟରେ ସବୁ କ୍ଷେତ୍ରରେ ଉତ୍ତମ ବା ଶ୍ରେଷ୍ଠନୀତିର ପ୍ରୟୋଗ କଲେ ସମାଜର ପ୍ରତ୍ୟେକ ବ୍ୟକ୍ତି ଉପକୃତ ହେବା ସଙ୍ଗେ ସଙ୍ଗେ ସୁରକ୍ଷିତ ଜୀବନ ଯାପନ କରିପାରିବ । ବ୍ୟକ୍ତି ଚରିତ୍ରର ସୁଧାର ନକରି ସମାଜରେ ସାମୁହିକ ପରିବର୍ତ୍ତନ ଆଶା କରିବା ବୃଥା ।

*୪୦୨, ମା' ଭୁବନେଶ୍ୱରୀ ଏନ୍‌କ୍ଲେଭ*
*ଗଜପତି ନଗର, ଭୁବନେଶ୍ୱର*
*ଫୋନ୍:- ୮୮୯୫୨୭୭୫୪୨*

# ଆମ ସଂଗୀତର କେତେକ ରୋଚକ ତଥ୍ୟ

**ନନ୍ଦକିଶୋର ସିଂହ (୩)**

ସଂଗୀତ-ସାହିତ୍ୟ-ରସାନଭିଜ୍ଞ
ସାକ୍ଷାତ ପଶୁଃ ପୁଚ୍ଛ ବିଷାଣ ହୀନଃ ।
ଚରତ୍ୟସୌ କିନ୍ତୁ ତୃଣଂ ନ ଭୁଂକ୍ତେ
ପରଂ ପଶୁନାମପି ଭାଗ୍ୟ ହେତବଃ ।

ସଂଗୀତରେ ଅନଭିଜ୍ଞ ଲୋକ ପଶୁଠାରୁ ହୀନ, ସଂଗୀତ ଗୋଟିଏ ଆକର୍ଷଣୀୟ କଳା ବିଦ୍ୟା । ସଂଗୀତର ଉକ୍ରର୍ଷରୁ ଜାତିର ସମୁନ୍ନତି ଜଣାପଡ଼େ । ଆମ ଓଡ଼ିଆ ସଂଗୀତର ପରମ୍ପରା ଖୁବ୍ ପ୍ରାଚୀନ । ଏହାର ସୃଷ୍ଟି ପ୍ରାକ୍ ଆଦି ଯୁଗରୁ ।

ପ୍ରାକ୍ ଆଦିଯୁଗ ୭ମରୁ ୧୩ଶ ଶତାବ୍ଦୀ ପର୍ଯ୍ୟନ୍ତ ପରିବ୍ୟାକ୍ତ । ଏହି ସମୟରେ ଓଡ଼ିଆ ସଂଗୀତର ପ୍ରାରମ୍ଭ ଚର୍ଯ୍ୟାଗୀତିଠାରୁ ଆରମ୍ଭ କରି ନାଥ ସାହିତ୍ୟ, କଳସା ଦେବୀ ବନ୍ଦନା, ସୌରଉତ୍ସବ ସମ୍ବନ୍ଧୀୟ ରଚନାରେ ସମୃଦ୍ଧ । ଆଦିଯୁଗ ପଞ୍ଚଦଶ ଶତାବ୍ଦୀର ସାରଳାଦାସଙ୍କ ରଚନାରେ ପରିପୁଷ୍ଟ । ରୀତିଯୁଗ ଷୋଡ଼ଶ ଶତାବ୍ଦୀର ବୈଷ୍ଣବୀୟ ଚେତନାରେ ଉଦ୍‌ବୁଦ୍ଧ କବିଗଣ ସଂଗୀତ ରଚନାରେ ବ୍ରତୀ ଥିଲେ ।

ମଧ୍ୟଯୁଗ ୧୬ଶରୁ ୧୯ଶ ଶତାବ୍ଦୀ ଯାଏ ପରିବ୍ୟାପ୍ତ । ଏହି ସମୟରେ ଓଡ଼ିଆ ସଂଗୀତର ବିବିଧତା ପରିଲକ୍ଷିତ ହୋଇଥାଏ । ଏଗୁଡ଼ିକ ମଧ୍ୟରେ ଚୌତିଶା, ଚୌପଦୀ, ଭକ୍ତିଗୀତ, କୋଇଲି ସାହିତ୍ୟ, ବୋଲି, ଷୋଡଶା, ପଦିଆ, ଚିଟାର ଗୀତିକା, ସଂବୋଧକ ଗୀତିକା, ଚମ୍ପୁ, ପୋଇ ଆଦି ପ୍ରଧାନ ।

ଚୌତିଶା- ଦୀନକୃଷ୍ଣ ଦାଶଙ୍କ ଚଉଦଗୋଟି ଚୌତିଶା ଉପେନ୍ଦ୍ରଭଞ୍ଜଙ୍କ ଚିଟାର ଚୌତିଷା, ଭୂପତି ପଣ୍ଡିତଙ୍କ ଉଦ୍ଧବ ଚଉତିଶା ଆଦି ପ୍ରଧାନ ।

ଭକ୍ତିଗିତିକା- ବନମାଳୀ, ଦୀନକୃଷ୍ଣ, ଗୋପାଳକୃଷ୍ଣ ପରବର୍ତ୍ତୀ ସମୟରେ ଭୀମଭୋଇ ଆଦି ଭକ୍ତିରସ ସମ୍ବଳିତ ରଚନାରେ ସିଦ୍ଧହସ୍ତ ଥିଲେ ।

ଆଦିରସସିକ୍ତ ପ୍ରଣୟଧର୍ମୀ ଗୀତି- ରୀତିଯୁଗରେ କବି ସମ୍ରାଟ ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ ବଳଦେବରଥ, ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତସିଂହାର, ଧନଞ୍ଜୟ ଭଞ୍ଜ ଆଦିଙ୍କ ରଚନାରେ ମୁଖ୍ୟତଃ ଆଦିରସର ପ୍ରଭାବ ପରିଲକ୍ଷିତ ହୋଇଥାଏ ।

କୋଇଲି ସାହିତ୍ୟ- ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ କମଳ ମୁଖ କୋଇଲି, ମାର୍କଣ୍ଡଦାଶଙ୍କ କେଶବ କୋଇଲି ଦନାଇଦାସଙ୍କ ଯଶୋଦା କୋଇଲି ଉଲ୍ଲେଖ ଯୋଗ୍ୟ ।

ବୋଲି- ଏହା ହେଉଛି ଏକ ଛାନ୍ଦ ବିଶିଷ୍ଟ ରଚନା । ଏହି ବୋଲି ରଚନା କ୍ଷେତ୍ରରେ କେଶବ ଦାସ, ଦୀନକୃଷ୍ଣ, ବ୍ରଜନାଥ ବଡ଼ଜେନାଙ୍କ ନାମ ଉଲ୍ଲେଖ କରାଯାଇପାରେ । ଷୋଡଶା- ଏହା ସାଧାରଣତଃ କ ଠାରୁ କ୍ଷ ପର୍ଯ୍ୟନ୍ତ ଆଦ୍ୟ ଅକ୍ଷରକୁ ନେଇ ରଚିତ ।

ଉପେନ୍ଦ୍ରଭଞ୍ଜଙ୍କ ଚୌପଦୀ ଚନ୍ଦ୍ର, ଚନ୍ଦ୍ରଚୂଡ଼ାମଣିଙ୍କ ସ୍ୱରଷୋଡଶା, ଦୀନମଣିଙ୍କ ରାଧାକୃଷ୍ଣ ଷୋଡଶା ଉଲ୍ଲେଖ ଯୋଗ୍ୟ । ସନ୍ଥ ଭୀମଭୋଇ କ୍ଷ ଠାରୁ କ ଯାଏ ବିପରୀତ ଭାବେ ରଚନା କରି ବିପରୀତ ଷୋଡଶା ରଚନାରେ ନିଜର ପ୍ରତିଷ୍ଠା ପ୍ରତିପାଦନ କରିଛନ୍ତି ।

ପଦି-ପଦିଆ- ଏହି ଗୀତ ମୁଖ୍ୟତଃ ନାୟକର ବିରହ ଅନୁଚିନ୍ତା ଉପରେ ଆଧାରିତ । ଏ କ୍ଷେତ୍ରରେ ନୀଳକଣ୍ଠ ଷଡଙ୍ଗୀଙ୍କ ଶହେପଦିଆ, ବୀରବର ମଙ୍ଗରାଜଙ୍କ ଶହେପଦିଆ, ବାମଦେବ ପଟ୍ଟନାୟକ ଏବଂ ବ୍ରଜସୁନ୍ଦରଙ୍କ ଛପନ ପଦିଆ ରଚନା ଉଲ୍ଲେଖଯୋଗ୍ୟ ।

ଚିଟାଉ ଗୀତିକା- ଏଥିରେ ସାଧାରଣତଃ ପ୍ରଣୟୀ ପ୍ରଣୟିନୀଙ୍କ ମଧ୍ୟରେ ପତ୍ର ଆଦାନପ୍ରଦାନରେ ଉଲ୍ଲେଖ ଥାଏ । ଉପେନ୍ଦ୍ର ଭଞ୍ଜଙ୍କ ପ୍ରେମ ସୁଧାନିଧି କାବ୍ୟର ୧୪ଶ ଛାନ୍ଦରେ ଚିଟାଉ ଲେଖା ତଥା କବିସୂର୍ଯ୍ୟଙ୍କ ନାୟକର ଚିଟାଉ ଉଲ୍ଲେଖଯୋଗ୍ୟ ।

ଚମ୍ପୁ- ଏହାର ଅନ୍ୟନାମ ତାରାବଳୀ, କବିସୂର୍ଯ୍ୟଙ୍କ କିଶୋର ଚନ୍ଦ୍ରାନନ୍ଦ ଚମ୍ପୁ ଏକ ଉଲ୍ଲେଖଯୋଗ୍ୟ ରଚନା, ଚମ୍ପୁରେ ଗଦ୍ୟ ଓ ପଦ୍ୟ ମିଶ୍ରିତ ଭାବେ ରହିଥାଏ ।

ଚୌପଦୀ- ଏହାର ଅନ୍ୟନାମ ଓଡ଼ିଶୀ କହିଲେ ଭୁଲ ହେବନି । ଏହା ବିଭିନ୍ନ ରାଗ ରାଗିଣୀ ସମ୍ବଳିତ ରଚନା, ଏହି ରାଗ ଗୁଡ଼ିକ ବିଭିନ୍ନ ସମୟରେ ବିଭିନ୍ନ ଋତୁକୁ ନେଇ ବୋଲା ହେବାର ବିଧି ରହିଛି ।

ରାଗ ଗୁଡ଼ିକ ହେଲା ମୁଖ୍ୟତଃ ଶ୍ରୀ ଭୈରବ, ପଞ୍ଚମ, ମେଘା ନଟନାରାୟଣ । କେତେକଙ୍କ ମତରେ ଛଅଗୋଟି ପ୍ରଧାନରାଗ ହେଉଛି ଭୈରବ, କୌଶିକ, ହିନ୍ଦୋଳ, ଦୀପକ ଶ୍ରୀ ଓ ମେଘ, ଦେଶାନ୍ତର ଅନୁସାରେ ରାଗର ନାମ ମଧ୍ୟ ବିଭିନ୍ନ । ରାଜପୁତନାରେ କୌଶିକ ପରିବର୍ତ୍ତେ ମାଲକୋଷ ନାମ ପ୍ରଚଳିତ ।

ସୋମେଶ୍ୱର ମଲ୍ଲିନାଥଙ୍କ ମତରେ ଛଅ ରାଗ ହେଲା ଶ୍ରୀ, ବସନ୍ତ, ପଞ୍ଚମ, ଭୈରବ, ମେଘ ଓ ନଟନାରାୟଣ ।

ସେହିପରି ନାରଦ ସଂହିତା ଅନୁସାରେ ଛଅ ରାଗ ହେଲା- ମାଳବ, ମଲ୍ଲାର, ଶ୍ରୀ, ବସନ୍ତ, ହିନ୍ଦୋଳ ଓ କର୍ଣ୍ଣାଟ ।

ତେବେ ଏ ସମସ୍ତ ରାଗର ମୂଳାଧାର ହେଲା ସାତସ୍ୱର,<br>
ଏହା- ସା-ରେ-ଗା-ମା-ପା-ଧା-ନି ରେ ଆବଦ୍ଧ,<br>
ସା- ଷଡଜ ମୟୂର କଣ୍ଠରୁ<br>
ରେ- ଋଷଭ ବୃଷ ରଡ଼ିରୁ<br>
ଗା- ଗାନ୍ଧାର ଅଜ(ଛେଳି) ମେଂ, ମେଂ ସ୍ୱରରୁ ।<br>
ମା- ମଧ୍ୟମ କ୍ରୌଞ୍ଚ ପକ୍ଷୀ କଳରବରୁ<br>
ପା- ପଞ୍ଚମ କୋକିଳର କୁହୁରୁ<br>
ଧା- ଧୈବତ କୁଂଜର କୁହାଟରୁ<br>
ନି- ନିଷାଦ ଅଶ୍ୱର ହ୍ରେସାରୁ

ଛଅ ରାଗର ମଧ୍ୟ ଛତିଶି ରାଗିଣୀ ରହିଛି । ପ୍ରତ୍ୟକ ରାଗ ଅଧୀନରେ ଛଅଟି ଲେଖାଏଁ ରାଗିଣୀ ଥିବା ସୂଚିତ ହୁଏ ।

| ରାଗ | ରାଗିଣୀ (ଅଧୀନସ୍ଥ) |
|---|---|
| ଶ୍ରୀରାଗ | ମାଳଶ୍ରୀ, ତ୍ରିବଣୀ, ଗୌରୀ, କେଦାରୀ, ମଧୁମାଧବୀ ପାହାଡ଼ୀ |
| ବସନ୍ତ- | ଦେଶୀ, ଦେବଗିରି, ବରଟୀ, ଦୋତିକା, ଲଳିତା, ହିନ୍ଦୋଳୀ |
| ଭୈରବ- | ଭୈରବୀ, ଗୁର୍ଜରୀ, ରାମକିରୀ, ଗୁଣ୍ଡକିରୀ, ବଙ୍ଗାଳୀ, ସୈନ୍ଧବୀ |
| ପଂଚମ- | ବିଭାଷ, ଭୂପାଳୀ, କର୍ଣ୍ଣାଟୀ, ବଡହଂସିକା, ମାଳବୀ, ପଟ୍ଟ ମଞ୍ଜରୀ |
| ମେଘ- | ମନ୍ଦାରୀ, ସୌରଠୀ, ସାବେରୀ, କୌଶିକା, ଗାନ୍ଧାରୀ ରିତ୍ତ ଶୃଙ୍ଗାରୀ |
| ନଟନାରାୟଣ- | କାମୋଦୀ, କଲ୍ୟାଣୀ, ଆଭିରୀ, ସାରଙ୍ଗୀ, ନଟ, ହାମ୍ବିର |

ରାଗିଣୀ ଗୁଡ଼ିକ ରାଗର ପତ୍ନୀ ଭାବେ ବିବେଚିତ, କେଉଁ ରସ ପ୍ରକାଶ ପାଇଁ କେଉଁ ରାଗର ସାହାଯ୍ୟ ଆବଶ୍ୟକ ତାହା ମଧ୍ୟ ସଂଗୀତ ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ଅଛି । ପୁନଶ୍ଚ ମୂର୍ଚ୍ଛନା, ତାଳ, ମାନ, ଚମକ ପ୍ରଗତି ସଂଗୀତର ଅଙ୍ଗ ବୋଲି ନାମିତ ।

ରାଗ ଗୁଡ଼ିକର ଚମତ୍କାରିତା- କୁହାଯାଏ ଗୋଟିଏ ଗୋଟିଏ ରାଗର ଆଳାପଶକ୍ତିରେ ପ୍ରକୃତିର ପରିବର୍ତ୍ତନ ଘଟିଥାଏ । ଦୀପକ ରାଗର ଆଳାପରେ ନିର୍ବାପିତ ଦୀପଶିଖା ପ୍ରଜ୍ୱଳିତ ହୁଏ । ମେଘ ମଲ୍ଲାର ରାଗର ଆକାରରେ ଅନାବୃଷ୍ଟି ସମୟରେ ଆକାଶରେ ମେଘ ସଂଚାର ହୁଏ । ଭୈରବ ରାଗ ଆକାଶରେ ଉଷାର ଆବିର୍ଭାବ ହୁଏ । ସେହିପରି ଶ୍ରୀରାଗ ଆକାଶରେ ପ୍ରଦୋଷ କାଳର ସମାଗମ ହୁଏ ଇତ୍ୟାଦି ।

ରାଗ ଆଳାପର ସମୟ- ପ୍ରାତଃକାଳରୁ ଦିବା ଏକପ୍ରହର ଯାଏ ଭୈରବ, ମେଘ ବସନ୍ତ ପଞ୍ଚମ ଆଦିର ଆଳାପ ଶାସ୍ତ୍ରର ଅନୁମୋଦିତ । ଦ୍ୱିପ୍ରହର ବେଳେ ରାଗ ଗୁର୍ଜ୍ଜରୀ, ଗୁଣ୍ଡକିରୀ ଏବଂ ଭୈରବୀ ଆଳାପର ବିଧି । ଦିବା ତୃତୀୟ ପ୍ରହରରୁ ଅର୍ଦ୍ଧରାତି ଯାଏ ଗୌରୀ, ମାଳବ କେଦାର ପ୍ରଭୃତି ଆଳାପ କରାଯାଏ ।

ଋତୁ ଅନୁଯାୟୀ ଆଳାପ ବିଧି- ହେମନ୍ତ ଋତୁରେ ସମଲିକ ନଟନାରାୟଣ ଆଳାପ, ଶିଶିର ଋତୁରେ ସସ୍ତ୍ରୀକ ଶ୍ରୀରାମ ଆଳାପ, ଗ୍ରୀଷ୍ମ ଋତୁରେ ସଭାର୍ଯ୍ୟା ଭୈରବ ଆଳାପ, ବର୍ଷା ଋତୁରେ ସଦାର ମେଘ ଆଳାପ ଇତ୍ୟାଦି ।

ଏବେର ସଙ୍ଗୀତ- ଆଜି ଆଉ ସଂଗୀତର ଶାସ୍ତ୍ରୀୟତା ଉପରେ ଜୋର ଦିଆ ଯାଉନାହିଁ । ଶ୍ରୋତାଙ୍କ ମନୋରଞ୍ଜନ କରିବା ଏହାର ଏକମାତ୍ର ଲକ୍ଷ୍ୟ । ଏଥିରେ ଦ୍ୱିଅର୍ଥବୋଧକ ଅରୁଚିକର ଶବ୍ଦ ସଂଯୋଜନା ବେଳେବେଳେ ସଂଗୀତକୁ ବିକଳାଙ୍ଗ କରୁଛି ।

ଉପସଂହାର- ତେବେ ସେ ଯାହା ହେଉ ସଂଗୀତର ବିସ୍ମୟକର କ୍ଷମତା ରହିଛି । ଏହାକୁ ମୁକ୍ତିର ଏକ ପ୍ରଧାନ ସୋପାନ ଧରାଯାଏ । ବିକାଶ ଯୁଗରେ ସଙ୍ଗୀତ ମାଧ୍ୟମରେ ଚିକିତ୍ସା କରାଯାଇ ବ୍ୟାଧିର ଉପଶମ କରାଯାଇଛି । ବିଭିନ୍ନ ରାଗର ଆଳାପରେ ବିଭିନ୍ନ ରୋଗର ଉପଶମ କରାଯାଉଛି ।

ଉଦାହରଣ ସ୍ୱରୂପ-

| ରାଗ | ରୋଗର ଉପଶମ |
|---|---|
| ଅହିର ଭୈରବ | ଅଗ୍ନିମାନ୍ଦ୍ୟ, ଉଚ୍ଚ ରକ୍ତଚାପ |
| ଆଶାବରୀ | କଫ, ରକ୍ତ ଅଶୁଦ୍ଧି |
| ବାଗେଶ୍ରୀ | ନିଦ୍ରାହୀନତା |
| ଭୀମ ପଲାସୀ | ଉଚ୍ଚ ରକ୍ତଚାପ |
| ଦରବାରୀ | ମୁଣ୍ଡବିନ୍ଧା |
| ଦୀପକ | ଅମ୍ଳ, ଅଜୀର୍ଣ୍ଣ |
| ଗୁର୍ଜ୍ଜରୀ ତୋଡ଼ି | କାଶ, କଫ |
| ଗୁଣ୍ଡକିରି | କୋଷ୍ଠବଦ୍ଧତା ଇତ୍ୟାଦି । |

ସଂଗୀତପ୍ରେମୀନଙ୍କ ପାଇଁ କେତୋଟି ସଙ୍ଗୀତ ଗ୍ରନ୍ଥର ନାମ ଉଲ୍ଲେଖ ବାଞ୍ଛନୀୟ

| ଗ୍ରନ୍ଥ | ଗ୍ରନ୍ଥକାର |
|---|---|
| ସଙ୍ଗୀତ ଦାମୋଦର | ଶୁଭଙ୍କର |
| ସଙ୍ଗୀତ ରତ୍ନାକର | ଶାର୍ଙ୍ଗଦେବ |
| ସଙ୍ଗୀତ ଦର୍ପଣ | ଦାମୋଦର |
| ସଙ୍ଗୀତ ପାରିଜାତ | ଅହୋବଳ |
| ସଙ୍ଗୀତ ନିର୍ଣ୍ଣୟ | ବୀର ନାରାୟଣ ଇତ୍ୟାଦି । |

ଉପରୋକ୍ତ ପର୍ଯ୍ୟାଲୋଚନାରୁ ଆମେ ଏତିକି ଅନୁଭବ କରୁଛେ ଯେ ସଙ୍ଗୀତ ହିଁ ଜୀବନ ଏବଂ ଜୀବନ ହିଁ ସଙ୍ଗୀତ । ଏଣୁ ସଙ୍ଗୀତକୁ ନେଇ ସୁସ୍ଥ ଚର୍ଚ୍ଚା ଜାରି ରହୁ ଏତିକି କାମନା ।

*କୋରେଇ, ଯାଜପୁର-୨*

ବି.ଦ୍ର.:- ଆଲେଖଟି ପ୍ରସ୍ତୁତ ପାଇଁ ସହାୟକ ପୁସ୍ତକ

(୧) ଓଡ଼ିଆ ଗୀତିକବିତାର ରୂପ ଓ ରୂପାନ୍ତର - ଡ. ବଳରାମ ଦାସ
(୨) ପ୍ରବନ୍ଧ ସାର- ଶ୍ରୀ ଜଗବନ୍ଧୁ ସିଂହ

# ବିନାଶ୍ରୟେ ନ ବର୍ତ୍ତନ୍ତେ...

ଡା. ବିଶ୍ୱମ୍ଭର ଦାଶ (୫୦୪)

ଉପରଲିଖିତ ପଦଟି ଅଧୁନା ସମାଜରେ କେତେ ଯଥାର୍ଥ, ତା' ଉପରେ କିଞ୍ଚିତ ଆଲୋଚନା କରିବା ଉଚିତ ହେବ । କବିତା ଓ ଲତା ଏ ଦୁଇଟି ବଞ୍ଚିରହିବା ପାଇଁ ହୁଏତ କୌଣସି ଆଶ୍ରୟର ପ୍ରୟୋଜନ ହୋଇପାରେ । କିନ୍ତୁ ବନିତା ଅଥବା ଏକ ନାରୀ ପାଇଁ ଏଇ ବାହ୍ୟ ଆଶ୍ରୟର ଆବଶ୍ୟକତା ବିଶେଷ ଜରୁରୀ କି ? ମୋ ମତରେ ନାରୀମାନଙ୍କୁ ଅବଳା କହି ଦୟା ଦେଖାଇବାର ସମୟ ଆଉ ନାହିଁ । ସମାଜରେ ଯେଉଁ ନାରୀ ନିଜେ ଦୟା, କ୍ଷମା, ପ୍ରେମ ଓ ତ୍ୟାଗର ପ୍ରତୀକ, ସେ କ'ଣ କାହାର ଦୟାର ପାତ୍ର ହୋଇ ରହିବାକୁ ଚାହିଁବ ? ପରିବାରକୁ ନେଇ ସମାଜ । ପରିବାରରେ ସୁଖଶାନ୍ତି ଥିଲେ ସାମାଜିକ ଜୀବନ ସହଜ ଓ ସୁଖମୟ ହୁଏ । ସୁସ୍ଥ ପରିବାରଟିଏ ଗଢ଼ିବାରେ ପୁରୁଷ ଅପେକ୍ଷା ସ୍ତ୍ରୀର ହିଁ ଅବଦାନ ଅଧିକ । ପରିବାରର ସଦସ୍ୟମାନଙ୍କୁ ସ୍ନେହ, ପ୍ରେମ ଓ କରୁଣାରେ ବାନ୍ଧି ରଖେ ସ୍ତ୍ରୀ । ପରିବାରର ହିତ ପାଇଁ ସ୍ତ୍ରୀଟିଏ ନିଜର ସମସ୍ତ ସୁଖକୁ ହସିହସି ଜଳାଞ୍ଜଳି ଦେଇଦିଏ । ପୁରୁଷଙ୍କ ଭଳି ନାରୀମାନେ ମଧ୍ୟ ସାହସୀ ଓ ପରାକ୍ରମୀ ହୋଇପାରନ୍ତି । ଦେବୀ ସୀତା, ମାତା ଲକ୍ଷ୍ମୀବାଈ, ରଜିଆ ବେଗମ୍, ରାଣୀ ଦୁର୍ଗାବତୀ, ଅହଲ୍ୟାବାଈ ଓ ତାରବାଈ ପ୍ରଭୃତି ବୀରାଙ୍ଗନା ମାନଙ୍କୁ ଏ ଦେଶ ସହଜରେ ଭୁଲି ପାରିବନି । ଏମାନେ ଭାରତବର୍ଷର ସ୍ୱାଭିମାନ ଓ ସମ୍ମାନ ଅକ୍ଷୁର୍ଣ୍ଣ ରଖିବା ପାଇଁ ପ୍ରାଣବଳି ଦେଇଥିଲେ । ତେବେ ଦେଶର ପୁରୁଷ ଶ୍ରେଣୀ ସାହସୀ ଓ ପରାକ୍ରମୀ ନାରୀମାନଙ୍କୁ ସେମାନଙ୍କ ପ୍ରାପ୍ୟ ନ୍ୟାୟ ଦେବାରେ କାହିଁକି ଏତେ କୁଣ୍ଠିତ ?

କେତେକ ଅସାମାଜିକ ବ୍ୟକ୍ତି ନାରୀମାନଙ୍କ ପ୍ରତି ଖଳ ଓ ହିଂସା ଆଚରଣ ଦ୍ୱାରା ସମଗ୍ର ମାନବ ସମାଜକୁ ଲଜ୍ଜିତ ଓ କଳଙ୍କିତ କରୁଛନ୍ତି । ଏମାନେ କୌଣସି ଏକ ନିର୍ଦ୍ଦିଷ୍ଟ ବର୍ଗରେ ସୀମିତ ନାହାନ୍ତି । ଏମାନଙ୍କର କୌଣସି ସ୍ୱତନ୍ତ୍ର ଜାତି କିମ୍ବା ଧର୍ମ ନାହିଁ । ଦୈନନ୍ଦିନ ଖବରକାଗଜ ପୃଷ୍ଠାରେ ଦୃଷ୍ଟି ପକାଇଲେ ଏମାନଙ୍କର କଳଙ୍କିତ ପୌରୁଷ ନଜରକୁ ଆସେ । ବଳାତ୍କାର ଓ ହତ୍ୟା ପ୍ରଭୃତି ଜଘନ୍ୟ ଅପରାଧରେ ଖବରକାଗଜର ପୃଷ୍ଠାଗୁଡ଼ିକ ରଞ୍ଜିତ ହୁଏ । ପରିତାପର ବିଷୟ ଶିକ୍ଷକ, ଛାତ୍ର, ନେତା, ଅଭିନେତା ଓ ଉଚ୍ଚ ପଦାଧିକାରୀ ଅଫିସର- କେହି ଏ ତାଲିକାରୁ ବାଦ୍ ପଡିନାହାନ୍ତି । ସେତିକି ନୁହେଁ, ସର୍ବସାଧାରଣରେ ମହିଳାମାନଙ୍କୁ ଅସଦାଚରଣ କରାଯାଉଥିଲେ ମଧ୍ୟ, ଏ ଅବିବେକୀ ସମାଜ ଅନ୍ଧ, ମୂକ ସାଜି ଏସବୁକୁ ସହି ନେଉଛି । ସହାୟତା କରିବା ତ ଦୂର, ପ୍ରତିବାଦ କରିବା ପାଇଁ ମଧ୍ୟ କାହାର ସତ୍‌ସାହସ ନାହିଁ । ଅପରାଧକୁ ମୋବାଇଲ କ୍ୟାମେରାରେ ଭିଡିଓଗ୍ରାଫି କରି ମାନସିକ ସ୍ତରରେ ବିକୃତ କେତେକ ବ୍ୟକ୍ତି ଫେସ୍‌ବୁକ୍ ଓ ହ୍ୱାଟ୍‌ସଆପ ଭଳି ସୋସିଆଲ ମିଡିଆରେ ପ୍ରସାର କରିବାରେ ଆତ୍ମସନ୍ତୋଷ ଲାଭ କରନ୍ତି । କୌଣସି ସଭ୍ୟ ସମାଜରେ ଏସବୁ ବରଦାସ୍ତ କରାଯାଇପାରେ ।

ପୁତ୍ର ଓ କନ୍ୟା ସନ୍ତାନ ଏ ଦୁହିଁଙ୍କୁ ଅଧୁନା ସମାଜର କେତେକ ବର୍ଗର ବ୍ୟକ୍ତି ଭିନ୍ନଚକ୍ଷୁରେ ଦେଖି ମନେମନେ ଗର୍ବ ଅନୁଭବ କରିବା ସହିତ, ନିଜର ଆତ୍ମମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରଖିବା ପାଇଁ ପ୍ରାଣପଣେ ଉଦ୍ୟମରତ । ବଂଶରକ୍ଷା କରିବା ପାଇଁ ପୁତ୍ର ସନ୍ତାନଟିଏ ଅନିବାର୍ଯ୍ୟ ମନେକରି ଏମାନେ କନ୍ୟା ସନ୍ତାନ ପ୍ରତି ହତାଦର ମନୋଭାବ ପୋଷଣ କରନ୍ତି । କେବଳ ସେତିକି ନୁହେଁ, କନ୍ୟାଭ୍ରୁଣଟିକୁ ମଧ୍ୟ ନଷ୍ଟ କରିବା ପାଇଁ ତିଳେମାତ୍ର ଭ୍ରୂକ୍ଷେପ କରନ୍ତି ନାହିଁ । ଭ୍ରୁଣାବସ୍ଥାରୁ ଲିଙ୍ଗ ଚିହ୍ନଟ କରିବାରେ ସେମାନଙ୍କୁ ସାହାଯ୍ୟ କରନ୍ତି କେତେକ ଅର୍ଥଲୋଭୀ ଡାକ୍ତର । ଚିକିତ୍ସା ସେବାର ନୈତିକ ମୂଲ୍ୟବୋଧ ଭୁଲି ଚିକିତ୍ସକର ମୁଖାପିନ୍ଧି ଏଇ କେତେକ ଅର୍ଥପିପାସୁ ସାମାଜିକ ବ୍ୟବସ୍ଥାକୁ ନଷ୍ଟ କରିବା ସହ ଜନସାଧାରଣଙ୍କ ମନରେ ଅବିଶ୍ୱାସ ଓ ଘୃଣାଭାବ ସୃଷ୍ଟି କରନ୍ତି । କନ୍ୟାଭ୍ରୁଣ ହତ୍ୟା ଭଳି ଜଘନ୍ୟ ଅପରାଧ ପ୍ରଭୃତିକୁ ପ୍ରତିହତ କରିବା ପାଇଁ ବିଭିନ୍ନ ଆଇନକାନୁନ୍‌ର ପ୍ରାବଧାନ ଥିଲେ ମଧ୍ୟ, ସେସବୁକୁ କାର୍ଯ୍ୟକାରୀ କରିବା ପାଇଁ ବିଭାଗୀୟ କର୍ତ୍ତୃପକ୍ଷଙ୍କ ଆନ୍ତରିକତାର ଘୋର ଅଭାବ ପରିଲକ୍ଷିତ ହୁଏ । ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କଲାଭଳି କାଁଭାଁ କେତେକ ଜାଗାରେ କାର୍ଯ୍ୟାନୁଷ୍ଠାନ ନେବାର ଛଳନା କରି ଏମାନେ ଆତ୍ମସନ୍ତୋଷ ଲାଭ କରନ୍ତି । ସମ୍ପ୍ରତି ସାମାଜିକ ସ୍ଥିତି ଉପରେ ଦୃଷ୍ଟି ନିକ୍ଷେପ କଲେ ଏସବୁ ସହଜରେ ଜାଣିହେବ । ୨୦୦୧ ଓ ୨୦୧୧ ମସିହାର ଜନଗଣନା ଉପରେ ଦୃଷ୍ଟିପାତ କଲେ, ଦେଖିବା ଯେ ସମାଜରେ ମହିଳାମାନଙ୍କ ସଂଖ୍ୟା ପୁରୁଷମାନଙ୍କ ଠାରୁ ଢ଼େର୍ କମ୍ । ୨୦୦୧ରେ ଆମ ଦେଶରେ ପ୍ରତି ଏକ ହଜାର ପୁରୁଷଙ୍କ ପାଇଁ ଥିଲେ ନ'ଶହ ତେତିଶ ମହିଳା ଏବଂ ୨୦୧୧ ମସିହାରେ ଏଥିରେ ସାମାନ୍ୟ ବୃଦ୍ଧି ଘଟି ନ'ଶହ ଚାଳିଶ ହେଲା । ଏବେ ୨୦୧୭ରେ ଏହାର ଆକଳନ ନ'ଶହ ପଇଁଚାଳିଶ ହୋଇଛି । ପରିସ୍ଥିତିରେ ସାମାନ୍ୟ ଉନ୍ନତି ହୋଇଥିଲେ ମଧ୍ୟ ସାମାଜିକ ସନ୍ତୁଳନ ପାଇଁ ଏହା ଢ଼େର କମ୍ ।

ସମାଜର ପ୍ରତ୍ୟେକ କ୍ଷେତ୍ରରେ ମହିଳାମାନଙ୍କର ଯୋଗଦାନ ପୁରୁଷଙ୍କ ଅପେକ୍ଷା କୌଣସି ଗୁଣରେ କମ୍ ନୁହେଁ । ମହିଳାମାନଙ୍କର କୃତିତ୍ୱର ତାଲିକା ପ୍ରସ୍ତୁତ କଲେ ସମାପ୍ତ ହେବନି । ତେବେ କାହିଁକି ସେମାନଙ୍କୁ ସାମାଜିକ ନିର୍ଯାତନାର ଶିକାର ହେବାକୁ ପଡୁଛି । ସମାଜରେ ମହିଳାମାନଙ୍କୁ ସେମାନଙ୍କର ନ୍ୟାର୍ଯ୍ୟ ଅଧିକାର ଦେବା ପାଇଁ ସବୁସ୍ତରରେ ଦାବି ହେଉଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ଏହାର ସମାଧାନ ହୋଇପାରିନି । ଏ ବିଷୟରେ ଗମ୍ଭୀର ଭାବରେ ଆତ୍ମଚିନ୍ତନ କରିବାର ସମୟ ଏବେ ଆସିଛି । ଭାରତକୁ ଏକ ସମୃଦ୍ଧ ଓ ଶକ୍ତିଶାଳୀ ରାଷ୍ଟ୍ରଭାବେ ଗଢ଼ିବାକୁ ହେଲେ ମହିଳାଙ୍କୁ ପୁରୁଷଙ୍କ ଭଳି ସବୁକ୍ଷେତ୍ରରେ ସମାନ ଅଧିକାର ଦେବାକୁ ପଡିବ । ସ୍ନେହ, ପ୍ରେମ, କ୍ଷମା ଓ ତ୍ୟାଗର ପ୍ରତୀକ ଏଇ ମହିଳାମାନଙ୍କ ପ୍ରତି ପାରିବାରିକ ସ୍ତରରେ ସମ୍ମାନ ପ୍ରଦର୍ଶନ ସମ୍ବେଦନ ପ୍ରକଟ ହୋଇପାରିଲେ, ସାମାଜିକ ସ୍ତରରେ ଏହାର ସକାରାତ୍ମକ ପରିବର୍ତ୍ତନ ନିଶ୍ଚୟ ହେବ ।

*ମୋ: ୯୪୩୯୪୯୪୪୧୪*

# ମୁଠି ଚାଉଳରୁ ମଧ୍ୟାହ୍ନ ଭୋଜନ

କୀର୍ତ୍ତନ ଦାଶ

ପିଲାଟିଏ ଲୁଗା ଦୋକାନକୁ ପୋଷାକ କିଣିବାକୁ ଆସିଥାଏ । ସାନ ପିଲାଟିକୁ ଦେଖି ସ୍ନେହରେ ଦୋକାନୀଟି ପଚାରିଲା- ତୁମେ କେଉଁ ଶ୍ରେଣୀରେ ପଢୁଛ ? ପିଲାଟି ଉତ୍ତର ଦେଲା-ଚତୁର୍ଥ ଶ୍ରେଣୀରେ । ପୁଣି ଦୋକାନୀ ପଚାରିଲା- ତୁମ ସ୍କୁଲରେ ଅଣ୍ଡା ଖାଇବାକୁ ମିଳୁଛି ନା ? ପିଲାଟି କହିଲା- ମୁଁ ଭଲ ସ୍କୁଲ୍‌ରେ ପଢୁଛି । ଆମ ସ୍କୁଲରେ ଖାଇବାକୁ ଦିଆଯାଏନି । ଦୋକାନୀ ଆଉ କିଛି ନକହି ତା' ବ୍ୟବସାୟରେ ମନ ଦେଲା ।

ଏଇ ପିଲାର ଉତ୍ତର ଆମ ରାଜ୍ୟର ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ଏବଂ ତତ୍ ସମ୍ପର୍କୀୟ ମାନସିକତାର ବେଶ୍ କିଛି ସୂଚନା ଦେଇଛି ।

ଫେରିଯିବାକୁ ମନ ହେଉଛି ପଚାଶ ବର୍ଷ ତଳକୁ । ଯେତେବେଳେ ଆମ ରାଜ୍ୟରେ ବିଦ୍ୟାଳୟ କହିଲେ କେବଳ ସରକାରୀ ବିଦ୍ୟାଳୟକୁ ବୁଝାଉଥିଲା । ସରକାରୀ ଏଇଥିପାଇଁ କୁହାଯିବ ଯେ ଶିକ୍ଷକମାନେ ସରକାରଙ୍କ ଦ୍ୱାରା ବା ସରକାରୀ ନିୟନ୍ତ୍ରିତ ସଂସ୍ଥା ଯଥା- କେତେବେଳେ ଜିଲ୍ଲା ବୋର୍ଡ, କେତେବେଳେ ପଞ୍ଚାୟତ ସମିତିମାନଙ୍କ ଦ୍ୱାରା ନିଯୋଜିତ ହେଉଥିଲେ । ସରକାରୀ ତହବିଲ୍‌ରୁ ତାଙ୍କୁ ଦରମା ଦିଆଯାଉଥିଲେ ମଧ୍ୟ ସେମାନଙ୍କୁ ସରକାରୀ କର୍ମଚାରୀ ଭାବରେ ଗଣାଯାଉନଥିଲା । ଅବସରକାଳୀନ ସୁବିଧା ଦିଆଯାଉନଥିଲା । କେବଳ ଦରମା ଛଡ଼ା ଅନ୍ୟ କୌଣସି ଦାୟିତ୍ୱ ସରକାରଙ୍କର ନଥିଲା । ଗାଁ ଲୋକେ ଚାନ୍ଦା କରି ସ୍କୁଲଘର ତିଆରି କରୁଥିଲେ । ପ୍ରତିବର୍ଷ ମରାମତି, ଛପର ଓ ବାଡ଼ବୁଜା କାମ ସ୍କୁଲର ପରିଚାଳନା ସମିତି ହାତରେ ନ୍ୟସ୍ତ ଥିଲା । ପରିଚାଳନା ସମିତିରେ ଗ୍ରାମର ଜଣେ ମାନ୍ୟଗଣ୍ୟ, ବୟସ୍କ ଏବଂ ଶିକ୍ଷାନୁରାଗୀ ବ୍ୟକ୍ତି ସଭାପତି ରହୁଥିଲେ । ଗ୍ରାମବାସୀମାନଙ୍କର ସଭା ଡକାଇ ସ୍କୁଲର ହାନିଲାଭ, ସୁବିଧା ଅସୁବିଧା ବୁଝି ଗ୍ରାମସଭା ମାଧ୍ୟମରେ ଗ୍ରାମବାସୀମାନଙ୍କୁ ଅବଗତ କରାଇ, ସେମାନଙ୍କ ସହାୟତାରେ ଦାୟିତ୍ୱ ନିର୍ବାହ କରୁଥିଲେ । କିନ୍ତୁ ସ୍କୁଲ ବା ବିଦ୍ୟାଳୟର ଦୈନନ୍ଦିନ ଖର୍ଚ୍ଚ ଯଥା-ଚକ୍, ଡଷ୍ଟର, ଉପସ୍ଥାନ ଖାତା, ନାମ ଲେଖା ଖାତା ବା ଆନୁଷଙ୍ଗିକ ଖର୍ଚ୍ଚର ଭରଣା କରିବା ପାଇଁ ମୁଠି ଚାଉଳର ପ୍ରଚଳନ ଥିଲା । ମୋର ମନେ ଅଛି ଶନିବାର ଦିନ ଆମେ ସବୁ ପିଲା ମୁଠି ଚାଉଳ ବା ମୁଠେ ଚାଉଳ ନେଇ ବିଦ୍ୟାଳୟକୁ ଯାଉଥିଲୁ । ସେତେବେଳେ ଆମ ଗାଁ ପ୍ରାଥମିକ ବିଦ୍ୟାଳୟରେ ଦୁଇଜଣ ଶିକ୍ଷକ ଥିଲେ । ଖଗେନ୍ଦ୍ର ମାଷ୍ଟ୍ରେ ଏବଂ ରାଜମାଷ୍ଟ୍ରେ । ହେଡ ମାଷ୍ଟ୍ରେ- ହେଡ୍ ସାର୍ ନୁହନ୍ତି ଆଜିକାଲିର ପରିବର୍ତ୍ତିତ ସମ୍ବୋଧନ ପରି । ବିଦ୍ୟାଳୟର

ଛୋଟିଆ କାର୍ଯ୍ୟାଳୟ ଗୃହରେ ଚାରି ପାଞ୍ଚଟି ଚଟିଆ ଏକତ୍ର କରି ଯୋଡ଼ି ରଖାଯାଇଥାଏ । ସେଥିରେ ପିଲାମାନେ ମୁଠି ଚାଉଳ ଦିଅନ୍ତି ଗରିବ ଘରର ପିଲାମାନେ ଅଳ୍ପ ଚାଉଳ ଏବଂ ଅବସ୍ଥା ସମ୍ପୂର୍ଣ୍ଣ ପରିବାର ପିଲାମାନେ ଅଧିକ ଚାଉଳ ଆଣନ୍ତି । ସେହି ଚାଉଳ ବିକ୍ରି କରି ବିଦ୍ୟାଳୟର ଦୈନନ୍ଦିନ ଖର୍ଚ୍ଚ ମେଣ୍ଟାଯାଏ । ବର୍ଷ ଶେଷରେ ଗ୍ରାମସଭାରେ ହେଡ୍‌ମାଷ୍ଟ୍ରେ ହିସାବ ଦିଅନ୍ତି କେତେ ମୁଠି ଚାଉଳ ଆଦାୟ ହୋଇଥିଲା, ସେଥିରୁ କେତେ ଖର୍ଚ୍ଚ ହୋଇଛି ଓ କେତେ ବଳକା ଅଛି । ଖଣ୍ଡିଏ ଖାତାରେ ହିସାବ । କ୍ୟାସ୍ ବୁକ୍ ନାହିଁ, ଭାଉଚର ନାହିଁ । ଅବିଶ୍ୱାସ ନାହିଁ କି ଆରୋପ ନାହିଁ ।

ସ୍କୁଲରେ ପାଠ ପଢ଼ା ହୁଏ । ଦଣ୍ଡ ବି ଦିଆଯାଏ । ଅତି ଦୁଷ୍ଟାମି କଲେ ମାଡ଼ ହୁଏ । କିନ୍ତୁ ତାହା ମଧ୍ୟ ଦୁଷ୍ଟାମି ଓ ସହ୍ୟଶକ୍ତି ବା ଛାତ୍ରର ଶାରୀରିକ ଅବସ୍ଥାନୁସାରେ ଝିଅପିଲାମାନେ ମାଡ଼ ଖାନ୍ତି ନାହିଁ । କିନ୍ତୁ ଦଣ୍ଡ ପାଇବାରେ ପୁଅପିଲାମାନଙ୍କ ସହିତ ସମାନ । ଦଣ୍ଡ କହିଲେ- ଠିଆ କରାଇବା, ଆଣ୍ଠୁମାଡ଼ି ବସାଇବା, ଉଠ୍‌ବସ୍ ହେବା, ନାକ ଧରି ଏକଗୋଡ଼ିକିଆ ହୋଇ ଠିଆ ହେବା, ହାତରେ ଭାରାଦେଇ ମୁଣ୍ଡ ତଳକୁ କରି ଗୋଡ଼କୁ କାନ୍ଥରେ ଲଗାଇବା ଇତ୍ୟାଦି । ଏହି ଦଣ୍ଡ ଦ୍ୱାରା ପିଲାର କୌଣସି ଆଙ୍ଗିକ କ୍ଷତି ହୁଏ ନାହିଁ । ଆଜିକାଲି ଏସବୁକୁ ଯୋଗଶିକ୍ଷାରେ ଅନ୍ତର୍ଭୁକ୍ତ କରାଯାଇଛି । କିନ୍ତୁ ପିଲାକୁ କଷ୍ଟ ହୁଏ, ଅପମାନ ବୋଧ କରେ ଏବଂ ପାଠ ପଢ଼ିବାରେ ମନଯୋଗୀ ହୁଏ । ଯଦି କୌଣସି ପିଲା ମାଡ଼ ଖାଇ ହାତଗୋଡ଼ ଫୁଲିଯାଇଥାଏ କି ବଥା ହୋଇଯାଇଥାଏ ସ୍ନେହବତ୍ସଳା ମା' ବାପାଙ୍କୁ କହିଲେ ସାମାଜିକ ସଚେତନ ବାପା କହନ୍ତି- ଦୁଷ୍ଟାମି କରିଥିବ, ମାଡ଼ ଖାଇଛି । ମାଷ୍ଟ୍ରଙ୍କ ବେତ ନବାଜିଲେ କ'ଣ କିଏ ମଣିଷ ହେଇଛି । ଅଭିଭାବକ ଓ ଗ୍ରାମ ଲୋକମାନେ ମାଷ୍ଟ୍ରଙ୍କୁ ଦେଖିଲେ ନମସ୍କାର କରନ୍ତି । ପିଲା ପଢୁଥିଲେ ପିଲା କେମିତି ପଢୁଛି ? ତା' ପ୍ରତି ଟିକିଏ ଦୃଷ୍ଟି ଦେବେ ଇତ୍ୟାଦି ଅନୁରୋଧ କରନ୍ତି । ଶିକ୍ଷକମାନେ ମଧ୍ୟ କେଉଁ ପିଲା ସ୍କୁଲରେ ଅନୁପସ୍ଥିତ ରହିଲେ ଦଣ୍ଡ ଦିଅନ୍ତି, ବିଳମ୍ବରେ ଆସିଲେ ତାଗିଦ୍ କରନ୍ତି । ଅଭିଭାବକମାନଙ୍କୁ ପିଲାମାନଙ୍କ ପ୍ରତି ସଚେତନ ରହିବାକୁ କହନ୍ତି । ପିଲାମାନେ ଦୁଷ୍ଟାମି କଲେ ବାପା ମା'ମାନେ କହନ୍ତି ରହ ରହ ମାଷ୍ଟ୍ରଙ୍କୁ କହିଦେବି । କେହି ପିଲା କେବେ ମାଷ୍ଟ୍ରଙ୍କ ବିଷୟରେ ବାପା ମା'ଙ୍କ ପାଖରେ ଅଭିଯୋଗ କରନ୍ତି ନାହିଁ । ଗାଁ ଲୋକଙ୍କର ବିଦ୍ୟାଳୟ ଉପରେ ନଜର ଏବଂ ପିଲାମାନଙ୍କ ଉପରେ ଶିକ୍ଷକମାନଙ୍କର ନଜର । ଏଇମିତି ଆଗରୁ ବିଦ୍ୟାଳୟମାନ ଚାଲୁଥିଲା । ଅଧାକାନ୍ଥି ଘର, କଣା ଛପର, କନାବିଣ୍ଡା ଡଷ୍ଟର, ରଙ୍ଗଛଡ଼ା କଳାପଟା, ଧୋତିପିନ୍ଧା ଶିକ୍ଷକ । ସେହି ସ୍କୁଲରୁ ବି ବାହାରୁଥିଲେ ବୈଜ୍ଞାନିକ, ଡାକ୍ତର, ଇଂଜିନିୟର, ଅଧ୍ୟାପକ ଓ ପ୍ରଶାସକ ଇତ୍ୟାଦି । ଶିକ୍ଷକଙ୍କୁ ଛାତ୍ର ଦେଖିଲେ ନମସ୍କାର ନୁହେଁ ପ୍ରଣାମ କରୁଥିଲେ । ଛାତ୍ରଙ୍କୁ ଦେଖିଲେ ଶିକ୍ଷକଙ୍କ ଛାତି କୁଣ୍ଢେମୋଟ ହୋଇଯାଉଥିଲା ।

ନ'ଟାବେଳେ ପଖାଳ ଖାଇ, ଅଧାପେଟା ଦରପେଟା ହୋଇ ବରଷାରେ ଭିଜିଭିଜି, ଚଟିଆ ମୁଣ୍ଡରେ ପକାଇ ପଚପଚ କାଦୁଅ ରାସ୍ତାରେ ମନ ଖୁସିରେ ନାଚିକୁଦି ପାଠପଢ଼ିବାକୁ ଯାଉଥିଲେ ପିଲାମାନେ, ସାଙ୍ଗ ହୋଇ, ଡକାଡକି ହେଇ ।

ଆଉ ଆଜି, ସେଇ ଚିତ୍ର ନାହିଁ ।

ଗାଁର ଅଧାଗଢ଼ା ମାଟିଝାଟି ଓ ଚାଳ ଛପର ଘରଟି ବିଦ୍ୟାଳୟ ନୁହେଁ । ପକ୍କାଘର, ବିଜୁଳିବତି, ସୁଦୃଶ୍ୟ ଫାଟକ ଥିବା ଘରଟି ବିଦ୍ୟାଳୟ । ଗ୍ରାମର ଢ଼ାଞ୍ଚା ପରିବର୍ତ୍ତିତ ହୋଇଛି । ତା' ସହିତ ପରିସ୍ଥିତିର ପରିବର୍ତ୍ତନ ସହ ତାଳଦେଇ, ଆଳୟଟିର ପରିବର୍ତ୍ତନ ହୋଇଛି କିନ୍ତୁ ବିଦ୍ୟା ? ତା'ର ଅବସ୍ଥା କ'ଣ ? ବିଦ୍ୟାଳୟର ଭିତ୍ତିଭୂମି କହିଲେ କାହାକୁ ବୁଝାଏ ? ବିଦ୍ୟା ନା ଆଳୟ ?

ଶୁଣିଥିଲୁ ଗୁରୁକୁଳ କଥା । ଧୌମ୍ୟ, ଆରୁଣୀଙ୍କ କାହାଣୀ । ସେତେବେଳେ ରାଜପୁତ୍ର ଓ ସତ୍ୟକାମ ଜାବାଳ, ଶ୍ରୀକୃଷ୍ଣ ଓ ସୁଦାମାମାନେ ଘରୁ ପଇସା ନେଇ ପାଠ ପଢୁନଥିଲେ । ଗୁରୁ ଓ ଶିଷ୍ୟ ଉଭୟ ଆଶ୍ରମ ବା ଗୁରୁକୁଳରେ ଶ୍ରମଦାନ ଏବଂ ଅଧ୍ୟୟନ କରୁଥିଲେ । ତତ୍‌ପର ଅବସ୍ଥାରେ ଚାଟଶାଳୀ ଓ ଅବଧାନ । ଗ୍ରାମ ଲୋକଙ୍କ ଆର୍ଥିକ ସହାୟତାରେ ଚାଲୁଥିଲା । କିଛି ଗ୍ରାମରେ ଜ୍ଞାନୀ ଗୁଣୀ ଲୋକଙ୍କ ପ୍ରରୋଚନା ଓ ପରାମର୍ଶରେ କତିପୟ ରାଜା ଓ ଜମିଦାରମାନେ ବିଦ୍ୟାଳୟ ପ୍ରତିଷ୍ଠା କଲେ । ତା'ପରେ ସ୍ୱାଧୀନତା । ଶିକ୍ଷା ଏବଂ ସ୍ୱାସ୍ଥ୍ୟକୁ ପ୍ରମୁଖ ସାମାଜିକ ଦାୟିତ୍ୱ ଭାବରେ ସରକାର ହାତକୁ ନେଲେ । ବିଜ୍ଞାନ ଶିକ୍ଷାର ପ୍ରସାର ହେଲା । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ନେଇ ପାଠ୍ୟ ଖସଡ଼ା ପ୍ରସ୍ତୁତ ହେଲା କିନ୍ତୁ ରାଜନୈତିକ ମନୋଭାବ ନେଇ ବିଦ୍ୟାଳୟର ପରିଚାଳନା ଢ଼ାଞ୍ଚା ପରିବର୍ତ୍ତିତ ହେଲା ।

ହଁ, ଏହି ପରିବର୍ତ୍ତିତ ସମୟ ମଧ୍ୟରେ ଗୃହଶିକ୍ଷକ ନିଯୁକ୍ତି ବ୍ୟବସ୍ଥା କିଛି ସଂକ୍ରାନ୍ତ ପରିବାରରେ ଥିଲା । ବୋଧହୁଏ ପୌରାଣିକ ଭାରତର ପ୍ରଥମ ଗୃହ ଶିକ୍ଷକ ଥିଲେ ଦ୍ରୋଣ । ଗୃହ ଶିକ୍ଷକ ରାଜାନ୍ନ ପରିପାଳିତ ଯୋଗୁ ଏକଲବ୍ୟର ବୃଦ୍ଧାଙ୍ଗୁଠି କଟିଲା ଏବଂ ଇଚ୍ଛା ବିରୋଧରେ ମଧ୍ୟ ସେ ନୀତିଭ୍ରଷ୍ଟ ହେଲେ । ପ୍ରାକ୍ ସ୍ୱାଧୀନତା କାଳରେ ବାଦ୍‌ଶାହା ଓ ରାଜାଙ୍କ ପରିବାରରେ ଗୃହ ଶିକ୍ଷକମାନେ ନିଯୁକ୍ତ ଥିଲେ । ମାକ୍‌ଲେ ସାହେବଙ୍କ ଯୋଜନାରେ ବହୁ ଧନୀ ଓ ରାଜପରିବାରର ସନ୍ତାନମାନେ ଇଂରେଜୀ ପାଠ ପଢ଼ିବା ପାଇଁ ବିଲାତ (ଇଂଲଣ୍ଡ) ଗଲେ । ସେଠାରେ ବିଖ୍ୟାତ ବିଦ୍ୟାଳୟରେ ସେମାନେ ପାଠ ପଢ଼ିଲେ । ବିଲାତ୍ ଫେରନ୍ତା ମାନଙ୍କୁ ମହା ପଣ୍ଡିତ ବୋଲି ବିବେଚନା କରାଗଲା । ନେହେରୁମାନେ ହାରୋ ବିଦ୍ୟାଳୟରେ ପଢ଼ିଲେ । ଅକ୍ସଫୋର୍ଡ, କେମ୍ବ୍ରିଜ ସ୍କୁଲରେ ମଧ୍ୟ ପଢ଼ିଲେ । ସାହେବୀ ଢ଼ଙ୍ଗର ପ୍ରବେଶ ଯୋଗୁ ଆମ ଦେଶୀ ବିଦ୍ୟାଳୟ ଗୁଡ଼ିକର ରଙ୍ଗ ମଳିନ ପଡ଼ିଗଲା । ତା'ପରେ ଆମ ଦେଶରେ ମଧ୍ୟ ଡୁନ୍ ସ୍କୁଲ, ରାଜକୁମାର କଲେଜମାନ

ଖୋଲିଲା, ରାଜୀବ ଗାନ୍ଧୀ, କମଲନାଥ ଓ ନବୀନ ପଟ୍ଟନାୟକମାନଙ୍କ ପାଇଁ । ଗାନ୍ଧିଜୀଙ୍କ ପରିକଳ୍ପନା ଥିଲା ମୌଳିକ ଜ୍ଞାନର ବୈଶିଷ୍ଟ୍ୟ ରଖୁଥିବା ମୌଳିକ ବିଦ୍ୟାଳୟ, ଯାହା ସେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପ୍ରତିଷ୍ଠିତ ସତ୍ୟବାଦୀ ବନ ବିଦ୍ୟାଳୟ ପରିଦର୍ଶନ ସମୟରେ ଆହରଣ କରିଥିଲେ । ଗୁରୁଦେବ ରବୀନ୍ଦ୍ରନାଥ ଠାକୁର ପ୍ରତିଷ୍ଠା କଲେ ପ୍ରମାଣପତ୍ର ବିହୀନ ବିଦ୍ୟାଳୟ 'ଶାନ୍ତିନିକେତନ' । ଯେଉଁଠାରେ ଇନ୍ଦିରା ଗାନ୍ଧୀଙ୍କ ଠାରୁ ଆରମ୍ଭ କରି ଦାର୍ଶନିକ ଚିତ୍ତରଞ୍ଜନ ଦାସ ପାଠ ପଢ଼ିଥିଲେ । ପଣ୍ଡିତ ମାଳବ୍ୟ ମଧ୍ୟ ଭାରତୀୟ ମୂଲ୍ୟବୋଧ ଭିତ୍ତିକ ବିଦ୍ୟାଳୟମାନ ପ୍ରତିଷ୍ଠା କରିଥିଲେ । ଶ୍ରୀ ଅରବିନ୍ଦଙ୍କ ପ୍ରୋତ୍ସାହନରେ ବରୋଦା ଏବଂ କଲିକତା (କୋଲକାତା)ରେ ରାଷ୍ଟ୍ରୀୟ ଚେତନା ଆଧାରିତ ବିଦ୍ୟାଳୟ ଏବଂ ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା । ଭାରତର ସ୍ୱାଧୀନତା ପରେ ପ୍ରମୁଖ ଭାବରେ ଭାରତୀୟ ଦର୍ଶନ ଆଧାରିତ ପୂର୍ଣ୍ଣାଙ୍ଗ ବିଦ୍ୟାଳୟ ଓ ରାଷ୍ଟ୍ରୀୟ ଚେତନା ଉଦ୍ରେକକାରୀ ସରସ୍ୱତୀ ବିଦ୍ୟାମନ୍ଦିରମାନ ପ୍ରତିଷ୍ଠିତ ହେଲା । କହିବା ବାହୁଲ୍ୟ ନବେ ଦଶକର ଜଗତୀକରଣ ପ୍ରକ୍ରିୟାରେ ବିଭିନ୍ନ ପ୍ରକାର ବିଦ୍ୟାଳୟମାନ ଗାଁଗହଳକୁ ପ୍ରବେଶ କଲେ । ଶିକ୍ଷା ଏକ ପଣ୍ୟରେ ପରିଣତ ହେଲା । ଖେଳ ବିଦ୍ୟାଳୟ ଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପର୍ଯ୍ୟନ୍ତ ସବୁଠି ଶିକ୍ଷା ବେପାରୀଙ୍କ ଆଧିପତ୍ୟ ଏବଂ ଗ୍ରାହକ (ଛାତ୍ର)ଙ୍କ ହଟହଟା ।

ଏବଂ ସରକାର ।

ଆମ ଦେଶର ସରକାର ଏବଂ ପ୍ରଶାସକମାନଙ୍କୁ ବିଦେଶୀ ପରାମର୍ଶ ଏବଂ ବିଦେଶୀ ଅନୁଦାନ ଭାରି ଭଲ ଲାଗେ । ହଠାତ୍ ଆମେରିକାର ସରକାର ଅନୁଭବ କଲେ ଆମ ଦେଶର ପିଲାମାନଙ୍କର ପୁଷ୍ଟିହୀନତା ଅଛି । ଏଣୁ, ଯତ୍ନ ନେବା ପାଇଁ କେୟାର ସଂସ୍ଥା ଆଗେଇଆସିଲା । ପିଲାମାନଙ୍କୁ ଦୁଗ୍ଧଗୁଣ୍ଡ କ୍ଷୀର କରିଦିଆଗଲା । ତା'ପରେ ଗହମ ଗୁଣ୍ଡ ଓ ତେଲ । ସ୍କୁଲରେ ଚୁଲି ଜଳିଲା । ବଜାରରେ ଗହମ ଓ ତେଲର ଅପମିଶ୍ରଣ ପାଇଁ ଏଗୁଡ଼ିକ ମଧ୍ୟ କେତେକାଂଶରେ ସୁଯୋଗ ସୃଷ୍ଟିକଲା । ଆଉ ମୁଠି ଚାଉଳ ଦରକାର ପଡ଼ିଲାନି । ବରଂ ବିଦ୍ୟାଳୟର କିଛି ପାଣ୍ଠି ସୃଷ୍ଟି ହେଲା । ଏହାକୁ ନେଇ କନ୍ଦଳ ବି ବଢ଼ିଲା । ପରିଚାଳନା କମିଟିର ସଭାପତି ଓ କର୍ମକର୍ତ୍ତା ହେବା ପାଇଁ କଳହ ସୃଷ୍ଟି ହେଲା । କନ୍ଦଳ ରାଜନୈତିକ ରୂପ ନେଲା । ନିର୍ବାଚିତ ପ୍ରତିନିଧିମାନେ ମୁଣ୍ଡ ପୂରାଇଲେ । ଇତିମଧ୍ୟରେ ଆମେରିକା ସରକାର କେୟାର ଯୋଜନା ପ୍ରତ୍ୟାହାର କରିନେଲେ । ତା' ଜାଗାରେ ପଶିଲା ମଧ୍ୟାହ୍ନ ଭୋଜନ । ବିଦ୍ୟାଳୟର ପରିଚାଳନାରେ ନିର୍ବାଚିତ ପ୍ରତିନିଧି ଓ କେବଳ ଅଭିଭାବକଙ୍କ ପ୍ରତିନିଧିମାନେ ରହିଲେ । ବିଦ୍ୟାଳୟ ଏବଂ ମଧ୍ୟାହ୍ନ ଭୋଜନକୁ ନେଇ ବିଭ୍ରାଟ ସୃଷ୍ଟିହେଲା । କ୍ରମେ ପ୍ରାଥମିକ ଶିକ୍ଷକମାନଙ୍କୁ ଶିକ୍ଷାଦାନ ସହିତ/ବ୍ୟତୀତ ଅନ୍ୟ ବହୁ କାର୍ଯ୍ୟରେ ବିନିଯୁକ୍ତ କରାଗଲା । ବିଦ୍ୟାଳୟର ମଧ୍ୟାହ୍ନ ଭୋଜନ ଓ ଗୃହ ନିର୍ମାଣ ଠିକାଦାରୀରୁ ଆରମ୍ଭ କରି

ବାର୍ଦ୍ଧକ୍ୟ ଭତ୍ତା ଓ ବିପିଏଲ୍ କାର୍ଡ ପର୍ଯ୍ୟନ୍ତ ।

ଭାରତର ଉଚ୍ଚତମ ନ୍ୟାୟାଳୟ ପରାମର୍ଶ ଦେଇଛନ୍ତି- ଶିକ୍ଷକମାନଙ୍କୁ ଶିକ୍ଷାଦାନ ଛଡ଼ା ଅନ୍ୟ କାର୍ଯ୍ୟରେ ଲଗାଯିବା ଅନୁଚିତ । କିଏ ଶୁଣୁଛି ?

ବିଦ୍ୟାଳୟ କାନ୍ଥରେ ଲେଖାଗଲା 'ଦଣ୍ଡମୁକ୍ତ ଅଞ୍ଚଳ' । ନଲେଖିଥିଲେ କ'ଣ ଚଳିନଥାନ୍ତା ?

ମଧ୍ୟାହ୍ନଭୋଜନରେ ପୋକରା ଡାଲି, ଚାଉଳ, ଜିଆ, ଜୋକ । ପିଲା ଅସୁସ୍ଥ, ଶିକ୍ଷକ ନିଲମ୍ବିତ । ଦୋଷ କାହାର ?

ବିଦ୍ୟାଳୟ ଗୃହ ନିର୍ମାଣ ନିମ୍ନମାନର । ନିର୍ମାଣ ଶେଷ ହେବା ପୂର୍ବରୁ ଛାତ ଗଳିପଡ଼ିଲା । ଶିକ୍ଷକ ଗିରଫ ।

ବାର୍ଦ୍ଧକ୍ୟ ଭତ୍ତା ଟଙ୍କା ବାଣ୍ଟିବାକୁ ଗଲାବେଳେ ଦୁର୍ବୃତ୍ତମାନେ ମାଡ଼ମାରି ଶିକ୍ଷକଙ୍କ ହାତରୁ ଟଙ୍କାଥଳି ଛଡ଼ାଇନେଲେ । ଶିକ୍ଷକ ଆହତ, ଡାକ୍ତରଖାନାରେ ଭର୍ତ୍ତି ।

ମଦ୍ୟପାନ କରି ଶିକ୍ଷକଙ୍କ ଉନ୍ମତ୍ତକାଣ୍ଡ । ଗ୍ରାମବାସୀ ନିସ୍ତୁକ ଛେଚିଲେ ।

ଶିକ୍ଷୟିତ୍ରୀ ଅସଦାଚରଣ । ବିଆର୍‌ସିସି ଗିରଫ ।

ମାଗଣା (ମାଗିବା ପୂର୍ବରୁ) ଖାଦ୍ୟ, ମାଗଣା ପୋଷାକ, ମାଗଣା ବହି, ମାଗଣା ସାଇକେଲ, ମାଗଣା ପାଠ । ସବୁ ମାଗଣା ।

ଆଉ ଗାଁରେ ଖଗେନ୍ଦ୍ର ମାଷ୍ଟ୍ରେମାନେ ନାହାନ୍ତି ।

ମାଟ୍ରିକ୍‌ରେ ଉଚ୍ଚସ୍ତରର ପ୍ରଥମ ଶ୍ରେଣୀ, ଉଚ୍ଚ ମାଧ୍ୟମିକରେ (ଯୁକ୍ତ ଦୁଇ) ଉଚ୍ଚତର ପ୍ରଥମ ଶ୍ରେଣୀ, ସିଟିରେ ଉଚ୍ଚତର ପ୍ରଥମ ଶ୍ରେଣୀ, ଓଟିଇଟିରେ ଉତ୍ତୀର୍ଣ୍ଣ । ନିଯୁକ୍ତି ଶିକ୍ଷା ସହାୟକ । ଦରମା ଟ. ୫,୭୦୦ । (ମୁଣ୍ଡାମୁଣ୍ଡି) ମୂଲିଆ ମଜୁରି ସର୍ବନିମ୍ନ ଟ.୭,୫୦୦.୦୦ (ଗୋଟିଏ ଓଳି ଭୋଜନ ସହିତ) ।

ଆମେ କୁଆଡ଼େ । ଆମ ଶିକ୍ଷା ବ୍ୟବସ୍ଥା କୁଆଡ଼େ ।

ଏବେ ପୁଣି ମଧ୍ୟାହ୍ନଭୋଜନରୁ ମୁଠି ଚାଉଳକୁ ଫେରିଯିବାକୁ ଇଚ୍ଛା ହେଉଚି ।

ସମ୍ଭବ କି ?

*ମାର୍କୋଣା, ବାଲେଶ୍ୱର*

# ଧ୍ୱନି-ପ୍ରଦୂଷଣ

**କନକମଞ୍ଜରୀ ପଟ୍ଟନାୟକ (୫୭୧)**

ଜଳହେଉ, ମାଟି ହେଉ ଅବା ପବନ, ପ୍ରତ୍ୟେକର ପ୍ରଦୂଷଣ ମନୁଷ୍ୟର ଜୀବନ ପାଇଁ ହାନିକାରକ । ସେଥିମଧ୍ୟରୁ ଧ୍ୱନି ପ୍ରଦୂଷଣର ମୁଖ୍ୟ ଭୂମିକା ରହିଛି । ଆଜିକାଲି ଯେଉଁପ୍ରକାରେ ଧ୍ୱନିର ଗତି ବଢ଼ିଚାଲିଛି, ତାହା ଏକ ଚିନ୍ତାର ବିଷୟ ହୋଇଛି । ନଗର ତଥା ମହାନଗର ଗୁଡ଼ିକରେ ଧ୍ୱନି ପ୍ରାବଲ୍ୟ ଯେପରି ବଢ଼ିଚାଲିଛି, ବର୍ତ୍ତମାନ ତାହା ଜୀବନ ପ୍ରତି ଗମ୍ଭୀର ସଂକଟର କାରଣ ହୋଇଯାଉଛି । ଏହା ଶାନ୍ତିଭଙ୍ଗ କରିବା ସାଥେ ସାଥେ ଲୋକମାନଙ୍କୁ ଭୟଙ୍କର ରୋଗ ଦ୍ୱାରା ଆକ୍ରାନ୍ତ କରିପକାଉଛି ।

ଯଦିଓ ବାୟୁ ପ୍ରଦୂଷଣ, ଧ୍ୱନି ପ୍ରଦୂଷଣ ଠାରୁ ଭୟାନକ ଅଟେ କିନ୍ତୁ ବାୟୁ ପ୍ରଦୂଷଣ ପ୍ରତି କିଞ୍ଚିତ୍ ମାତ୍ରାରେ ଜନମାନସରେ ସଚେତନ ସୃଷ୍ଟି ହୋଇପାରିଛି ମାତ୍ର ଧ୍ୱନି-ପ୍ରଦୂଷଣ ପ୍ରତି ସେହି ପରିମାଣର ସଚେତନତା ସୃଷ୍ଟି ହୋଇପାରିନାହିଁ ।

ଭାରତର ପ୍ରଖ୍ୟାତ କର୍ଣ୍ଣ ବିଜ୍ଞାନୀ ଡଃ କାମେଶ୍ୱରନ ଗୋଟିଏ ଜାଗାରେ ଲେଖିଛନ୍ତି- "ସେ ଟ୍ରାଞ୍ଜିଷ୍ଟର ଏବଂ ଟେଲିଭିଜନ ଧ୍ୱନିରେ ଉଠିପଡ଼ନ୍ତି । ସେ ଧ୍ୱନି ଉତ୍ପନ୍ନ କରୁଥିବା ଶିଳ୍ପାୟନରେ ଲାଉଡସ୍ପିକର ଧ୍ୱନିରେ ଅତିଷ୍ଠ ହୋଇପଡନ୍ତି । ଘରକୁ ଆସିଲାବେଳେ ରାସ୍ତା ତଥା ଗଳିମାନଙ୍କରେ ଧ୍ୱନି ପିଇ-ପିଇ ଫେରନ୍ତି । ଯଦି ବିଶ୍ରାମ ପାଇଁ କିମ୍ବା ଆମୋଦ ପାଇଁ ଟିକେ ସିନେମା କିମ୍ବା ଥିଏଟର ଯାଆନ୍ତି, ସେଠି ମଧ୍ୟ ଧ୍ୱନିଦ୍ୱାରା ଅତିଷ୍ଠ ହୋଇପଡ଼ନ୍ତି ।

ବୈଜ୍ଞାନିକମାନେ ଗବେଷଣା ଦ୍ୱାରା ଜାଣିବାକୁ ପାଇଲେଣି ଯେ, ମନୁଷ୍ୟର ମସ୍ତିଷ୍କରେ ବାରଟି ତନ୍ତୁ ମଧ୍ୟରେ ଗୋଟିଏ ତନ୍ତୁକୁ ସ୍ୱରତନ୍ତ୍ରିକା କହନ୍ତି । ପ୍ରଖର ଧ୍ୱନି ଦ୍ୱାରା ସ୍ୱରତନ୍ତ୍ରିକା ନଷ୍ଟ ହୋଇଯାଏ ଯାହାଦ୍ୱାରା ଶୁଣିବାର ଶକ୍ତି ନଷ୍ଟ ହୋଇଯାଏ । ପ୍ରଖର ଧ୍ୱନି ସହିତ ଅଭ୍ୟସ୍ତ ହୋଇଥିବା ଲୋକମାନେ ଧୀର କଥା ଶୁଣିପାରନ୍ତି ନାହିଁ । ଧ୍ୱନି ପ୍ରଦୂଷଣ ଦ୍ୱାରା କର୍ଣ୍ଣ ଗହ୍ୱରରେ ବଧିରାବସ୍ଥା ସୃଷ୍ଟି ହୁଏ । ତାହାସହ ଅସ୍ଥିରତା, ମାନସିକ ବିଷାଦ ବ୍ଲଡ ପ୍ରେସର ବଢ଼ି ବଢ଼ି ଚାଲେ । ଏକାଗ୍ରତା ଧୀରେ ଧୀରେ ଲୋପ ପାଇଯାଏ । କୋଳାହଳ କାରଣରୁ କ୍ରୋଧ, ବିରକ୍ତିଭାବ ଓ ଅନିଦ୍ରା ବଢ଼ିଯାଏ । ହୃଦୟ ତଥା ପାକସ୍ଥଳୀରେ ଏହାର ପ୍ରଭାବ ପଡ଼େ । ଧମନୀ ଗୁଡ଼ିକ ସଂକୋଚନ ହୋଇଯିବା ଫଳରେ ମନୁଷ୍ୟ ହୃଦରୋଗରେ ଆକ୍ରାନ୍ତ ହୁଏ । ଅଧିକ କୋଳାହଳ ଦ୍ୱାରା କାନ ପର୍ଦ୍ଦା ଫାଟିଯାଏ । ମନୁଷ୍ୟ ଯଦି ଅଧିକ କୋଳାହଳପୂର୍ଣ୍ଣ ସ୍ଥାନରେ ଅଧିକ ଦିନ ବସବାସ କରେ, ହୃଦୟରୁ ପମ୍ପ ହେଉଥିବା ରକ୍ତର ମାତ୍ରା କମ୍ ହୋଇଯାଏ । ରକ୍ତ ଗାଢ଼ ହୋଇଯାଏ, ରକ୍ତଚାପ ତଳ-ଉପର ହୁଏ

ଯାହାଦ୍ୱାରା ଲୋକମାନେ ହୃଦଘାତରେ ଆକ୍ରାନ୍ତ ହୋଇପଡନ୍ତି ଏବଂ ମୃତ୍ୟୁ ମୁଖରେ ପଡନ୍ତି । କୋଳାହଳର ଘାତକ ପ୍ରଭାବ କାରଣରୁ ଧ୍ୱନି ପ୍ରଦୂଷଣର ନିୟନ୍ତ୍ରଣ ଅତ୍ୟନ୍ତ ଆବଶ୍ୟକ ।

ପାଶ୍ଚାତ୍ୟ ଦେଶମାନେ ଧ୍ୱନି ପ୍ରଦୂଷଣ ପ୍ରତି ବହୁ ଆଗରୁ ସଚେତନ ହୋଇସାରିଛନ୍ତି ଏବଂ ଏଥିପାଇଁ ଆଇନ-କାନୁନ୍ ଗଢ଼ା ହୋଇଛି । କିନ୍ତୁ ଆମଦେଶ ଏ ପର୍ଯ୍ୟନ୍ତ ଏହି ବିଷୟରେ ଅସମ୍ବେଦନଶୀଳ ହୋଇ ରହିଛି । ଭାରତର ସବୁଠାରୁ ଧ୍ୱନିପ୍ରଦୂଷଣ ସହର ଗୁଡିକ ହେଉଛନ୍ତି ଦିଲ୍ଲୀ, ବମ୍ବେ ଏବଂ ହାଇଦ୍ରାବାଦ । ଧ୍ୱନି ପ୍ରଦୂଷଣକୁ 'ଡେସିବଲ' ମାପକ ଯନ୍ତ୍ରରେ ମପାଯାଇଥାଏ ।

ଧ୍ୱନି-ପ୍ରଦୂଷଣଯୁକ୍ତ କଳ-କାରଖାନାରେ କାମ କରୁଥିବା ଶ୍ରମିକମାନଙ୍କ ଉପରେ ଏହାର କୁ ପ୍ରଭାବ ପଡୁଛି । ତେଣୁ କୋଳାହଳରୁ ରକ୍ଷା ପାଇବା ପାଇଁ ଇଅରପ୍ଲଗ, ଇଅରମାସ୍, ହେଲମେଟ୍ ଆଦି ସେମାନଙ୍କୁ ଯୋଗାଇଦେବା ଆବଶ୍ୟକ ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି ଧ୍ୱନି ପ୍ରଦୂଷଣକୁ କିପରି ନିୟନ୍ତ୍ରଣ କରାଯାଇପାରିବ ? ସବୁ ସ୍ଥାନରେ ମାପକ ଯନ୍ତ୍ର ନାହିଁ କି ଆଇନ୍-କାନୁନ ନାହିଁ । ସମ୍ବେଦନଶୀଳତାର ଅଭାବରୁ ସ୍ଥାନେ ସ୍ଥାନେ ବିନା କାରଣରେ କୋଳାହଳ ସୃଷ୍ଟି କରିବା ଅଭ୍ୟାସରେ ପଡିଗଲାଣି । ଟ୍ରାଫିକସ୍ଥାନ ମାନଙ୍କରେ ଡ୍ରାଇଭର ବାରମ୍ବାର ହର୍ଣ୍ଣ ବଜାଇବା, ନିଜର ଖୁସି ଜାହିର ପାଇଁ ବିଭିନ୍ନ ପ୍ରକାର ଉତ୍ସବ ଯଥା- ଜନ୍ମଦିନ, ବିବାହ, ପର୍ବ ପର୍ବାଣୀରେ ଧାର୍ମିକ ଆୟୋଜନ ମାନଙ୍କରେ ଜୋର୍‌ରେ ମାଇକ୍ ବଜାଇବା ଆଜିକାଲି ଫେସନ ପାଲିଟି ଗଲାଣି । ଯାହାଦ୍ୱାରା ଧ୍ୱନିପ୍ରଦୂଷଣ ଅତି ମାତ୍ରାରେ ବଢ଼ିଚାଲିଛି । ମାଇକ ବଜାଇବା ଆଜିକାଲି ଜନମାନସରେ ଅଧିକାର ସାବ୍ୟସ୍ତ ହୋଇଯାଇଛି । ଏଥିପାଇଁ କିଛି ନିୟନ୍ତ୍ରଣରେଖା ନାହିଁ ।

ଏହାର ଖିଲଫକାରୀମାନଙ୍କ ପ୍ରତି ପୋଲିସର ହସ୍ତକ୍ଷେପ ନିହାତି ଜରୁରୀ । ଫ୍ରାନ୍ସ ସରକାର ପୁଲିସ୍‌କୁ ଏହି ଅଧିକାର ଦେଇଛି ଯେ କୋଳାହଳକାରୀମାନଙ୍କ ପାଇଁ ଦଣ୍ଡବିଧାନ ତଥା ତାଙ୍କ ଯାନ ଗୁଡ଼ିକୁ ଜବତ କରିବା । ଆମେରିକାରେ ମଧ୍ୟ ଏହା ବିରୁଦ୍ଧରେ ସ୍ୱର- ଉତ୍ତୋଳନ ହେଲାଣି । କିନ୍ତୁ ଆମ ଦେଶରେ ଏଯାଏଁ ଖିଲାପକାରୀଙ୍କ ଉପରେ କୌଣସି ପଦକ୍ଷେପ ସରକାର ଦେଇନାହାନ୍ତି ।

ଯେଉଁ ଗତିରେ ଧ୍ୱନି ପ୍ରଦୂଷଣ ବଢ଼ୁଛି, ସରକାର ଦୃଢ଼ ପଦକ୍ଷେପ ନେଇ ଲାଉଡସ୍ପିକର, ମଟରହର୍ନ, ଡି.ଜେ. ଆଦି ଉପରେ ପ୍ରତିବନ୍ଧକ ଲଗାଇବା ଉଚିତ ।

ଧ୍ୱନି-ପ୍ରଦୂଷଣର ନିରାକରଣ ପାଇଁ ଅନ୍ୟ ଏକ ପଦକ୍ଷେପ ହେଉଛି ବନୀକରଣ । ବୃକ୍ଷମାନଙ୍କ ଦ୍ୱାରା ଶବ୍ଦ-ପ୍ରଦୂଷଣ କିଂଚିତ୍ ନିୟନ୍ତ୍ରଣ ହୋଇପାରିବ । ରାସ୍ତାର ଦୁଇପଟରେ ବୃକ୍ଷରୋପଣ କରିବା ଦ୍ୱାରା ଶବ୍ଦ-ତରଙ୍ଗ ଗୁଡ଼ିକ ପତ୍ର ଓ ଡାଳଦ୍ୱାରା ସାମାନ୍ୟ ନିୟନ୍ତ୍ରଣ ହୋଇପାରିବ । କେତେଗୁଡ଼ିଏ ବୃକ୍ଷ ଅଛନ୍ତି ଯିଏକି ଧ୍ୱନିତରଙ୍ଗ ଗୁଡ଼ିକୁ ନିୟନ୍ତ୍ରଣ କରିପାରିବେ

ଯଥା- ଆମ୍ବ, ତେନ୍ତୁଳି, ନଡିଆ, ତାଳ, ନିମ୍ବ, ଇଉକେଲପଟାସ ଇତ୍ୟାଦି । ଧ୍ୱନି ପ୍ରଦୂଷଣକୁ ନିୟନ୍ତ୍ରଣ କରିବା ପାଇଁ ବୃକ୍ଷରୋପଣ କାର୍ଯ୍ୟକ୍ରମର ମହତ୍ୱ ବିଷୟରେ ଲୋକମାନଙ୍କୁ ସଚେତନ କରିବା ପାଇଁ ପଠନ ସାମଗ୍ରୀ ବିତରଣ କରିବା, ସ୍ଥାନେ ସ୍ଥାନେ ସଚେତନ କାର୍ଯ୍ୟକ୍ରମର ଆୟୋଜନ କରିବା ଆବଶ୍ୟକ । ଖିଲାପକାରୀଙ୍କୁ ଦଣ୍ଡବିଧାନ ପ୍ରଣୟନ କରିବା ମଧ୍ୟ ଆବଶ୍ୟକ । ଏହାଦ୍ୱାରା ବହୁମାତ୍ରାରେ ଧ୍ୱନି ପ୍ରଦୂଷଣ କମିଯାଇପାରିବ ।

ପ୍ରକୃତିକୁ ଦୂଷଣମୁକ୍ତ ରଖିବା ବାଞ୍ଛନୀୟ । ମନୁଷ୍ୟକୃତ ପ୍ରଦୂଷଣ ପରିତ୍ୟଜ୍ୟ- ଏହା ସ୍ମରଣ ରଖିବାକୁ ହେବ ।

*ସେକ୍ଟର-୨/ଏମ୍ଆଇଜି-୩୨୫*
*ନୀଳାଦ୍ରିବିହାର, ଭୁବନେଶ୍ୱର-୨୧*
*ଫୋନ୍-୯୯୩୮୯୪୧୩୬୪*

## ନିବେଦନ

- ଲେଖକ ଲେଖିକାମାନେ ସ୍ୱରଚିତ ପ୍ରବନ୍ଧକୁ ଏକହଜାର ଶବ୍ଦ ଭିତରେ ସୀମିତ କରିବାକୁ ଅନୁରୋଧ ।
- ଲେଖାର ଜେରକ୍ସ କପି ନପଠାଇ ମୂଳ ହାତଲେଖାଟିକୁ ପଠାଇବାକୁ ଅନୁରୋଧ ।
- ଲେଖା ଗୁଡିକ ସାଧା କାଗଜର ଏକ ପାଖରେ ପରିଷ୍କାର ଭାବରେ ଲେଖି ବା ଡି.ଟି.ପି. କରି ପଠାଇଲେ ଭଲ ହେବ ।

**ସଂପାଦକ**

## ଓଡ଼ିଆ ଲେଖକ ଲେଖିକା ପରିଷଦ

### ଆଗାମୀ ଲକ୍ଷ୍ୟ

- ଭିନ୍ନ ଭିନ୍ନ ସ୍ଥାନରେ ଶାଖା ପ୍ରତିଷ୍ଠା
- 'ବନ୍ଧୁ' ପତ୍ରିକା ପ୍ରକାଶନ
- ହାଇସ୍କୁଲ ଛାତ୍ରଛାତ୍ରୀଙ୍କ ମଧ୍ୟରେ ରାଜ୍ୟସ୍ତରୀୟ ପ୍ରବନ୍ଧ ପ୍ରତିଯୋଗିତା
- 'ନୀଳମଣି ବିଦ୍ୟାରତ୍ନ' ସମ୍ମାନ ପ୍ରଦାନ
  (ଓଡ଼ିଆ ଭାଷା ସାହିତ୍ୟ ପ୍ରତି ସାଙ୍ଗଠନିକ ଅବଦାନ ପାଇଁ)
- 'ନବ ପ୍ରତିଭା' ପୁରସ୍କାର ପ୍ରଦାନ
  (ନୂତନ ପ୍ରତିଭାମାନଙ୍କ ପାଇଁ)
- 'ସୃଜନ ପ୍ରେରଣା' ପୁରସ୍କାର ପ୍ରଦାନ
  (ନୂତନ ପ୍ରତିଭାମାନଙ୍କୁ ଉତ୍ସାହିତ କରୁଥିବା ପତ୍ରିକାମାନଙ୍କ ପାଇଁ)

**ସଦସ୍ୟତା ଦେୟ**

**ବାର୍ଷିକ - ୨୦୦ଟଙ୍କା**

**ଆଜୀବନ - ୨୦୦୦ଟଙ୍କା**

